# ବିତର୍କ ଓ ବ୍ୟାଖ୍ୟାନ

## ଇତିହାସ, ଭାଷା ଓ ସାହିତ୍ୟ

(ପ୍ରଥମ ଭାଗ)

ଗୌରାଙ୍ଗ ଚରଣ ଦାଶ



ସରସ୍ୱତୀ
ଭୁବନେଶ୍ୱର- ୨

# ବିତର୍କ ଓ ବ୍ୟାଖ୍ୟାନ

ଇତିହାସ, ଭାଷା ଓ ସାହିତ୍ୟ

(ପ୍ରଥମ ଭାଗ)

ଗୌରାଙ୍ଗ ଚରଣ ଦାଶ

ଆନନ୍ଦ ଆଶ୍ରମ, କୁଟାରିମୁଣ୍ଡା, ଖମାର, ଅନୁଗୋଳ



ପ୍ରକାଶକ : ସରସ୍ୱତୀ, ଗୌରୀନଗର, ଭୁବନେଶ୍ୱର-୨
ପରିବେଷକ : ଏଥେନା ବୁକ୍ସ୍, ଭୁବନେଶ୍ୱର-୨
ଅକ୍ଷର : ରଞ୍ଜନା
ପ୍ରଚ୍ଛଦ : ରମାକାନ୍ତ ସାମନ୍ତରାୟ
ମୁଦ୍ରଣ : ଏଥେନା ବୁକ୍ସ, ଭୁବନେଶ୍ୱର-୨
ପ୍ରଥମ ସଂସ୍କରଣ : ୨୦୦୯
ମୂଲ୍ୟ : ୧୫୦/-

**Dialogue & Discourse**

History, Language and Literature

(Volume-1)

Gouranga Charana Dash
Ananda Ashram, Kutarimunda, Khamara, Anugul, Odisha



Published by : Saraswati, Bhubaneswar-2
Distributor : Athena Books, Bhubaneswar-2
Type Setting : Ranjana
Cover Design : Ramakanta Samantaray
Printed at : Athena Books, Bhubaneswar-2
1st Edition : 2009

**Price : 150/-**

ISBN 13 978-81-89593-82-7

ଦୀର୍ଘ ପଚାଶ ବର୍ଷରୁ ଅଧିକ କାଳଧରି
ଓଡ଼ିଶାର ସବୁ ବୟସ ଓ ମାନସିକତାର ପାଠକଙ୍କ
ଚେତନାକୁ ଆଲୋକିତ କରିଆସୁଥିବା ସାହସୀ ଓ
ସୁପଠ ଶ୍ରୀଯୁକ୍ତ ଅଭିରାମ ମହାପାତ୍ରଙ୍କୁ

– ଗୌରାଙ୍ଗ ଚରଣ ଦାଶ

# ବିଷୟକ୍ରମ

ବହିର ବେଶ

## ✓ ବହିର ବେଶ

ଅନ୍ୟକିଛି କାମପାଇଁ ନିଜ ଅଯୋଗ୍ୟତାକୁ ଅନୁଭବ କରିବାପରେ, ପ୍ରାୟ ଗତ କୋଡ଼ିଏ ବର୍ଷ ଧରି କେତେକ ବାଜେ ଧନ୍ଦାରେ ବୁଡ଼ିରହିଛି । ସେଗୁଡ଼ିକ ମଧ୍ୟରେ ଅନ୍ୟତମ, ଓଡ଼ିଆ ଜାତିର ଅସ୍ମିତା ସଂରଚନା ପ୍ରକ୍ରିୟାରେ ହେତୁ- ଖୋଜା । କାରଣ, କେତେକ ବିଦ୍ୱାନ(ମୁଁ ବିଦ୍ୱାନ ନୁହେଁ)ଙ୍କ ପରି ମୁଁ ମଧ୍ୟ ବିଶ୍ୱାସ କରେ, କୌଣସି ଜାତିର ଅସ୍ମିତା, ଏକ କାଳ୍ପନିକ ସଂପ୍ରତ୍ୟୟ । ତାହା ମୌଳିକ ନୁହେଁ, ମିଶ୍ର ଓ ସଂକର, ବ୍ୟକ୍ତିର ଶରୀର ଓ ବିଚାରର ଗଢ଼ଣ ପରି । ତେଣୁ ତାହା ଖୋଜିବା 'ପଣ୍ଡଶ୍ରମ' ବ୍ୟତୀତ ଅନ୍ୟ କଣ ବା ହୋଇପାରେ ? ତଥାପି ଆମେ ତା'ର ଗୁଣସୂତ୍ର ଖୋଜୁଛୁ । ଭାଷା, ସାହିତ୍ୟ, ଧର୍ମବିଶ୍ୱାସ, ସାମାଜିକ ରୀତିନୀତି, ଚିତ୍ର, ସ୍ଥାପତ୍ୟ, ନୃତ୍ୟ, ଗୀତ, ନାଟକ ଏବଂ ଅନ୍ୟ ସାଂସ୍କୃତିକ ବିଭବ ଭିତରେ ନିଜକୁ ଖୋଜିଲାବେଳେ ମୁଁ ଅନେକ ଜାଗାରେ ଧକ୍କା ଖାଇଛି, ଅଟକି ଯାଇଛି । ଆଖିକୁ ତୋଫା ଦିଶୁଥିବା ଚିତ୍ର ଭିତରେ ତଥାପି ବାସ୍ତବତା ଯେ ଅସ୍ପଷ୍ଟ, ତାହା ମୁଁ ଅନୁଭବ କରିଛି । ଅନ୍ୟ ଶବ୍ଦରେ କହିଲେ, ମୁଁ ମାୟାଜାଲ ଭିତରେ ଫସିଯାଇଛି ଏବଂ ଏକ ସମ୍ଭାବ୍ୟ ସତ୍ୟର ରୂପ ସଂରଚନାପାଇଁ ପ୍ରୟାସକରିଛି ।

ଏହି ସଂକଳନସ୍ଥ ଆଲୋଚନାଗୁଡ଼ିକ ଆତ୍ମ-ପରିଚିତି ଖୋଜା ପ୍ରକ୍ରିୟାର 'ଅଟକ ବାସ୍ତବତା' ବା ଗଂଠିଖୋଲା ଉଦ୍ୟମର ଅଭିବ୍ୟକ୍ତି । ଦାର୍ଶନିକମାନଙ୍କ ବିଚାରରେ, କୌଣସି ନିର୍ଦ୍ଦିଷ୍ଟ ଘଟଣା/ ଦୃଶ୍ୟ/ପ୍ରସଙ୍ଗ ସଂପର୍କୀତ ବିତର୍କ ଓ ବ୍ୟାଖ୍ୟାନ ହିଁ ଏକ ଆପାତଃ ଅପବାଦମୁକ୍ତ ସତ୍ୟ ଆକଳନର ସୁଯୋଗ ସୃଷ୍ଟି କରିଥାଏ । ବିଶ୍ୱାସ, ମୋର ଏହି ଦୃଶ୍ୟମାନ-ଅସତ୍ୟରୁ ଅଦୃଶ୍ୟ-ସତ୍ୟ ଖୋଜା ମାନସିକତାକୁ ସହୃଦୟ ପାଠକମାନେ ନିଜ ନିଜ ଏଷଣା ଭାଣ୍ଡରେ ଆଉଟିବେ ।

ମୁଁ ମାନୁଚି, ମୋର ପଢ଼ା ଅଳ୍ପ; ବୁଦ୍ଧି ଓ ବିଚାର କଞ୍ଚା । ମାତ୍ର ଏକ ନିରାପଦ ଓ ଅପ୍ରୀତିକର ଦ୍ୱନ୍ଦ୍ୱ ଭିତରୁ ଆପଣା ପରିଚୟ ପାଇବାପାଇଁ ବିତର୍କ ଓ ବ୍ୟାଖ୍ୟାନ ଏକ ପ୍ରୀତିପଦ ଅଥଚ ବିପଦଶଂକୁଳ ମାର୍ଗ । ମୁଁ ଏହି ମାର୍ଗର ଛୋଟ ନକ୍‌ସାଟିଏ ତିଆରି କରିଛି । ଭବିଷ୍ୟତରେ ତାହା ଅନେକ ଆହ୍ୱାନକୁ ସ୍ୱୀକାର କରି ଅବଶ୍ୟ ପୁଷ୍ଟହେବ ବୋଲି ବିଶ୍ୱାସ ରଖିଛି ।

ଓଡ଼ିଆ ଅସ୍ମିତା ସଂରଚନାକୈନ୍ଦ୍ରିକ ମୋର ଏହି ବୈଚାରିକ ମଞ୍ଚ (ଅନେକ ବନ୍ଧୁ ଲେଖାଗୁଡ଼ିକ ପଢ଼ି ଏହିପରି ମନ୍ତବ୍ୟ ଦେଇଛନ୍ତି)କୁ, ପ୍ରଥମେ ଅତ୍ୟନ୍ତ ଶ୍ରଦ୍ଧା ଅଥଚ ସଂଶୟର ସହିତ ବଜାରରେ ସଂପାଦିଛନ୍ତି ପୂଜ୍ୟ ଶିକ୍ଷକ ପ୍ରଫେସର କୃଷ୍ଣ ଚରଣ ବେହେରା, ତାଙ୍କ ସଂପାଦିତ ଏଷଣା ପତ୍ରିକା ମାଧ୍ୟମରେ । ଏବଂ, ଯେଉଁମାନେ ମୋ ତଥ୍ୟ-ଖୋଜା ଓ ବିଶ୍ଲେଷଣ ଅବବୋଧକୁ ସମାର୍ଜନ କରିଛନ୍ତି, ସେମାନଙ୍କ ମଧ୍ୟରେ ପରଦା ପଛରେ ରହିଛନ୍ତି ଡକ୍ଟର ନଟବର ସାମନ୍ତରାୟ, ଶ୍ରୀ ସଚ୍ଚିଦାନନ୍ଦ ମିଶ୍ର, ଡକ୍ଟର ଭାବଗ୍ରାହୀ ମିଶ୍ର, ପ୍ରଫେସର ଦାଶରଥୀ ଦାସ, ପ୍ରଫେସର ଗଗନେନ୍ଦ୍ରନାଥ ଦାଶ, ପ୍ରଫେସର ସୁଦର୍ଶନ ଆଚାର୍ଯ୍ୟ, ଶ୍ରୀ ଶୈଳଜ ରବି ଏବଂ ଆଗରେ ଶ୍ରୀ ଦେବେନ୍ଦ୍ର କୁମାର ଦାଶ । ମୋ ବିଚାର-ଚରୁର ଅଧିକାରୀ ସେମାନେ ଏବଂ ମଳର ଈଶ୍ୱର ମୁଁ ନିଜେ ।

ମୋପାଇଁ ଏହା ଏକ କଉତୁକ ଯେ ମୋତେ ଭାଇବୋଲି ସମ୍ବୋଧୁଥିବା ଦମ୍ପତି ଶ୍ରୀମତୀ ପ୍ରିୟମ୍ବଦା ପାତ୍ର ଓ ଶ୍ରୀଯୁକ୍ତ ରମାକାନ୍ତ ସାମନ୍ତରାୟ, ଏହି ବହି ପ୍ରକାଶନର ପୃଷ୍ଠପୋଷକ। ସେମାନେ ପୃଥିବୀର ସବୁ ମଣିଷଙ୍କୁ ଭଲ ପାଉଥିବା ଶ୍ରୀଯୁକ୍ତ ଶିବରାମ ପାତ୍ରଂକର ଝିଅ, ଜ୍ୱାଇଁ । ସଂସାରର ଆରପାରିରେ ଥାଇ ମୋତେ ଚାହିଁଥିବା ଶିବରାମ ଭାଇଂକ ଆହ୍ୱାନକୁ ମୁଁ ସମ୍ମାନ ଜଣାଉଛି ଏବଂ ମୋ ଭିତରେ କିଛି ଅଛି ବୋଲି କହି, ଏକ ମିଛ ପ୍ରତ୍ୟୟରେ ମୋତେ ଅଲାଜୁକ କରିଥିବାରୁ, ବାସ୍ତବତଃ 'ମୁଁ କିଛି ନୁହେଁ'ର ପରିଚୟ ପତ୍ର ସେମାନଂକୁ ଭେଟି ଦେଉଛି ।

ଓଡ଼ିଶାର ସହୃଦୟ ବିଦ୍ୱତ୍‌ସମାଜ ମୋ ବିଚାରକୁ, ବିତର୍କର 'ଗୋଟି' କଲେ, ଶ୍ରମ ଅମଳ ହେଲା ବୋଲି ଅନୁଭବ କରିବି ।

ଆନନ୍ଦ ଆଶ୍ରମ,କୁଟାରିମୁଣ୍ଡା,
ଖମାର, ଅନୁଗୋଳ

ଗୌରାଙ୍ଗ ଚରଣ ଦାଶ
୧୫ ଡିସେମ୍ବର, ୨୦୦୯

# ଓଡ଼ିଶାର ଇତିହାସ ଚର୍ଚ୍ଚା ପରଂପରା
# ଓ
# ଓଡ଼ିଶାର ଇତିହାସ

ପ୍ୟାରୀମୋହନ ଆଚାର୍ଯ୍ୟଙ୍କ ଓଡ଼ିଶାର ଇତିହାସ 'History of Orissa' ପ୍ରକାଶ ପାଏ ୧୮୭୯ ମସିହା ଅଗଷ୍ଟ ମାସ ମଝାମଝି । ଏହାର ଭୂମିକା ଲେଖାଯାଇଛି ଅଗଷ୍ଟ ମାସ ୧୩ ତାରିଖରେ । ଗୌରୀଶଙ୍କର ରାୟଙ୍କ କଟକ ପ୍ରିଣ୍ଟିଂ କମ୍ପାନୀ ଯନ୍ତ୍ରାଳୟରେ ବହି ମୁଦ୍ରିତହୋଇଛି । ସେଠାରେ ତାହା ବିକ୍ରିପାଇଁ ମଧ୍ୟ ଗଚ୍ଛିତରହିଛି । ଏବଂ, ଉତ୍କଳ ଦୀପିକା ପତ୍ରିକାର ସେପ୍ଟେମ୍ବର ୬, ୧୩, ଅକ୍ଟୋବର ୪ ଓ ୧୧ ତାରିଖରେ ପ୍ରକାଶିତ ବିଜ୍ଞାପନର ଶୀର୍ଷକରେ ଲେଖାଯାଇଛି– 'ଓଡ଼ିଶାର ଇତିହାସ, ଶ୍ରୀ ପ୍ୟାରୀମୋହନ ଆଚାର୍ଯ୍ୟ ପ୍ରଣୀତ, ମୂଲ୍ୟ ଏକଟଙ୍କା ମାତ୍ର, ବିକ୍ରୟାର୍ଥ ପ୍ରସ୍ତୁତ ଅଛି, କଟକ ପ୍ରିଣ୍ଟିଂ କମ୍ପାନୀଙ୍କ ଯନ୍ତ୍ରାଳୟରେ ପ୍ରାପ୍ତବ୍ୟ' । ୧୯୮୦ ମସିହାରେ, ସ୍କୁଲ୍‌ର ପାଠ୍ୟପୁସ୍ତକ ରୂପେ ଏହା ନିର୍ବାଚିତ ହେବା ସମ୍ବାଦ ମଧ୍ୟ ପ୍ରକାଶିତ ହୋଇଛି । ପ୍ରଥମ ମୁଦ୍ରଣରେ ଡ଼େମି ଆକାରରେ ମୁଦ୍ରିତ ଏହାର ପୃଷ୍ଠା ସଂଖ୍ୟା ଥିଲା ୧୭୯ । ଏବଂ, ତାହା ବ୍ୟତୀତ ପ୍ରଥମରେ ଭୂମିକା ୩ ପୃଷ୍ଠା ଏବଂ ଶେଷରେ ଅଶୁଦ୍ଧି ସଂଶୋଧନ ଓ ପରିଶିଷ୍ଟ ପୃଷ୍ଠା ସଂଖ୍ୟା, ଯଥାକ୍ରମେ, ୨ ଓ ୪ । ତେଣୁ ସମଗ୍ର ବହିକୁ ୧୮୯ ପୃଷ୍ଠା ବିଶିଷ୍ଟ କୁହାଯାଇପାରେ । ସର୍ବୋପରି, ପ୍ରଶାସକ-ଗବେଷକ କବିବର ବାବୁ ରଙ୍ଗଲାଲ୍ ବନ୍ଦୋପାଧ୍ୟାୟଙ୍କ ହସ୍ତରେ ଏହାକୁ ଉତ୍ସର୍ଗ କରାଯାଇଛି ।[୧]

ସମକାଳରେ ଓଡ଼ିଶାର ବିଦ୍ୟାଳୟ ସମୂହରେ ବିଶେଷ ଭାବରେ ପରିଲକ୍ଷିତ ଓଡ଼ିଆ ପାଠ୍ୟପୁସ୍ତକର ଅଭାବ ପରିପୂରଣ ଉଦ୍ଦେଶ୍ୟରେ ହିଁ ଏହି ବହି ଲେଖାଯାଇଛି । ଏହାର ଭୂମିକାରେ ପ୍ୟାରୀମୋହନ ଲେଖିଛନ୍ତି, 'ସନ ୧୮୭୫ ମସିହାରେ ଓଡ଼ିଶା ସ୍କୁଲ୍ ସମୂହର ଜଏଣ୍ଟ ଇନ୍‌ସପେକ୍ଟର ବିଜ୍ଞାପନ ଦେଇଥିଲେ ଯେ ଉତ୍କଳ ଭାଷାରେ ଖଣ୍ଡେ ଓଡ଼ିଶାର ଇତିହାସ ରଚିତ ହେଲେ ଏବଂ ତାହା ଓଡ଼ିଶା ବିଦ୍ୟାଳୟ ସମୂହର ଜଏଣ୍ଟ ଇନ୍‌ସପେକ୍ଟରଙ୍କ ଅଫିସରେ ଗ୍ରାହ୍ୟ ହେଲେ, ରଚନାକୁ ଗବର୍ଣ୍ଣମେଣ୍ଟ ତିନିଶତ ଟଙ୍କା ପୁରସ୍କାର ଦେବେ । ଉକ୍ତ ବିଜ୍ଞାପନ ପାଠ କରି ଆମ୍ଭେ ଏହି ପୁସ୍ତକ ରଚନା କରି ଜଏଣ୍ଟ ଇନ୍‌ସପେକ୍ଟରଙ୍କ ହସ୍ତରେ ଅର୍ପଣ କଲୁ । ଅବଶେଷରେ ଉକ୍ତ ମସିହାର ଶେଷ ଭାଗକୁ

ଥରେ ଉତ୍ତମ ରୂପେ ସଂଶୋଧନ କରି ଏହାକୁ ମୁଦ୍ରିତ ଓ ପ୍ରକାଶିତ କରିବାର ଆଦେଶ ପ୍ରାପ୍ତ ହେଲା' ।[୨] ପ୍ୟାରୀମୋହନଙ୍କ ବହି ୧୮୭୯ ମସିହାରେ ଅବଶ୍ୟ ପ୍ରକାଶ ପାଇଛି । ମାତ୍ର ଏହାର ଲେଖାକାର୍ଯ୍ୟ କେବେ ଆରମ୍ଭ ହୋଇ କେବେ ଶେଷ ହୋଇଛି, ତତ୍ ସଂକ୍ରାନ୍ତରେ କୌଣସି ସୂଚନା ମିଳିନାହିଁ । 'ଉକ୍ତ ମସିହା' ଶବ୍ଦକୁ ବିଶ୍ଳେଷଣ କରି ଏହା ସେହି ବର୍ଷ, ଅର୍ଥାତ୍ ୧୮୭୫ ମସିହାରେ ଲେଖାଯାଇଛି ବୋଲି କହିବା ନିରାପଦ ନୁହେଁ ।[୩] କାରଣ ଏହି ଦୁରୂହ କାର୍ଯ୍ୟ ସମ୍ପାଦନପାଇଁ ତାଙ୍କୁ ନିଶ୍ଚିତ ଭାବେ ବହୁ ସମୟ ଲାଗିଥିବ । ସେ ଯେଉଁ ଯେଉଁ ଗ୍ରନ୍ଥକୁ 'ଆକର' ଭାବରେ ଗ୍ରହଣ କରିଛନ୍ତି ଏବଂ ଯେଉଁ ସରକାରୀ ଅଫିସରେ ନିଥିପତ୍ର ପଢ଼ିବା ସମ୍ପର୍କରେ ସୂଚନା ଦେଇଛନ୍ତି, ତାହା ମଧ୍ୟ ସମୟସାପେକ୍ଷ (ଦ୍ରଷ୍ଟବ୍ୟ: ଭୂମିକା) । ଯଦି ସେହି ମସିହା, ଅର୍ଥାତ୍ ୧୮୭୫ରେ, ସେ ଏଥିପାଇଁ ପଢ଼ା ଓ ଲେଖାକାର୍ଯ୍ୟ ଶେଷ କରିଥିଲେ ବୋଲି ଗ୍ରହଣ କରିବା, ତେବେ ଏହା ମଧ୍ୟ ଆମକୁ ବିଶ୍ୱାସ କରିବାକୁ ପଡ଼ିବ ଯେ, ଓଡ଼ିଆ ଭାଷାରେ ଏକ ଇତିହାସ ବହି ଲେଖିବାର ପରିଯୋଜନା, ଆଚାର୍ଯ୍ୟଙ୍କର ଆଦୌ ଆକସ୍ମିକ ନ ଥିଲା । ଆପଣା ଜାତିର ଅଭାବ ସମ୍ପର୍କରେ ସେ ସଚେତନ ହୋଇଛନ୍ତି, ପୂର୍ବ ପ୍ରକାଶିତ ଇତିହାସ ବହି ଓ ରିପୋର୍ଟଗୁଡ଼ିକ ପଢ଼ିଛନ୍ତି ଏବଂ ସରକାରୀ ବିଜ୍ଞାପନ ପ୍ରକାଶିତ ହେବା ପରେ ସେ ବହି ଲେଖିବାପାଇଁ ମନସ୍ଥ କରିଛନ୍ତି । ଲେଖା ଶେଷ ପରେ ସେ ଜଏଣ୍ଟ ଇନ୍‌ସପେକ୍ଟରଙ୍କୁ ପାଣ୍ଡୁଲିପି ଦେଇଛନ୍ତି । ଏକ ବିଶେଷଜ୍ଞ କମିଟି ପାଣ୍ଡୁଲିପି ସମୀକ୍ଷା କରିଛି । କମିଟିର ପରାମର୍ଶକ୍ରମେ ସେ ଏଥିରେ ସମାର୍ଜ୍ଜନ ଓ ସଂଯୋଜନ କରିଛନ୍ତି । ଏଥିପାଇଁ ତାଙ୍କୁ ବେଶ୍ କିଛି ବର୍ଷ ସମୟ ଦେବାକୁ ପଡ଼ିଛି ଏବଂ, ୧୮୭୫ ମସିହାରେ ପ୍ରକାଶିତ ସରକାରୀ ବିଜ୍ଞାପନ ୧୮୭୯ ମସିହା ଅଗଷ୍ଟମାସର ମଧ୍ୟଭାଗରେ କାର୍ଯ୍ୟକାରୀ ହୋଇଛି । ତେଣୁ ଏହା ସୁସ୍ପଷ୍ଟ ଯେ, ପ୍ୟାରୀମୋହନଙ୍କ ଓଡ଼ିଶା ଇତିହାସ ରଚନା ଆଦୌ ଆକସ୍ମିକ ନୁହେଁ । ଏହା ତାଙ୍କ ତରୁଣ ପ୍ରାଣର ସୁପରିକଳ୍ପିତ, ଯୋଜନାବଦ୍ଧ ଏବଂ ବସ୍ତୁତଃ ଆବେଗିକ ଓ ତଥ୍ୟପୁଷ୍ଟ ଆତ୍ମପ୍ରକାଶ ।

ଆଚାର୍ଯ୍ୟଙ୍କ ବହି ସମ୍ପର୍କରେ ଦୁଇଗୋଟି ସମୀକ୍ଷା ପ୍ରକାଶ ପାଇଛି ୧୮୭୯ ମସିହା ସେପ୍ଟେମ୍ବର ୨୦ ତାରିଖରେ 'ଉତ୍କଳ ଦୀପିକା' ଏବଂ ୧୮୮୦ ମସିହା ଫେବୃଆରୀ ୧୯ ତାରିଖରେ 'ବାଲେଶ୍ୱର ସମ୍ବାଦ ବାହିକା' ପୃଷ୍ଠାରେ ।

> ଗବର୍ଣ୍ଣମେଣ୍ଟର ପ୍ରଦତ୍ତ ଟଙ୍କା ସତ୍‌ପାତ୍ରରେ ପତିତ ହୋଇ ସୁନ୍ଦର ଫଳ ଜାତ ହୋଇଅଛି । ××× ଏ ପୁସ୍ତକର ରଚନା ପ୍ରଣାଳୀ ସୁନ୍ଦର ଏବଂ ଏହା ସର୍ବାଙ୍ଗରେ ସୁପାଠ୍ୟ ଅଟଇ । ଅବଶ୍ୟ ସାଧୁଭାଷା ସଙ୍ଗେ ସଙ୍ଗେ ଗୋଟିଏ ଅତି ଗ୍ରାମ୍ୟଭାଷା ଏବଂ ଦୁଇ ଏକ ସ୍ଥଳରେ ଅସଙ୍ଗତ ଭାବ ଇତ୍ୟାଦି ଦୋଷ ରହିଅଛି" ବୋଲି ଦୀପିକା ଏବଂ "ଆମ୍ଭେମାନେ ନିର୍ବିବାଦରେ ଏହା କହିପାରୁ ଯେ, ପ୍ରାଚୀନ ଏବଂ ଆଧୁନିକ ଓଡ଼ିଶାର ପ୍ରାକୃତିକ, ସାମାଜିକ, ରାଜନୈତିକ ଓ ଧର୍ମ ସମ୍ବନ୍ଧୀୟ ଇତିହାସ ଜିଜ୍ଞାସୁ ବ୍ୟକ୍ତିଙ୍କ ପକ୍ଷରେ ପ୍ୟାରୀବାବୁଙ୍କ ପୁସ୍ତକ ପରି ଆଉ ଖଣ୍ଡିଏ ପୁସ୍ତକ ଓଡ଼ିଆ ଭାଷାରେ ଅଦ୍ୟ ଅବଧି ରଚିତ ହୋଇନାହିଁ । ××× ଏହା ମୁକ୍ତକଣ୍ଠରେ ସ୍ୱୀକାର କରିବାକୁ ହେବ ଯେ, ଉନ୍ନତ ଓ ଅପେକ୍ଷାକୃତ ମାର୍ଜିତ ବଙ୍ଗଳା

ଭାଷାରେ ସୁଦ୍ଧା ଏପରି ଇତିହାସ ବିରଳ ଲକ୍ଷିତ ହୁଏ । ××× ପୁସ୍ତକର ଭାଷା ମଧ୍ୟ ସ୍ଥଳରେ ଉତ୍ତମ ହୋଇଅଛି । ସ୍ଥାନେ ସ୍ଥାନେ ବ୍ୟାକରଣ, ମୁଦ୍ରା ଓ ଗ୍ରାମ୍ୟଦୋଷ ଅଛି ସତ୍ୟ, ମାତ୍ର ଯେଉଁ ଜୀବନୀଶକ୍ତି ଭାଷାର ପରିଚାୟକ, ଶଂସିତ ପୁସ୍ତକରେ ସେହି ଜୀବନୀଶକ୍ତିର ଅଭାବ ନାହିଁ ।

ବୋଲି *ବାଲେଶ୍ୱର ସମ୍ବାଦ ବାହିକା* ମନ୍ତବ୍ୟ ଦେଇଛନ୍ତି । ଏବଂ, ଉଭୟ ସମୀକ୍ଷକ ଏହାର ଗଦ୍ୟକୁ କାବ୍ୟିକ ଓ ପଠନୀୟ କେବଳ କହି ନାହାନ୍ତି, ପରିଲକ୍ଷିତ ସାଧାରଣ ଭ୍ରମ ସମ୍ପର୍କରେ ମଧ୍ୟ ସୂଚନା ଦେଇଛନ୍ତି ।[୪]

ମାତ୍ର ଆଶ୍ଚର୍ଯ୍ୟର କଥା, ଆଲୋଚନା ଦୁଇଟି ପ୍ରକାଶିତ ହେବା ପରେ, ଏଥିରେ ଜଗନ୍ନାଥ ଓ କଳାପାହାଡ଼ ସଂପର୍କରେ ପ୍ରଦତ୍ତ ଐତିହାସିକ ତଥ୍ୟାବଳୀ, ସେଗୁଡ଼ିକର ବିଶ୍ଳେଷଣ ଓ ରଚନା ଶୈଳୀ ଏବଂ ଇଂରେଜମାନଙ୍କ ଉଦ୍ଦେଶ୍ୟରେ ବଂଚନା ଶବ୍ଦର ଅପପ୍ରୟୋଗକୁ କେନ୍ଦ୍ର କରି ଓଡ଼ିଶାର ଦୁଇ ପ୍ରମୁଖ ସମ୍ବାଦପତ୍ର 'ଦୀପିକା' ଓ 'ବାହିକା' ପୃଷ୍ଠାରେ ବେଶ୍ କେତେ ମାସ ଧରି ବିଦ୍ୱାନମାନଙ୍କ ମଧ୍ୟରେ ବିତର୍କ ଚାଲୁ ରହିଛି । ଦୀପିକାର ତା୨୦/୩/୮୦ରିଖରେ NO HUMBUG ଛଦ୍ମନାମରେ ଜନୈକ ପତ୍ରପ୍ରେରକଙ୍କ ଇଂରାଜୀ ପତ୍ର ପ୍ରକାଶ ପାଇଛି । ଏହା ପ୍ୟାରୀମୋହନଙ୍କ ବିଚାରର ସ୍ୱୀକୃତିପତ୍ର । ଛଦ୍ମବେଶୀ ବ୍ୟକ୍ତିଜଣକ ସମ୍ଭବତଃ ମଧୁସୂଦନ ଦାସ । ପୂର୍ବରୁ ବାବୁ କାଳୀପଦ ବନ୍ଦ୍ୟୋପାଧ୍ୟାୟ କଲିକତାରୁ ପ୍ରକାଶିତ ଏକ ଇଂରାଜୀ ପତ୍ରିକାର ମାର୍ଚ୍ଚ ମାସ 'ଆଠ' ତାରିଖରେ ବହି ସମ୍ପର୍କରେ ଏକ ପ୍ରତିବାଦ ପତ୍ର ମଧ୍ୟ ପ୍ରକାଶ କରିଛନ୍ତି । ତା ୧୬.୩ରିଖରେ ଲିଖିତ ପତ୍ରରେ ମଧ୍ୟ ତତ୍ ସଂକ୍ରାନ୍ତରେ ସୂଚନା ଦେଇଛନ୍ତି ।[୫] ଏବଂ, ତାଙ୍କ ଅଭିଯୋଗକୁ ଚର୍ଚ୍ଚାର ପରିସରକୁ ଆଣିବାପାଇଁ ଅଧିକ ତତ୍ପରତା ପ୍ରକାଶକରିଛନ୍ତି ତତ୍କାଳୀନ ସ୍କୁଲ୍ ସମୂହର ଡେ଼ପୁଟି ଇନ୍ସପେକ୍ଟର ବାବୁ ଶ୍ରୀ ଉମାପଦ ଦେ । ପରେ ପରେ କାଳୀପଦ ବାବୁ ଜଗନ୍ନାଥୀ ନଂ୧ମ୍ବର, ଜଗନ୍ନାଥୀ ନଂ୨ମ୍ବର ଓ ଜଗନ୍ନାଥୀ ନଂ୩ମ୍ବର ଶୀର୍ଷକରେ ତିନିଗୋଟି ପାମ୍ଫଲେଟ୍ ଛାପି ସର୍ବସାଧାରଣରେ ବାଣ୍ଟିଛନ୍ତି । କେବଳ ସେତିକିରେ ସେ ନୀରବ ରହି ନାହାନ୍ତି । ସ୍କୁଲ୍ ସମୂହର ପାଠ୍ୟକ୍ରମରୁ ବହିର ପ୍ରତ୍ୟାହାରପାଇଁ ସରକାରଙ୍କୁ ଅନୁରୋଧ କରିଛନ୍ତି । ପ୍ରମାଦ ସମ୍ପର୍କରେ ଚର୍ଚ୍ଚାପାଇଁ ମାଜିଷ୍ଟ୍ରେଟ୍ ପସି ସାହେବ ଏକ କମିଟି ଗଠନ କରିଛନ୍ତି । ଏହି ପରୀକ୍ଷା ସଭାର ସଦସ୍ୟ ରହିଛନ୍ତି ଜଗନ୍ମୋହନ ରାୟ, ବାବୁ ଦୀନନାଥ ସରକାର, ଚଣ୍ଡୀଚରଣ ଉପାଧ୍ୟାୟ ଓ ଅନ୍ୟମାନେ । ଚର୍ଚ୍ଚା କାଳରେ ବାବୁ କାଳୀପଦ ଓ ଉମାପ୍ରସାଦ ବାବୁଙ୍କ ବ୍ୟତୀତ ଅନ୍ୟ ସଦସ୍ୟମାନେ ପ୍ୟାରୀମୋହନଙ୍କ ମତାମତ ଦୂଷଣୀୟ ନୁହେଁ ବୋଲି ମତ ଦେଇଛନ୍ତି । ମାତ୍ର ତାହା ସତ୍ତ୍ୱେ, ବହିକୁ ବିଦ୍ୟାଳୟର ହତା ବାହାରେ ରଖାଯାଇଛି । କେବଳ ସେତିକି ନୁହେଁ, ସରକାରୀ ଚିଠିଗୁଡ଼ିକୁ ମୁଦ୍ରଣକରି କାଳୀପଦବାବୁ ସର୍ବସାଧାରଣରେ ବଣ୍ଟନ କରିଛନ୍ତି ।[୬] ଓଡ଼ିଆଙ୍କଦ୍ୱାରା ଲିଖିତ ଏହି ପ୍ରଥମ ଇତିହାସ ବହି ବିରୋଧରେ ବଙ୍ଗାଳୀମାନଙ୍କ ଅଭିଯୋଗ ଯେ କେତେ ମାତ୍ରାରେ ଯୁକ୍ତିସଙ୍ଗତ, ଏବଂ ତାହା ଯେ ସମକାଳୀନ ବଙ୍ଗାଳୀ ଓ ଓଡ଼ିଆ ଜାତିର 'ଅସ୍ମିତା'କୈନ୍ଦ୍ରିକ ଅବବୋଧର ବିତର୍କ–ତତ୍ସଂକ୍ରାନ୍ତରେ ଏଠାରେ ଆଲୋକପାତ କରାଯାଇପାରେ ।

# ଦୁଇ

ପ୍ୟାରୀମୋହନଙ୍କ ଇତିହାସ ବହି ସଂକ୍ରାନ୍ତ ବିତର୍କର କାରଣ ଓ ତାହାର ପରିଣତି ସଂପର୍କରେ ଚର୍ଚ୍ଚା ପୂର୍ବରୁ, ମୁଁ ଏଠାରେ ପ୍ରସଙ୍ଗକ୍ରମେ ଓଡ଼ିଶାର ଇତିହାସ ଚର୍ଚ୍ଚା-ପରମ୍ପରାର ସଂକ୍ଷିପ୍ତ ସୂଚନା ଦେବାକୁ ଉଚିତ୍ ମଣୁଛି । ଏବଂ, ନିଜେ ପ୍ୟାରୀମୋହନ ମଧ୍ୟ ବହିର ଭୂମିକାରେ ଆପଣା ଆଶ୍ରିତ 'ଆକର'ଗ୍ରନ୍ଥ ଏବଂ ଆମସ୍ ସଟନ୍, ଡ଼ବ୍ଲ୍ୟୁ. ଡ଼ବ୍ଲ୍ୟୁ. ହଣ୍ଟର, ଏ. ଷ୍ଟର୍ଲିଂ, ଟଏନବି ଆଦି ବିଦେଶୀ ଐତିହାସିକଙ୍କ ସହିତ ରଙ୍ଗଲାଲ ବାନାର୍ଜୀ ଓ ରାଜେନ୍ଦ୍ରଲାଲ ମିତ୍ରଙ୍କୁ ନିଜର ଆଦର୍ଶ ମଣିଛନ୍ତି ବୋଲି ଉଲ୍ଲେଖ କରିଛନ୍ତି ।[୨] ମାତ୍ର ସମକାଳରେ ପ୍ରକାଶିତ ଅନ୍ୟ ଯେଉଁ ଗ୍ରନ୍ଥର ସେ ସାହାଯ୍ୟ ନେଇଛନ୍ତି, ସେଗୁଡ଼ିକ ସମ୍ପର୍କରେ ସୂଚନା ଦେଇ ନାହାନ୍ତି । ଏହା ସ୍ପଷ୍ଟ ଯେ, ସେ ସେହି ଗ୍ରନ୍ଥଗୁଡ଼ିକର ରଚନା ଶୈଳୀ ଓ ତଥ୍ୟଦ୍ୱାରା ବିଶେଷ ଭାବରେ ପ୍ରଭାବିତ । ସେଗୁଡ଼ିକ ଲରିଙ୍କ Orissa, The Garden of Superstition and Idolatory(1850), ଆମସ୍ ସଟନ୍‌ଙ୍କ Orissa and Its Evangeliza-tion(1850), ବ୍ରଜକିଶୋର ଘୋଷଙ୍କ The History of Puri(1848), ଭବାନୀଚରଣ ବନ୍ଦୋପାଧ୍ୟାୟ କର୍ତ୍ତୃକ *ଶ୍ରୀ ପୁରୁଷୋତ୍ତମ ଚନ୍ଦ୍ରିକା*(୧୮୬୫) ଏବଂ ଶିବଚନ୍ଦ୍ର ସୋମଙ୍କ *ଓଡ଼ିଶ୍ୟାର ଇତିହାସ* ।[୮] କେବଳ ଗ୍ରନ୍ଥ ନୁହେଁ, ଓଡ଼ିଶା ସମ୍ପର୍କରେ ପୂର୍ବ ପ୍ରକାଶିତ ବହୁ ସରକାରୀ ରିପୋର୍ଟ, ଇତିହାସ ରଚନାପାଇଁ ଯେଉଁଗୁଡ଼ିକ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ, ତତ୍‌ସଂକ୍ରାନ୍ତରେ ନିରବ ରହିଛନ୍ତି ।[୯] କାରଣ ବିଦେଶୀମାନଙ୍କ ପ୍ରଦତ୍ତ ଏହି ରିପୋର୍ଟଗୁଡ଼ିକ କେବଳ ନିର୍ଭରଯୋଗ୍ୟ ତଥ୍ୟ ନୁହେଁ, ଅନୁଭବପୁଷ୍ଟ ଓ ବହୁଭାବରେ ନିରପେକ୍ଷ ।

ଏହା ଅବଶ୍ୟ ସ୍ୱୀକାର୍ଯ୍ୟ ଯେ ଷ୍ଟର୍ଲିଂ, ସଟନ୍, କିଉରି, ହଣ୍ଟର, ଟୟନବି ପ୍ରମୁଖ ଆଧୁନିକ ପଶ୍ଚିମର ପାଦ୍ରୀ, ପ୍ରଶାସକ-ବିଦ୍ୱାନ୍ ସମକାଳୀନ ଓଡ଼ିଶାର ସମାଜ ଓ ଧର୍ମଜୀବନ ସଂସ୍ପର୍ଶରେ ଆସି ଆହତ ହୋଇଛନ୍ତି । ଷ୍ଟର୍ଲିଂ ଶ୍ରୀଜଗନ୍ନାଥ ମନ୍ଦିରକୁ 'Mighty Pagoda or Pagodas, the mirror of wickedness and idolatry'; କିଉରି 'The Garden of Superstition'; ସଟନ୍ 'ପୌତ୍ତଳିକତାର ଉପବନ' ଏବଂ ହଣ୍ଟର, ଭାରତବର୍ଷର ଅତ୍ୟନ୍ତ ଅନୁନ୍ନତ ଓ ଅବିକଶିତ ଅଞ୍ଚଳ ବୋଲି ଅବଶ୍ୟ କହିଛନ୍ତି ।[୧୦] ମାତ୍ର ସେମାନେ ଓଡ଼ିଶାର ପ୍ରାକୃତିକ ପରିବେଶ, ଭୂଗୋଳ, ସାଧାରଣ ମଣିଷମାନଙ୍କର ସରଳ ଜୀବନଚର୍ଯ୍ୟା, ସ୍ଥାପତ୍ୟର କମ୍ ପ୍ରଶଂସା କରିନାହାନ୍ତି । ଓଡ଼ିଆ ଭାଷା ଓ ସାହିତ୍ୟର ପ୍ରାଚୀନତା ନିରୂପଣ କାଳରେ ସେହିମାନେ ହିଁ ପଡ଼ୋଶୀମାନଙ୍କ ବିଚାରର ବିରୋଧ କରିଛନ୍ତି ।

ଓଡ଼ିଶାର ଇତିହାସ ଚର୍ଚ୍ଚାରେ ବଙ୍ଗାଳୀମାନଙ୍କର ଓଡ଼ିଶା ଓ ଓଡ଼ିଆମାନଙ୍କ ସମ୍ପର୍କରେ ମନ୍ତବ୍ୟ ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ପ୍ରସଙ୍ଗ । ଆମେ ଅନେକ ସମୟରେ ଏକ ସାଧାରଣ ଧାରଣା ପୋଷଣ କରିଥାଉ ଯେ, ବଙ୍ଗଳୀମାନେ ଓଡ଼ିଶାର ସ୍ୱାତନ୍ତ୍ର୍ୟବିରୋଧୀ । ଏବଂ, ସେମାନେ ହିଁ ଓଡ଼ିଶାର ସଂସ୍କୃତି ସଂରଚନା ଓ ଆଧୁନିକୀକରଣର ସୂତ୍ରଧର । ମାତ୍ର ଓଡ଼ିଆମାନଙ୍କର ନିନ୍ଦାଗାନ କରୁଥିବା ସେହି ବଙ୍ଗାଳୀମାନେ ଏହି ଅନୁନ୍ନତମାନଙ୍କର ଅତୀତର କମ୍ ପ୍ରଶଂସା କରିନାହାନ୍ତି । ରଙ୍ଗଲାଲ ବନ୍ଦୋପାଧ୍ୟାୟ, ବ୍ରଜକିଶୋର ଘୋଷ, ଶିବଚନ୍ଦ୍ର ସୋମ ଏବଂ ରାଜେନ୍ଦ୍ରଲାଲ ମିତ୍ରଙ୍କ ଗ୍ରନ୍ଥଗୁଡ଼ିକ

ତାହାର ଉଦାହରଣ ।[୧୧] ଭବାନୀ ଚରଣ ବନ୍ଦୋପାଧ୍ୟାୟଙ୍କ ପୁରୁଷୋତ୍ତମ ଚନ୍ଦ୍ରିକା ଅବଶ୍ୟ ମାଦଳାପାଞ୍ଜିର ପଦ୍ୟାନୁବାଦ । ମାତ୍ର ଶ୍ରୀକ୍ଷେତ୍ରର ବିବରଣୀ ଓ ଅନ୍ୟକ୍ଷେତ୍ର ସମ୍ପର୍କରେ ବର୍ଣ୍ଣନା କାଳରେ ସେ ଉତ୍କଳଭୂମିର ମାହାତ୍ମ୍ୟ ପ୍ରତିପାଦନରେ ଆଦୌ ପରାଙ୍ମୁଖ ହୋଇ ନାହାନ୍ତି ।[୧୨] ସୋମ ଆପଣାଗ୍ରନ୍ଥର ଉପକ୍ରମଣିକାରେ ଉଲ୍ଲେଖ କରିଛନ୍ତି:

> ଉଡ଼ିଶ୍ୟା ଦେଶ ବଲିଲେଇ ସାଧାରଣ ଲୋକେର ମନେ ଏକ ନିର୍ଦ୍ଧନ, କଦାକାର, କଲଙ୍କିତ ଅସଭ୍ୟ ଜାତିର ବାସସ୍ଥାନ, ଏଇ ଭାବ ଉଦିତ ହୟ । ଅନେକେର ଏଇ ରୂପ ସଂସ୍କାର ଆଛେ ଯେ, ଉଡ଼ିଶ୍ୟା ଦେଶେର ଭୂମି ଅତି ଅନୁର୍ବର,ଉଷର, ଜଲବାୟୁ ଅତି ଅସ୍ୱାସ୍ଥ୍ୟକର ଏବଂ ତଦ୍ଦେଶବାସୀ ଲୋକେରା ବଲ, ବିଦ୍ୟା, ବୁଦ୍ଧି, ଆଚାର ଓ ଶିଳ୍ପଚାତୁର୍ଯ୍ୟ ବିଷୟେ ଅତି ହୀନକଳ୍ପ । ଯଦିଓ ଏରୂପ ସଂସ୍କାର କେବେ ସତ୍ୟ ହଇତେପାରେ, ତଥାପି ଇହା ସର୍ବତୋଭାବେ ନ୍ୟାୟମୂଳକ ନହେ । ଉକ୍ତ ଦେଶେର ନୀଚ ଶ୍ରେଣୀୟ ଲୋକ ଦିଗେର ଆଚାର ବ୍ୟବହାର ଦୃଷ୍ଟେ ଅପର ଦେଶୀୟ ବ୍ୟକ୍ତି ଦିଗେର ମନେ ଏଇ ରୂପ ଘୃଣା ଜନ୍ମିୟାଛେ । କେଉ ଉଡ଼ିଶ୍ୟାବାସୀ ଦିଗେର ବିଶେଷ ବିବରଣ ଅବଗତ ହଇବାର ମାନସେ ଯତ୍ନ କରିୟା ଅନୁସନ୍ଧାନ କରେନ ନାଇସ। xxx କେହି ଏମନ ସିଦ୍ଧାନ୍ତ କରେନ୍ ଯେ ଇହାଦ୍ୱାରା ଶୋଭାମାନ ବେଶ୍ ବୁଝାୟେ । କଥିତ ଅଛେ ଯେ, ଏଇ ଦେଶ ଦେବତା ଦିଗେର ଅତି ପ୍ରିୟ ଆବସସ୍ଥାନ xxxx ଗୌରବାସ୍ପଦା xxxx ଯେ ଦେଶେ ଦେବତାଗଣ ଅବସ୍ଥାନପୂର୍ବକ ଆନନ୍ଦିତ ହୁଏ, ସେ ଦେଶେର ଗୁଣାନୁବାଦେ ଗ୍ରନ୍ଥ ବାହୁଲ୍ୟ କରଣେର ପ୍ରୟୋଜନ ନାଇ ।[୧୩]

ମାତ୍ର ଓଡ଼ିଶାର ଐତିହ୍ୟ ସମ୍ପର୍କରେ ରାଜେନ୍ଦ୍ରଲାଲ ମିତ୍ରଙ୍କ ମନ୍ତବ୍ୟ, ସମକାଳୀନମାନଙ୍କୁ ଅତ୍ୟନ୍ତ ଅସ୍ୱସ୍ତିକର ବୋଧହୋଇଛି । ଓଡ଼ିଶାର କୌଣସି ପତ୍ରିକାରେ ମିତ୍ରଙ୍କ ବହିର ସମୀକ୍ଷା କରାଯାଇ ନାହିଁ । ଓଡ଼ିଶା ଓ ଓଡ଼ିଆମାନଙ୍କ ପ୍ରସଙ୍ଗରେ ସେ ଲେଖିଛନ୍ତି, "Orissa is the country of the dirty people xx the land of hibiscus flower ଏବଂ Abode of a primitive, Non-Aryan or a fallen race, it has no reputation for sanctity and never was thought of as a holy place of pilgrimage for the Hindus ଏବଂ ଏହାର ଲୋକମାନଙ୍କୁ barbarous race, palki bearers, 'od' is generally supposed to be a tribal designation.[୧୪] ମାତ୍ର ଓଡ଼ିଆମାନଙ୍କୁ ଏପରି ଆଖିରେ ଦେଖୁଥିବା ସେହି ମିତ୍ର ଗ୍ରନ୍ଥର ପ୍ରଥମ ଭାଗରେ, ଓଡ଼ିଶାର ସ୍ଥାପତ୍ୟ, ମନ୍ଦିର ଗଢ଼ଣ କଳା, ଧର୍ମ, ସାଧାରଣ ମଣିଷର ଜୀବନଯାତ୍ରା ଏବଂ ଦ୍ୱିତୀୟ ଭାଗରେ ଖଣ୍ଡଗିରି, ପୁରୀ, ଭୁବନେଶ୍ୱର, କୋଣାର୍କ, ଯାଜପୁରର ଐତିହ୍ୟ ବର୍ଣ୍ଣନା ଓ ପ୍ରଶଂସାରେ ଶତମୁଖ ହୋଇଛନ୍ତି । ବିଶେଷତଃ ଶୁଦ୍ଧବାଦୀମାନଙ୍କ ବିଚାରରେ କୋଣାର୍କ ଓ ଅନ୍ୟ ମନ୍ଦିରଗୁଡ଼ିକରେ ଜୀବନ୍ତ ମୂର୍ତ୍ତି ଏବଂ ଖଣ୍ଡଗିରି ଓ ଉଦୟଗିରି ସ୍ଥାପତ୍ୟକୁ ଉତ୍କୃଷ୍ଟ କଳା କାରିଗରୀର ନମୁନା ଭାବରେ ଗ୍ରହଣକରିଛନ୍ତି ।[୧୫] ଏହା ଅବଶ୍ୟ ସ୍ୱୀକାର୍ଯ୍ୟ ଯେ, ଶ୍ରୀଯୁକ୍ତ ମିତ୍ର ସମକାଳୀନ ଭାରତର ଅନ୍ୟତମ ପ୍ରଶାସକ-ବିଦ୍ୱାନ, ଯିଏ କୌଣସି ବିଶେଷ କାରଣରୁ ଇଂରେଜମାନଙ୍କର ପ୍ରଜ୍ଞା ଓ ବିଚାରର ପରିପୋଷକ

ଥିଲେ । ଏପରି କି, ବଙ୍ଗଳା ଭାଷାକୁ ମଧ୍ୟ ଅନ୍ୟ ବଙ୍ଗାଳୀମାନଙ୍କ ପରି ସର୍ବୋତ୍ତମ ଭାବରେ ଗ୍ରହଣ କରି ପାରୁ ନ ଥିଲେ । ତେଣୁ ସେ ଓଡ଼ିଆ ଜାତିର ଐତିହ୍ୟ ଓ ଭାଷା, ସାହିତ୍ୟକୁ ଛୋଟକରି ଦେଖିବାରେ ଆଦୌ ଅସ୍ୱାଭାବିକତା ନ ଥିଲା ।

ମାତ୍ର ଓଡ଼ିଶାର ଇତିହାସ ରଚନା କ୍ଷେତ୍ରରେ ପ୍ୟାରୀମୋହନ ପ୍ରଥମ ଓଡ଼ିଆ । ଯଦିଚ ତାଙ୍କ ପୂର୍ବପୁରୁଷ ବଙ୍ଗାଳୀ ଥିଲେ, ଏବଂ ବଙ୍ଗାଳୀମାନଙ୍କ ପ୍ରତି ସେ ଅବଚେତନ ଦୁର୍ବଳ ଥିଲେ, ତଥାପି ତାଙ୍କ ଇତିହାସ ବହିର ବିଶେଷତା–ସେ ବିଦେଶୀ ଇତିହାସବିତ୍‌ମାନଙ୍କ ଓଡ଼ିଶା ସଂକ୍ରାନ୍ତ ମନ୍ତବ୍ୟ ଓ ବିଚାରକୁ ସଂପୂର୍ଣ୍ଣ ଭାବେ ଗ୍ରହଣ କରିପାରିନାହାନ୍ତି । ସେମାନଙ୍କ ରଚନାର ଯେଉଁ ଯେଉଁ ଅଂଶ ଓଡ଼ିଆମାନଙ୍କ ଜାତୀୟ ଜୀବନକୁ ନ୍ୟୂନକରିବ ବୋଲି ସେ ଅନୁଭବ କରିଚନ୍ତି, ତାହାକୁ ଚର୍ଚ୍ଚାର ପରିସରଭୁକ୍ତ କରିନାହାନ୍ତି । ବରଂ, ସ୍ଥଳ ବିଶେଷରେ ଷ୍ଟର୍ଲିଂ, ହଣ୍ଟର, ଟୟନବି ଓ ମିତ୍ରଙ୍କ ମନ୍ତବ୍ୟର ଖଣ୍ଡନକରିଛନ୍ତି । ଅନ୍ୟ ଐତିହାସିକମାନଙ୍କ ପରି ସେ ଅବଶ୍ୟ ମାଦଳା ପାଞ୍ଜିକୁ ପ୍ରଧାନ ଉପାଦାନ ଭାବରେ ଗ୍ରହଣକରିଛନ୍ତି । ମାତ୍ର ପ୍ରାଚୀନ କାଳର ଇତିହାସ ବର୍ଣ୍ଣନା କାଳରେ ଶାସକମାନଙ୍କୁ 'ଔପନ୍ୟାସିକ ରାଜାଗଣ' କହି "ଇତିହାସ ପୃଷ୍ଠାମାନଙ୍କରୁ ବିସର୍ଜନ" ଦେଇଛନ୍ତି ।[୧୬] ନିଜ ଜାତିର ଗାଥା ଲେଖିବା କାଳରେ ଅନେକ କ୍ଷେତ୍ରରେ ତାଙ୍କ ଜାତିପ୍ରୀତିବୋଧ ଅତ୍ୟନ୍ତ ସ୍ୱାଭାବିକ ରୀତିରେ ଆତ୍ମପ୍ରକାଶ କରିଛି । ଏବଂ, ତାହା ହିଁ ହୋଇଛି ଏକ କର୍ତ୍ତୃତ୍ୱବିସ୍ତାରୀ ଓ ଅଭିଜାତମନସ୍କ ପଡ଼ୋଶୀ ଜାତିର ଗାତ୍ରଦାହର କାରଣ ।

## ତିନି

ଆମେ ପ୍ରତ୍ୟେକେ ଏ କଥା ସ୍ୱୀକାର କରିଛୁ ଯେ ଇତିହାସ ଚର୍ଚ୍ଚା ମୁଖ୍ୟତଃ ଉପଲବ୍ଧ ଉପାଦାନ ଓ ତଥ୍ୟନିର୍ଭର । ଅର୍ଥାତ୍ ଜଣେ ଇତିହାସବିଦ୍ କେବଳ ଉପଲବ୍ଧ ତଥ୍ୟଗୁଡ଼ିକର ବିଶ୍ଳେଷକ । ମାତ୍ର ଆମେ ଏହା ଭୁଲିଯିବା ଉଚିତ୍ ନୁହେଁ ଯେ, ଇତିହାସବିତ୍ ଜଣେ ମଣିଷ, ଯାହାର ଏକ ବ୍ୟକ୍ତିକ ଓ ଜାତିଗତ ବା ସମୁଦାୟଗତ ପରିଚିତି ଥାଏ ଏବଂ ସେ ଏକ ନିର୍ଦ୍ଦିଷ୍ଟ ସମୟର ସ୍ୱରକୁ ଅନୁଭବ କରୁଥାଏ । ଏକ ନିର୍ଦ୍ଦିଷ୍ଟ ସମୟରେ, ଏକ ନିର୍ଦ୍ଦିଷ୍ଟ ଥାନ ଉପରେ ଠିଆ ହୋଇ, ସେ ତା'ର ଅତୀତ ଆଡ଼କୁ କେବଳ ଅନିଷାକରି ରହି ନ ଥାଏ, ଭବିଷ୍ୟତର ମଧ୍ୟ ଆକଳନ କରିନେଉଥାଏ । ପୁନଶ୍ଚ, ଏକ ପ୍ରଜ୍ଞାଦୀପ୍ତ ଓ ସଚେତନ ବ୍ୟକ୍ତି ହୋଇଥିବାରୁ ତଥ୍ୟଗୁଡ଼ିକ ନିଜ ଆଦର୍ଶରେ ବିଶ୍ଳେଷଣକରିବା, ଅର୍ଥାତ୍ ଇତିହାସ ତିଆରି କରିବାର ସାମର୍ଥ୍ୟ ତା'ର ଥାଏ । ତେଣୁ କୌଣସି ଜାତିର ଇତିହାସ, ବ୍ୟକ୍ତିର ପାଣ୍ଡିତ୍ୟ ଓ ସମୟର ଆବଶ୍ୟକତା ଅନୁସାରେ ମଧ୍ୟ ବଦଳି ବଦଳି ଯାଉଥାଏ । କାରଣ ଇତିହାସ ଏକ ସଂରଚନା, ସେହି ନ୍ୟାୟରେ ଏହା ପୁନର୍ଲିଖିତ ହେବା ଆଦୌ ଅସ୍ୱାଭାବିକ ନୁହେଁ । ଏହି ସଂରଚନା ଏକ ଜଟିଳ ପ୍ରସଙ୍ଗ–ଯାହା ବ୍ୟକ୍ତି, ଜାତି ଓ କାଳ ଭେଦରେ ମଧ୍ୟ ଭିନ୍ନ ଭିନ୍ନ ରୂପ ନେଇଥାଏ ।

ଇତିହାସ ରଚନା, ପଶ୍ଚିମର ଭାରତକୁ ଏକ ଅନବଦ୍ୟ ଦାନ–ଏ କଥା ଆମେ ପ୍ରତ୍ୟେକ ମାନିନେଉ । ମାତ୍ର ଏହା ମାନିନେଲା ବେଳେ ଅନ୍ୟ ଏକ ପ୍ରଶ୍ନ ମଧ୍ୟ ଆମକୁ ଅନ୍ୟମନସ୍କ କରିଦିଏ

ଯେ, ଭାରତବର୍ଷରେ କ'ଣ ଇତିହାସ ସଂରଚନାର ସ୍ୱତନ୍ତ୍ର ବିଧି ନ ଥିଲା ? ଏହି ପ୍ରଶ୍ନ ସ୍ୱତନ୍ତ୍ର ଆଲୋଚନାର ଅପେକ୍ଷା ରଖେ । ପ୍ରାସଙ୍ଗିକତା ପରିପ୍ରେକ୍ଷୀରେ ସଂକ୍ଷେପରେ ଏତିକି କୁହାଯାଇପାରେ ଯେ, ଆଗେ ଆମେ ଅତୀତକୁ ଅତ୍ୟନ୍ତ ସ୍ୱପ୍ନାବିଷ୍ଟ ଆଖିରେ ଦେଖିଛୁ । ପୁରାଣ, କାବ୍ୟ, ମହାକାବ୍ୟ, ପରଂପରା ଭିତରେ ଇତିହାସ ଜୀବନ୍ତ ବୋଲି ସ୍ୱୀକାର କରିଛୁ । ବାସ୍ତବକୁ କଳ୍ପନାୟିତ କରିଛୁ । ଫଳତଃ, ଅତିକଳ୍ପନା ଭିତରେ ବାସ୍ତବତାର ସ୍ୱରୂପ ପ୍ରାୟତଃ ପୁଲକପ୍ରଦ ବିଭବରେ ରୂପାନ୍ତରିତ ହୋଇଯାଇଛି । ଏବଂ, ସାହିତ୍ୟ ଭିତରେ ଅତୀତର ସତ୍ୟକୁ ଜୀବନ୍ତ ମଣି, ତାହାକୁ ଇତିହାସର ଉପାଦାନ ଭାବରେ ଗ୍ରହଣ କରିଛୁ । ଏଠାରେ ଆମେ ଅନ୍ୟ ଏକ ଗୁରୁତ୍ୱପୂର୍ଣ୍ଣ ପ୍ରସଙ୍ଗ ଭୁଲିଯିବା ଉଚିତ୍ ନୁହେଁ ଯେ, ଦେଶୀମାନଙ୍କ ସଂସ୍କୃତି ଓ ଇତିହାସକୁ ଉପନିବେଶବାଦୀମାନେ ଇଚ୍ଛାମତେ ଓଲଟପାଲଟ କରିଦେଇଛନ୍ତି । ଶାସିତ ଭୂମିର ଇତିହାସ ସଂରଚନାରେ ସେମାନେ ଆପଣାର ଆଭିମୁଖ୍ୟକୁ ଶ୍ରେୟକରିଛନ୍ତି । ଅର୍ଥାତ୍, ବିଚରାମାନଙ୍କ ଇତିହାସକୁ ମଧ୍ୟ ସଂଶୟାଚ୍ଛନ୍ନ କରି ଦେଇଛନ୍ତି । ଏହି ଉଦ୍ଦେଶ୍ୟ ପୂରଣପାଇଁ ଇଂରେଜ ପ୍ରଶାସନ ବଛାବଛା ଆଇ.ସି.ଏସ୍. ଅଫିସର ଏବଂ କେମ୍ବ୍ରିଜ୍ ବିଶ୍ୱବିଦ୍ୟାଳୟର ଇତିହାସ ବିଭାଗର ତଦ୍‌ବିଦ୍‌ମାନଙ୍କୁ ପରାମର୍ଶ ଦେଇଛି । ଜି.ଏନ୍.ଦେବୀଙ୍କ ଭାଷାରେ— "ସମକାଳୀନ ଭାରତ ଉପରେ ଉପନିବେଶବାଦୀମାନଙ୍କ ଆଦର୍ଶ ନଦି ହୋଇ ପଡ଼ିଛି । କାରଣ ଶାସିତମାନଙ୍କ ଇତିହାସର ବିଲୋପନ ଅଥବା ବିକୃତାୟନ ଉପନିବେଶବାଦର ଅନ୍ୟତମ ପ୍ରଧାନ ଆଭିମୁଖ୍ୟ । ଏବଂ, ଇତିହାସ ହିଁ ଅନ୍ୟ ଉପରେ ଆପଣାର ଆଧିପତ୍ୟ ବିସ୍ତାରଣର ଏକ ଭବ୍ୟ ଉପାଦାନ ।" ସେହି ନ୍ୟାୟରେ ରାଜପୁତ ଜାତିର ଇତିହାସ ଲେଖକ ଚାର୍ଲସ୍ ଡଫ୍ ଏବଂ ଓଡ଼ିଶାର ଇତିହାସକାର ହଣ୍ଟରଙ୍କୁ, ଇତିହାସ ରଚନା ମାଧ୍ୟମରେ ଭାରତର ଆଞ୍ଚଳିକତାବାଦକୁ ପ୍ରୋତ୍ସାହିତ କରିବା ଔପନିବେଶିକ ଗୁପ୍ତ କାର୍ଯ୍ୟସୂଚୀର, ଶାସକୀୟ ଦଲୀଲ୍ ରୂପରେ ଆମେ ଗ୍ରହଣ କରି ପାରିବା ।[୧୭] ଇତିହାସ ରଚନାର ଉପର୍ଯ୍ୟୁକ୍ତ ଆଦର୍ଶ ଆଧାରରେ ପ୍ୟାରୀମୋହନଙ୍କ 'ଓଡିଶା ଇତିହାସ' ଉପନିବେଶବାଦ ସଂକ୍ରମଣର ଅମଳ ନା, ଏକ ବ୍ୟତିକ୍ରମ, ତତ୍‌ସମ୍ବନ୍ଧରେ ଚର୍ଚ୍ଚା କରାଯାଇପାରେ ।

ମୁଁ ଆଲୋଚନାର ଆରମ୍ଭରେ କହିଛି, ଓଡ଼ିଶାର ଇତିହାସ ପ୍ରଥମେ ଇଂରେଜ, ପରେ ବଙ୍ଗାଳୀ ଓ ସବା ଶେଷରେ ଓଡ଼ିଆଏ ଲେଖିଛନ୍ତି । ଏବଂ, ଗୁରୁତ୍ୱପୂର୍ଣ୍ଣ ପ୍ରସଙ୍ଗ, ଓଡ଼ିଆମାନେ ପ୍ରଥମେ ଭାରତ ଇତିହାସ ଏବଂ ପରେ ଓଡ଼ିଶା ଇତିହାସ ଲେଖିଛନ୍ତି ।[୧୮] ପୁନଶ୍ଚ ସମକାଳୀନ ଓଡ଼ିଶା, ଅର୍ଥାତ୍ ଉନବିଂଶ ଶତାବ୍ଦୀର ଷଷ୍ଠ, ସପ୍ତମ ଓ ଅଷ୍ଟମ ଦଶକର ଓଡ଼ିଶା କହିଲେ, ଏକ ଉପନିବେଶ ଭିତରେ ଆଉ ଏକ ଉପନିବେଶ । ଏହା ଇଂରେଜ ଶାସନାଧୀନ, ମାତ୍ର ପ୍ରଶାସନ, ଶିକ୍ଷା, ବାଣିଜ୍ୟ, ଶିଳ୍ପକ୍ଷେତ୍ରର ବହୁସଂଖ୍ୟକ ଅଧିକାର ବଙ୍ଗାଳୀ ଓ ତେଲୁଗୁ । ସେହି ଅଧିକାରୀମାନେ କେଉଁ ବିଶେଷ ଉତ୍ସାହରେ ଆପଣା ରାଜ୍ୟର ସୀମା ପ୍ରସାରଣ ପ୍ରୟାସୀ ହୋଇଛନ୍ତି । ସେମାନଙ୍କର ଆଦର୍ଶ ହୋଇଛି, ଶାସିତ ଭୂମିର ବର୍ତ୍ତମାନକୁ ଅଧିକ ଦୁର୍ବଳ କରିବାପାଇଁ ସେମାନଙ୍କର ଇତିହାସର ଅନ୍ଧାରିତ ଦିଗଗୁଡ଼ିକର ଆଲୋକନ ଏବଂ ଆପଣାର ପ୍ରଶସ୍ତିଗାନ । ଉପନିବେଶବାଦର ଏହାକୁ ଅନ୍ୟତମ ଫଳଶ୍ରୁତି ଭାବରେ ଆମେ ଗ୍ରହଣ କରିପାରିବା । ତାହା ହୋଇ ନ ଥିଲେ, ଉପନିବେଶବାଦ କବଳିତ ପରାଧୀନମାନେ ନିଜ ନିଜର କର୍ତ୍ତୃତ୍ୱ ବିସ୍ତାର ଉଦ୍ଦଶ୍ୟରେ ଅନ୍ୟ

ପରାଧୀନମାନଙ୍କର ସ୍ୱାତନ୍ତ୍ର୍ୟକୁ ଅସ୍ୱୀକାର ଓ କବଳିତ କରିବାପାଇଁ ଆଦୌ ଅହଂ ଅନ୍ଧକାରର ଅନୁଗତ ହୋଇ ନ ଥା'ନ୍ତେ ।

ଆମେ ଜାଣୁ, ସମକାଳୀନ ବ୍ରିଟିଶ୍ ଇଣ୍ଡିଆର ରାଜଧାନୀ କଲିକତା, ବଙ୍ଗଦେଶାନ୍ତର୍ଗତ ଏବଂ ଓଡ଼ିଶାର ପଡ଼ୋଶୀ । ତେଣୁ ଇଂରେଜ ଶାସନର ସମସ୍ତ ସୁଫଳ ଓ କୁଫଳର ପ୍ରଥମ ଉପଭୋକ୍ତା ହିଁ ସେହିମାନେ । ଉପନିବେଶବାଦୀମାନେ ସେମାନଙ୍କର ଆବଶ୍ୟକତା ପୂରଣପାଇଁ ପ୍ରଶାସନ, ଶିକ୍ଷା, ବାଣିଜ୍ୟ, କୃଷି ଆଦି କ୍ଷେତ୍ରରେ ଯେଉଁ ନୂଆ ଯୋଜନାମାନ ପ୍ରଣୟନ କରିଛନ୍ତି, ବଙ୍ଗାଳୀମାନେ ସେହି ସମସ୍ତର କାର୍ଯ୍ୟକାରିତାର ବାହକ ହୋଇଛନ୍ତି । ସେମାନେ ଦେଶୀମାନଙ୍କ ଭାଷା ଶିଖିବାକୁ ଚାହିଁଛନ୍ତି । ସେହି କାର୍ଯ୍ୟ ସମ୍ପାଦନପାଇଁ ସେମାନଙ୍କ ଦେଶ-ରୀତିରେ ବହି ଲେଖିଛନ୍ତି, ଲେଖାଇଛନ୍ତି; ପାଠ୍ୟଖସଡ଼ା ପ୍ରସ୍ତୁତ କରିଛନ୍ତି; ସ୍କୁଲ୍ ଖୋଲିଛନ୍ତି; ପଢ଼ାବହି ଛାପିଛନ୍ତି, ବହି ଛାପିବାପାଇଁ ସୋସାଇଟି ବି ଗଢ଼ିଛନ୍ତି । ୧୭୯୩ ମସିହାରେ ଚାର୍ଲସ୍ ଗ୍ରାଣ୍ଟ ଓ ରବର୍ଟ ଉଇଲିୟମ୍ ଫୋର୍ଟଙ୍କ ପରାମର୍ଶରେ କମ୍ପାନୀ ସରକାର ପ୍ରବର୍ତ୍ତିତ ଶିକ୍ଷାସନନ୍ଦ, ୧୮୧୩, ୧୮୨୩ ମସିହାରେ ନବୀକୃତ ହୋଇଛି । ସରକାର Committee of Public Instruction ଗଠଣ ମାଧ୍ୟମରେ ବିଭିନ୍ନ ଭାରତୀୟ ଭାଷାର ବହି ଛାପିବାପାଇଁ ଅର୍ଥ ଯୋଗାଇ ଦେଇଛନ୍ତି ।[୧୯] ଇଂରେଜ ଶିକ୍ଷା ବ୍ୟବସ୍ଥା ଭାରତକୁ ଅବଶ୍ୟ ପଶ୍ଚିମାୟିତ କରିଛି । ଭାରତ ବଦଳିଛି, ତତ୍ସଙ୍ଗେ ସଙ୍ଗେ ଏକ ନବ-ଅଭିଜାତ ନୌକରଶାହ ଗୋଷ୍ଠୀ ଜନ୍ମନେଇଛି । ଏବଂ, ସେହିମାନେ ହିଁ ଆଧୁନିକ ଭାରତର ସ୍ୱପ୍ନ ଓ ସମ୍ଭାବନାର ବିଶ୍ୱକର୍ମା ହୋଇଛନ୍ତି । ତେଣୁ ନିଜର ସ୍ୱପ୍ନମାନଙ୍କୁ ଗଣ୍ଠିଧନକରି ବଙ୍ଗାଳୀମାନେ ଓଡ଼ିଶାର ବିଭିନ୍ନ ଅଞ୍ଚଳ ଖେଦିଯାଇଛନ୍ତି । ସେମାନଙ୍କୁ ନିରପତ୍ତା ଦେଇଛି ଏକ ଅମିତ ପରାକ୍ରମଶାଳୀ ପ୍ରଶାସନ । ସେହି ଆଳରେ ପ୍ରଶାସନ ପ୍ରଦତ୍ତ ସୁବିଧା ଓ ସୁଖକୁ ଭୋଗକରିବାପାଇଁ ସେମାନେ ସାମାନ୍ୟ ସୁଯୋଗର ହାତଛଡ଼ା କରିନାହାନ୍ତି । ଅନ୍ୟ ଭୂମିର ମଣିଷମାନଙ୍କୁ ସେମାନେ ନ୍ୟୂନ ଆଖିରେ ଦେଖିଛନ୍ତି । କର୍ତ୍ତୃତ୍ୱବିସ୍ତାରୀ ମାନସିକତା ସେମାନଙ୍କୁ ଏତେ ମାତ୍ରାରେ ରୁଗ୍ଣ କରିଦେଇଛି ଯେ, ଆପଣାର ପଡ଼ୋଶୀମାନଙ୍କର ଭାଷା, ସାହିତ୍ୟ, ଧର୍ମ ଓ ସଂସ୍କୃତିକୁ ମଧ୍ୟ ସେମାନେ ଘୃଣା କରିଛନ୍ତି । ଏପରିକି, ସୁଦୂର ଅତୀତରେ, ସେମାନଙ୍କର ବର୍ତ୍ତମାନ ଅଧ୍ୟୁଷିତ ଉର୍ବର ଭୂମି ଯେ ଏକଦା ଏହି ବର୍ବରମାନଙ୍କର ପୂର୍ବପୁରୁଷମାନଙ୍କର ଶାସନାଧୀନ ଥିଲା; ତେଣୁ ସେହି ନ୍ୟାୟରେ ସେମାନଙ୍କୁ ସୁଶିକ୍ଷିତ, ଭଦ୍ର ଓ ସଂସ୍କୃତିବନ୍ତ କରିବା ସେମାନଙ୍କ ପ୍ରଧାନ ଦାୟିତ୍ୱ ପରି ଏକ ମହାଭ୍ରମ-ବ୍ୟାଧିରେ ସଂକ୍ରମିତ ହୋଇଛନ୍ତି ।

ଏହି ଭାବାଦର୍ଶର ସୂଚନା ଗୌରୀଶଙ୍କର ରାୟ ଏବଂ ଗୋବିନ୍ଦ ଚନ୍ଦ୍ର ପଟ୍ଟନାୟକଙ୍କ ସମ୍ପାଦପତ୍ରରେ ସଂଯୋଜିତ ମନ୍ତବ୍ୟରେ ସୁସ୍ପଷ୍ଟ । ୧୮୭୦, ମାର୍ଚ୍ଚ ମାସରେ ଉତ୍କଳୋଲ୍ଲାସିନୀ ସଭାର ବାର୍ଷିକ ବିବରଣୀ ପ୍ରଦାନ କାଳରେ ଗୌରୀଶଙ୍କର ବଙ୍ଗାଳୀମାନଙ୍କ 'ଓଡ଼ିଆମାନଙ୍କୁ ସେମାନଙ୍କ ପୂର୍ବପୁରୁଷ ଦୀର୍ଘ ୭୦୦ ବର୍ଷ ଧରି ଶାସନ କରୁଥିଲେ ଏବଂ ଶ୍ରୀ ଚୈତନ୍ୟ ଓଡ଼ିଶାର ଭାଷା, ଧର୍ମ ଓ ସଂସ୍କୃତିର ଯଥାର୍ଥ ସଂସ୍ଥାପକ' ମନ୍ତବ୍ୟର ବିରୋଧ କରିଛନ୍ତି ଏବଂ ଓଡ଼ିଆ ଭାଷାର ପ୍ରାଚୀନତା ଓ ରାଜନୀତିକ ଇତିହାସର ପ୍ରମାଣପାଇଁ ଚୈତନ୍ୟଙ୍କ ପୂର୍ବବର୍ତ୍ତୀ ସାରଳା ଓ ଗଙ୍ଗବଂଶୀ ରାଜାମାନଙ୍କର ଉଦାହରଣ ଦେଇଛନ୍ତି । (ଉତ୍କଳଦୀପିକା, ୩୦ ଏପ୍ରିଲ. ୧୮୭୦) ଦୀନନାଥ ବନ୍ଦ୍ୟୋପାଧ୍ୟାୟ

ଓଡ଼ିଶାର ପ୍ରାଚୀନତା ଖୋଜି ଖୋଜି ଏହା ପୂର୍ବକାଳରେ 'କିଷ୍କିନ୍ଧ୍ୟା ଦେଶ' ମନ୍ତବ୍ୟ ଓଡ଼ିଆମାନଙ୍କୁ ସକଳ କ୍ଷେତ୍ରରେ ନ୍ୟୂନ କରିବା ମାନସିକତା କହିଛନ୍ତି । (ଦୀପିକା, ୨୭ ମାର୍ଚ୍ଚ ୧୮୭୩) ବାଲେଶ୍ୱର ସମ୍ବାଦବାହିକାରେ 'କାଳସ୍ୟ କୁଟୀଳା ଗତି' ଶୀର୍ଷକ ଆଲୋଚନାରେ, ଜଣେ ପ୍ରକୃତ ଓଡ଼ିଆ ଛଦ୍ମନାମୀ ସମକାଳୀନ ଓଡ଼ିଆମାନଙ୍କୁ ଜାଗ୍ରତ କରିବାପାଇଁ, ସେମାନଙ୍କ ସମୃଦ୍ଧ ସାହିତ୍ୟର ଉଦାହରଣ ମାଧ୍ୟମରେ, ଏକଦା ସେମାନଙ୍କର ପୂର୍ବପୁରୁଷ ବଙ୍ଗ ସୁବାଦାରଙ୍କ ଔଦ୍ଧତ୍ୟକୁ କିପରି ପରାହତ କରିଥିଲେ ତାହା ବ୍ୟାଖ୍ୟା କରିଛନ୍ତି । (ବାଲେଶ୍ୱର ସମ୍ବାଦବାହିକା, ୧ଅଗଷ୍ଟ ୧୮୭୨) ଅନ୍ୟ ଏକ ଆଲୋଚନାରେ 'ଦିନେ ଓଡ଼ିଶାର ସୀମା ବଙ୍ଗଳାର ତ୍ରିବେଣୀରୁ କର୍ଣ୍ଣାଟ ପର୍ଯ୍ୟନ୍ତ ପରିବ୍ୟାପ୍ତ' ଥିଲା ବୋଲି ସ୍ପଷ୍ଟ କରିଦେଇଛନ୍ତି । (ବାଲେଶ୍ୱର ସମ୍ବାଦବାହିକା, ୧୬ ଅଗଷ୍ଟ, ୧୮୭୮) ହଣ୍ଟରଙ୍କ ଓଡ଼ିଶା ଇତିହାସର ଆଲୋଚନା ପ୍ରସଙ୍ଗରେ ଆଲୋଚକ ଲେଖକଙ୍କ ପ୍ରଦତ୍ତ ଓଡ଼ିଶାର ରାଜନୀତିକ ସୀମା 'ଭ୍ରମାତ୍ମକ ତଥ୍ୟ ନିର୍ଭର' ଏବଂ 'ସେ ରାଜା ପୁଣି ବିଦେଶୀ ହୋଇଥିବାରୁ ସାହସ କରି ସେମାନଙ୍କ ସଙ୍ଗେ ମିଶି, ବିଶ୍ୱାସ କରି, ମନକଥା ଫେଡ଼ି କହିବା' ସମ୍ଭବ ନୁହେଁ ବୋଲି ଉଲ୍ଲେଖ କରିଛନ୍ତି । (ଉତ୍କଳ ଦର୍ପଣ, ପ୍ରଥମ ବର୍ଷ, ସପ୍ତମ ସଂଖ୍ୟା) ଇତିହାସ ସଂରଚନା ଯେ କ୍ଷମତା ସୃଷ୍ଟ, ଉପର୍ଯ୍ୟୁକ୍ତ ମନ୍ତବ୍ୟରେ ତାହା ସୁସ୍ପଷ୍ଟ । ତେଣୁ ବୈଦେଶିକୀ ବିକୃତାୟନରୁ ଓଡ଼ିଶାର ଇତିହାସକୁ ମୁକ୍ତ କରି ଆପାତଃ ସତ୍ୟନିଷ୍ଠ ଓ ପ୍ରାମାଣିକ ଇତିହାସ ଲେଖିବାପାଇଁ ଓଡ଼ିଆମାନେ ଉଦ୍ୟମ କରିଛନ୍ତି । ପ୍ୟାରୀମୋହନଙ୍କ ଓଡ଼ିଶାର ଇତିହାସ, ଏହି ଇତିହାସବୋଧର ଅନ୍ୟତମ ଜୀବନ୍ତ ପ୍ରତୀକ ।

ପଡ଼ୋଶୀ ବଙ୍ଗାଳୀମାନଙ୍କର ଓଡ଼ିଶା ସମ୍ପର୍କରେ ଅନୁରୂପ ମାନସିକତାକୁ ଅମୂଳକ କୁହାଯାଇ ନ ପାରେ । କାରଣ ସେମାନଙ୍କ ଅଧିକାରରେ ଓଡ଼ିଶାର ଅଧିକାଂଶ ଜମିଦାରୀ ଏବଂ ପ୍ରାୟ ସମସ୍ତ ସରକାରୀ ଦପ୍ତର । ତେଣୁ ସେମାନେ ହିଁ ଏହି ଖଣ୍ଡର ଈଶ୍ୱର । ଦେଶୀୟ ପିଲାମାନଙ୍କ ପଢ଼ିବାପାଇଁ ବିଦ୍ୟାଳୟମାନ ଖୋଲାଯାଇଛି । ମାତ୍ର ସେଠାରେ ଅଧ୍ୟାୟୀମାନଙ୍କର ଅଭାବ । ସହରରେ ଖୋଲାଯାଇଥିବା ବିଦ୍ୟାଳୟଗୁଡ଼ିକରେ ଅଧିକ ସଂଖ୍ୟକ ଅଧ୍ୟାୟୀ ବଙ୍ଗାଳୀ । ତେଣୁ ବଙ୍ଗାଳୀ ଛାତ୍ରମାନଙ୍କପାଇଁ ପାଠ୍ୟପୁସ୍ତକ ବଙ୍ଗଳା ଭାଷାରେ ରଚିତ ହେବା ଆବଶ୍ୟକ । ଓଡ଼ିଆ ଭାଷାରେ ବହି ଖୋଜିଲା ବେଳେ, ଏହାର ଘୋର ଅଭାବ ଦେଖାଯାଇଛି । ତେଣୁ ବଙ୍ଗଳା ବହିଗୁଡ଼ିକ ଓଡ଼ିଆ ଭାଷାରେ ଅନୂଦିତ ହୋଇଛି । ପ୍ରତ୍ୟକ୍ଷ ଓ ପରୋକ୍ଷ ଭାବରେ ଓଡ଼ିଶାର ବିଦ୍ୟାଳୟ ସମୂହରେ ବଙ୍ଗଳା ଭାଷା ଓ ସାହିତ୍ୟର ରାଜତ୍ୱ । ଓଡ଼ିଶା ନାମରେ କଥିତ ରାଜନୀତିକ ଆୟତନର ଏପରି ଏକ ଦୁଃସ୍ଥିତିରେ ଶିକ୍ଷିତ ବଙ୍ଗାଳୀମାନେ ବିଦେଶୀ ପ୍ରଶାସନ ପାଖରେ ଦାବି କରିଛନ୍ତି–ଓଡ଼ିଶାର ଉନ୍ନତି କରିବାକୁ ହେଲେ ଓଡ଼ିଶାର ବିଦ୍ୟାଳୟ ଓ ପ୍ରାଶାସନିକ ଦପ୍ତରରେ ଓଡ଼ିଆ ଭାଷାର ପ୍ରବର୍ତ୍ତନ ଓ ଜମିଜମାର ଚିରସ୍ଥାୟୀ ବନ୍ଦୋବସ୍ତ ଏକାନ୍ତ ଆବଶ୍ୟକ । ଅର୍ଥାତ୍ ସେମାନେ ଚିରସ୍ଥାୟୀ ବନ୍ଦୋବସ୍ତ ମାଧ୍ୟମରେ ଓଡ଼ିଶାର ଭୂସମ୍ପତ୍ତି ଓ ଭାଷା ମାଧ୍ୟମରେ ଓଡ଼ିଆ ଭାଷାର ଅସ୍ମିତା ବିଲୋପନପାଇଁ ମସୁଧା କରିଛନ୍ତି । ରାଜେନ୍ଦ୍ରଲାଲ ମିତ୍ରଙ୍କ ଡ଼ିବେଟିଂ କ୍ଲବ୍‌ର 'ଉତ୍କଳ ଭାଷାର ଉନ୍ନତି', ଉମାଚରଣ ହାଲ୍‌ଦାରଙ୍କ 'ବଙ୍ଗଳା ଅକ୍ଷରରେ ଓଡ଼ିଆ ଲେଖିବାର ଦାବି' ଏବଂ କାନ୍ତିଚନ୍ଦ୍ର ଭଟ୍ଟାଚାର୍ଯ୍ୟଙ୍କ 'ଉଡ଼ିୟା ସ୍ୱତନ୍ତ୍ର ଭାଷା ନହେ' ପୁସ୍ତିକା, ଶିକ୍ଷିତ ବଙ୍ଗାଳୀମାନଙ୍କର ଓଡ଼ିଆ ଭାଷା ବିରୋଧୀ ମାନସିକତାର ଉଦାହରଣ ।[୨୦]

କାଳୀପଦ ବନ୍ଦୋପାଧ୍ୟାୟଙ୍କ ଉଦ୍ୟମରେ 'ଉତ୍କଳ ହିତୈଷିଣୀ' ପତ୍ରିକା ବି ପ୍ରକାଶ ପାଇଛି । ମାତ୍ର ବଙ୍ଗାଳୀମାନଙ୍କର ଓଡ଼ିଆ ଭାଷା ପ୍ରତି ଘୃଣା ଭାବ ଅମଳ ଦେଇ ନାହିଁ । କଲିକତାରୁ ନିୟନ୍ତ୍ରିତ 'ସ୍କୁଲ୍ ବୁକ୍‌ସ୍ ସୋସାଇଟି'ର କାର୍ଯ୍ୟଧାରା ସମ୍ପର୍କରେ ଓଡ଼ିଆମାନେ ସଚେତନ ହୋଇଛନ୍ତି ।[୨୧] ସରକାରଙ୍କ ସିଦ୍ଧାନ୍ତର ପ୍ରତିବାଦ ବି କରିଛନ୍ତି । ଏବଂ, ୧୮୭୩ ମସିହାରେ ନନ୍ଦକିଶୋର ଦାସଙ୍କ ଶିକ୍ଷା ବିଭାଗର ଜଏଣ୍ଟ ଇନ୍‌ସ୍‌ପେକ୍ଟର ପଦରେ ଯୋଗଦାନ, କେମ୍ପବେଲ୍, ରେଭେନ୍ସା, ଜନ୍ ବୀମ୍‌ସ୍‌ଙ୍କ ହସ୍ତକ୍ଷେପ ଓ ଭାଷା ସଂକ୍ରାନ୍ତ ଚର୍ଚ୍ଚା, ଓଡ଼ିଆ ଭାଷାକୁ ପଡ଼ୋଶୀ କର୍ତ୍ତୃତ୍ୱରୁ ମୁକ୍ତକରିଛି । ପ୍ୟାରୀମୋହନ ଆଚାର୍ଯ୍ୟଙ୍କ 'ଓଡ଼ିଶା ଇତିହାସ' ପଡ଼ୋଶୀଙ୍କ କର୍ତ୍ତୃତ୍ୱବିସ୍ତାରୀ ମାନସିକତାର ଏକ ପ୍ରତିବାଦ । ଓଡ଼ିଶାରେ ପାଠ୍ୟପୁସ୍ତକର ଅଭାବ ପୂରଣ ଅବଶ୍ୟ ଏହି ଇତିହାସ ବହି ରଚନାର ଉଦ୍ଦେଶ୍ୟ । ମାତ୍ର ଏହାକୁ ଏକ ସାଧାରଣ ପାଠ୍ୟପୁସ୍ତକ ପରିବର୍ତ୍ତେ, ଓଡ଼ିଆ ଜାତିର ଭାଷା, ସାହିତ୍ୟ, ସାଂସ୍କୃତିକ ଓ ରାଜନୀତିକ ଐତିହ୍ୟର ଇସ୍ତାହାର ଭାବରେ ଗ୍ରହଣ କରିବା ଅଧିକ ସମୀଚୀନ ।

ପ୍ୟାରୀମୋହନଙ୍କ ଜୀବନୀ ସମ୍ପର୍କରେ ଉପଲବ୍ଧ କେତେକ ତଥ୍ୟକୁ ଭିତ୍ତି କରି ଅନେକ ସମୟରେ ଏକ ଧାରଣା ସୃଷ୍ଟି ହୁଏ ଯେ, ତାଙ୍କ ପୂର୍ବପୁରୁଷ ବଙ୍ଗାଳୀ ଥିବାରୁ ବଙ୍ଗଳା ଭାଷା ଓ ସଂସ୍କୃତି ପ୍ରତି ତାଙ୍କର ଦୁର୍ବଳତା ଥିଲା । ଏବଂ, ମଧ୍ୟଯୁଗୀୟ ଓଡ଼ିଆ କାବ୍ୟ ସାହିତ୍ୟର ସେ ଥିଲେ ଜଣେ କଠୋର ସମାଲୋଚକ । ଏହି ଧାରଣାକୁ ସମ୍ପୂର୍ଣ୍ଣ ଅସତ୍ୟ ବୋଲି ମୁଁ କହୁନାହିଁ । ମାତ୍ର ଓଡ଼ିଆ ଭାଷା ଓ ସାହିତ୍ୟ, ଓଡ଼ିଶାର ଐତିହ୍ୟ ପ୍ରତି ସେ କେତେ ମାତ୍ରାରେ ଅନୁରକ୍ତ ଥିଲେ ଏବଂ ତାଙ୍କର ଗଦ୍ୟ ଶୈଳୀ କିପରି ସମକାଳୀନ ମାନଙ୍କଠାରୁ ସ୍ୱତନ୍ତ୍ର, ତାଙ୍କ ସମ୍ପାଦିତ 'ଉତ୍କଳପୁତ୍ର' ପାକ୍ଷିକ ସମ୍ବାଦପତ୍ରରେ ପ୍ରକାଶିତ ନିମ୍ନୋକ୍ତ ତିନିଗୋଟି ଉଦ୍ଧୃତିକୁ ଏହାର ଉଦାହରଣ ଭାବରେ ଗ୍ରହଣ କରାଯାଇପାରେ ।

**(କ) ଉତ୍କଳପୁତ୍ର/ ପାକ୍ଷିକ ସମ୍ବାଦପତ୍ର ୧୬, ମଇ ୧୮୭୩/ଭାଗ ୧/ ସଂଖ୍ୟା ୩**

ବିଗତ ସପ୍ତାହରେ ଅମୃତ ବଜାର ପତ୍ରିକାର 'ଉଡ଼ିଆ' ଜାତି ଶିରୋନାମାରେ ଏକ ପ୍ରେରିତ ପତ୍ର ପାଠ କରି ଅତ୍ୟନ୍ତ ଚମତ୍କୃତ ହୋଇଅଛୁ । ପୁନର୍ବାର ଶ୍ରୀ ଦୀନନାଥ ବନ୍ଦୋପାଧ୍ୟାୟ 'ବିଳିବିଳେଇ' ଉଠିଅଛନ୍ତି ଯେ, ଉତ୍କଳୀୟ ବ୍ରାହ୍ମଣମାନେ ନିର୍ବାସିତ, ମହାନ୍ତିମାନେ ଅନାର୍ଯ୍ୟ ଓ ବିଗତ ମାର୍ଚ୍ଚ ମାସ ତା୨୨ରିଖ ଦୀପିକା ପତ୍ରପ୍ରେରକ ସଂସ୍କୃତ ପୁରାଣାନଭିଜ୍ଞ । ସେ ଯେ କାହିଁକି ଉତ୍କଳୀୟଙ୍କର ଆର୍ଯ୍ୟତ୍ୱ ଓ ଅନାର୍ଯ୍ୟତ୍ୱ ଘେନି ଏତେ ବ୍ୟସ୍ତ ହେଉଅଛନ୍ତି, ଆମ୍ଭେମାନେ କିଛି ବୁଝି ପାରୁ ନାହୁଁ । ଯଦ୍ୟପିକି ବାବୁ ମହାଶୟ ସ୍ୱୀୟ 'ଭାଷାତତ୍ତ୍ୱ' ଶାସ୍ତ୍ରର ପରିଚୟ ଦେବାକୁ ମନସ୍ଥ କରନ୍ତି, ତେବେ ତାଙ୍କର ଏ ଉଦ୍ୟମରେ ନିଶ୍ଚୟ ଯେ ମାନସ ସାଧିତ ହେବାର କଷ୍ଟସାଧ, ପୁଣି ଯଶଲାଭ ଇଚ୍ଛା ଥିଲେ, ଏ ନିନ୍ଦନୀୟ ଉପାୟ ଦ୍ୱାରା କି ସେ ବାଞ୍ଛା ସଫଳ ହେବ? ପ୍ରକୃତ ସତ୍ୟଜିଜ୍ଞାସୁ ହୋଇଥିଲେ ସେ ଭିନ୍ନ କଥା । କିନ୍ତୁ ଯେଉଁ ଅସମ୍ଭବ ଓ ବିପରୀତ ବ୍ୟାପ୍ତିରେ ଉପାଧ୍ୟାୟ ମହାଶୟ ଉପସ୍ଥିତ ହେଉଛନ୍ତି, ତାହାଦ୍ୱାରା ତ ଏ ମହତ ବାସନାର ପରିଚୟ ମିଳୁ ନାହିଁ । ପୁନଶ୍ଚ ପାଠ କଲୁ, ଉପସଂହାର ସ୍ଥଳେ ବାବୁ ସାହେବ ଆଚାର୍ଯ୍ୟପଣିଆ ସୁଦ୍ଧା ପ୍ରକାଶ କରିଅଛନ୍ତି । ବାହାବା ।

ବାବୁଙ୍କର ଉକ୍ତ ବିଷୟରେ ମନର ସ୍ଥୈର୍ଯ୍ୟ ଜାଣି ନ ପାରିଲାର ଉପଯୁକ୍ତ ପ୍ରମାଣ ଦର୍ଶାଇ ବାବୁଙ୍କର ମତ ଖଣ୍ଡନ କରିବାର ସାହସ ମିଳିଲା ନାହିଁ ।

(ଖ) ଉତ୍କଳ ପୁସ୍ତକ

ବଙ୍ଗଳା ଉଠିଗଲା, ଭଲ ହେଲା । ଭଲ ହେଲା ସତ, ମାତ୍ର ଓଡ଼ିୟାର ଭାବୀ ଉନ୍ନତି ଓ ସ୍ଥାୟିତ୍ୱ ସାଧନରେ ଯେ ଉପାୟ ଅବଲମ୍ବନ କରିବାର ଉଚିତ୍ (ଓ ସେ ଉପାୟରେ ଇଷ୍ଟସିଦ୍ଧି ହେବାର ସମ୍ଭବନା) ତାହା ଯାହା ଗବର୍ଣ୍ଣମେଣ୍ଟ କରୁ ନାହାନ୍ତି, ଏଥିରେ ଆମ୍ଭେମାନେ ତାଙ୍କୁ ପ୍ରଶଂସା କରି ନ ପାରୁ । ବରଂ ନ କଲେ ଗବର୍ଣ୍ଣମେଣ୍ଟ ଦୋଷୀ ହେବେ । ଯେ ପୁରାତନ ପୁସ୍ତକମାନ ଅଛି, ତହିଁର ଆମ୍ଭମାନଙ୍କର ଆସ୍ଥା ନାହିଁ । ଉପେନ୍ଦ୍ରଙ୍କର ଯମକ, ଅଭିମନ୍ୟୁଙ୍କର ରାସକ୍ରୀଡ଼ା, ଦୀନକୃଷ୍ଣଙ୍କର ଅନୁପ୍ରାସ ଆମ୍ଭମାନଙ୍କ ରୁଚିକୁ ଭଲ ଲାଗୁ ନାହିଁ । ବସ୍ତୁତଃ ଏପରି ରସାତ୍ମକ ପୁସ୍ତକମାନ ପାଠ୍ୟପୁସ୍ତକ କରି ସୁକୁମାରମତି ବାଳକମାନଙ୍କ ହସ୍ତରେ ଦେବାକୁ ଆମ୍ଭମାନଙ୍କୁ ଲଜ୍ଜା ହେଉଅଛି । (ବର୍ତ୍ତମାନ ସରଳ ପଦ୍ୟ ଓ ପ୍ରାସ୍ତ ଗଦ୍ୟପୁସ୍ତକ ନିତାନ୍ତ ଆବଶ୍ୟକ) । XXX ଏମନ୍ତ ଅବସ୍ଥାରେ ଆମ୍ଭେମାନେ ଏମନ୍ତ କହିପାରୁ ଯେ, କାହିଁକି ଓଡ଼ିଶାରେ ଭଲ ଭଲ ପାଠ୍ୟପୁସ୍ତକ ବାହାରୁ ନାହିଁ । XXX ଆମ୍ଭେମାନେ ଏମନ୍ତ କହୁନାହୁଁ ଯେ, ଗଭର୍ଣ୍ଣମେଣ୍ଟ ଓଡ଼ିଶାକୁ ବଡ଼ କରି ଦିଅନ୍ତୁ ବା ସୁବିଧା ହେଲେ ଏକାବେଳକେ ବଡ଼ ବଡ଼ ଲେଖକ ବାହାରି ପଡ଼ିବେ । ତେବେ ଯେଉଁ ଯେଉଁ ଉପକରଣ ଇତସ୍ତତ ରହିଅଛି, ସେ ସବୁକୁ ଏକତ୍ର କରି ଆଣିଲେ ଯେ ଏହି ଉତ୍କଳ ଖଣ୍ଡରେ ଏକ ସମୟରେ ବିଦ୍ୟାସାଗର ଓ ଅକ୍ଷୟକୁମାରଙ୍କ ପରି ଲେଖକ ବାହାରିବେ ଏହା ଅସମ୍ଭବ ନୁହେଁ । XXX ଯାହା ମନୁଷ୍ୟ କରିଅଛି, ତାହା ଅବଶ୍ୟ ମନୁଷ୍ୟ କରି ପାରିବ । ଦିନକେ ନ ହେବ, ସହସ୍ର ଦିନେ ହେବ । ସହସ୍ର ଦିନେ ନ ହୁଏ, ସହସ୍ର ବର୍ଷରେ ହେବ । ଯତ୍ନ କର, ଅବଶ୍ୟ ହେବ ।

(ଗ) ଗଞ୍ଜାମ, ସମ୍ୱଲପୁର

ସମ୍ୱଲପୁର ଓ ଗଞ୍ଜାମ ଯେବେ କଟକ ସହ ମିଶିଯାଏ, ତେବେ ସମାଲୋଚିତ ଏ ଅଭାବ ଅବଶ୍ୟ ଦୂର ହେବ । ସମ୍ୱଲପୁର, ଗଞ୍ଜାମ ଓଡ଼ିଶାର ଅଂଶ ମାତ୍ର ଓ ସେ ଦୁହିଁଙ୍କୁ ଧରିଲେ ଓଡ଼ିଶା ବଙ୍ଗଳାର ଅର୍ଦ୍ଧାଂଶରୁ ଅଧିକ ହେବ । କି ଭାଷା, କି ଆଚାର ବ୍ୟବହାର, କି ଧର୍ମ ସବୁ ବିଷୟରେ ଉକ୍ତ ଦୁଇ ଜିଲ୍ଲାର କଟକ ସଙ୍ଗେ ଯେତେ ଐକ୍ୟ ପ୍ରାୟ ଅନ୍ୟ କାହାରି ସଙ୍ଗେ ନାହିଁ । XXX ସମ୍ୱଲପୁରର ଅବସ୍ଥା ତହୁଁ ଶୋଚନୀୟ । ଯେଉଁ ଶିକ୍ଷିତମାନେ ଯାଇ ସେଠାରେ ରହିଲେ ଆପଣା ଯଶଃଲୋପ ଭୟରେ ହେଉ ଅଥବା ଅନ୍ୟ କୌଣସି କାରଣରୁ ହେଉ କଟକ ସଙ୍ଗେ ସମ୍ୱଲପୁରର ଯେପରି ସମ୍ପର୍କ ନ ରୁହେ, ତହିଁର ଚେଷ୍ଟା କରୁ ଅଛନ୍ତି ।"

ଓଡ଼ିଶା ସଂପର୍କରେ ପ୍ୟାରୀମୋହନଙ୍କ ଉପର୍ଯ୍ୟୁକ୍ତ ଦୃଷ୍ଟିଭଙ୍ଗୀ ହିଁ, ସମ୍ଭବତଃ ତାଙ୍କ ଉପରେ ପ୍ରତିଶୋଧ ନେବାପାଇଁ ସମକାଳୀନ ବଙ୍ଗୀୟମାନଙ୍କୁ ପ୍ରଚୋଦିତ କରିଥିଲା ଏବଂ କାଳୀପଦ ବାବୁଙ୍କର *ଓଡ଼ିଶାର ଇତିହାସ* ବହି ବିରୋଧରେ ସକଳ ପ୍ରକାର ଅଭିଯୋଗ ଥିଲା ଏହାର ପରିପ୍ରକାଶ । କେବଳ ସେତିକି ନୁହେଁ, ଏହାର ଅନ୍ୟତମ କାରଣ, ପ୍ୟାରୀମୋହନ ଥିଲେ ବଙ୍ଗାଳୀମାନଙ୍କ

ସ୍ୱାର୍ଥପର ମାନସିକତାର ଅନ୍ୟତମ କଟୁ ସମାଲୋଚକ । ଓଡ଼ିଶା ପାଟ୍ରିୟଟ୍‌ରେ ପ୍ରକାଶିତ ଓଡ଼ିଶା ବିରୋଧୀ ମାନସିକତାକୁ ସେ କିପରି ଭାବେ ସମାଲୋଚନା କରିଥିଲେ, ପ୍ୟାରୀମୋହନଙ୍କ ସମ୍ପାଦିତ ଉତ୍କଳପୁତ୍ରର ଏକ ସମ୍ବାଦରେ ତାହା ସୁସ୍ପଷ୍ଟ ।

**ଉତ୍କଳ ହିତୈଷିଣୀ :**

ଉତ୍କଳ ହିତୈଷିଣୀ ଆମ୍ଭମାନଙ୍କ ବିରୁଦ୍ଧରେ ବାକ୍ ଖଡ୍ଗଧାରଣ କରି ଅଛନ୍ତି । ଆମ୍ଭମାନଙ୍କର ଦୋଷମାନଙ୍କ ମଧ୍ୟରେ ଏତିକି ଯେ, କାଳୀବାବୁ ବିଲାତ ଯିବାର ଅସ୍ୱୀକୃତ ହେବାର "ମିରର"ରେ ପାଠକରି ତାଙ୍କୁ ପ୍ରଶ୍ନଛଳରେ କହିଥିଲୁ ଯେ, ବାବୁ କଳାପାଣି ଦେଖି ଡରିଲେ କି ? ଓ କେତେକେ ବଙ୍ଗୀୟ ଭ୍ରାତାଙ୍କ ସସ୍ୱାର୍ଥପରତା ଉପରେ କଟାକ୍ଷ କରି ତାଙ୍କମାନଙ୍କୁ ଗୋଟିକେତେ ନରମଗରମରେ କଥା ଶୁଣାଇଥିଲୁ । ଏଥିରେ ଆମ୍ଭମାନଙ୍କୁ "ଅକିଞ୍ଚିତକର ବିଷୟ ଘେନି ବୃଥାରେ ଭ୍ରାତୃବର୍ଗଙ୍କୁ (?) ନିରର୍ଥକ ଶିରପୀଡ଼ା ପ୍ରଦାନରେ ବ୍ରତୀ ହେବାର, ଦୁଗ୍ଧପୋଷ୍ୟ ବାଳକ ମୁଖନିଃସୃତ ପ୍ରଳାପପୂର୍ଣ୍ଣ ଆଳାପ କରଥିବାର", ଅନାବଶ୍ୟକୀୟ ବିଷୟରେ କାଗଜପୂର୍ଣ୍ଣ କରିଥିବାର ଓ ଆମ୍ଭମାନଙ୍କୁ ଖିଆଲୀ ବୋଲି କେତେକ ପ୍ରକାରେ ଧିକ୍କାର ବଚନ ପ୍ରୟୋଗ କରିଅଛନ୍ତି । ଆହୁରି ମଧ୍ୟ ସ୍ୱୟଂ କେତେକ ପ୍ରଳାପପୂର୍ଣ୍ଣ ଭାଷା ଉଚ୍ଚାରି ଅଛନ୍ତି, ତାହା ବୁଝଇବାକୁ ଆମ୍ଭମାନଙ୍କର ବିଦ୍ୟାବୁଦ୍ଧି ନାହିଁ । (ଉତ୍କଳପୁତ୍ର: ୧୫ ଅକ୍ଟୋବର, ୧୮୭୩)

## ଚାରି

ଉତ୍କଳ ଇତିହାସ ବହିର ଭୂମିକାକୁ ସତ୍ୟ ବୋଲି ଯଦି ଆମେ ଗ୍ରହଣକରିବା, ତାହାହେଲେ ଏହା ଲେଖିଲା ବେଳକୁ (୧୮୭୪) ପ୍ୟାରୀମୋହନଙ୍କ ବୟସ ମାତ୍ର ପଚିଶ । ଏହି ବହିର ପରିକଳ୍ପନା ନିଶ୍ଚିତ ଭାବରେ ଜଣେ ତରୁଣର ଦୁଃସାହସ । ଆତ୍ମପ୍ରତିଷ୍ଠାର ସ୍ୱପ୍ନ ଯେ ତାଙ୍କ ଭିତରେ କ୍ରିୟାଶୀଳ ଥିଲା, ଜୀବନରେ 'ଅସମ୍ଭବ' ଶବ୍ଦକୁ ଯେ ସେ ଗ୍ରହଣ କରି ପାରୁ ନ ଥିଲେ, ତାଙ୍କ ଲିଖିତ ଏହି ବାକ୍ୟ "ଯାହା ମନୁଷ୍ୟ କରିଅଛି, ତାହା ଅବଶ୍ୟ ମନୁଷ୍ୟ କରି ପାରିବ, ଦିନକେ ନ ହେବ, ସହସ୍ର ଦିନେ ହେବ । ସହସ୍ର ଦିନେ ନ ହୁଏ, ସହସ୍ର ବର୍ଷରେ ହେବ । ଯତ୍ନ କର, ଅବଶ୍ୟ ହେବ" ଏହାର ଉଦାହରଣ ।[୨୩] ଏହି 'ଅବଶ୍ୟ ହେବ' ଆତ୍ମବିଶ୍ୱାସର ପରିଣତି 'ଓଡ଼ିଶାର ଇତିହାସ' ।

'ଓଡ଼ିଶାର ଇତିହାସ' ଲେଖିବାପାଇଁ ପ୍ୟାରୀମୋହନ କେଉଁ କେଉଁ ଗ୍ରନ୍ଥ ଓ ନଥିପତ୍ରର ସାହାଯ୍ୟ ନେଇଥିଲେ, ଏହି ଆଲୋଚନାର ଆରମ୍ଭରେ ସେସମସ୍ତର ସୂଚନା ଦେଇଛି । ମାତ୍ର ତାଙ୍କର ବିଶେଷତା, ସେ ପୂର୍ବର ଗବେଷକ ଓ ଇତିହାସକାରମାନଙ୍କ ମନ୍ତବ୍ୟକୁ ଅନେକ କ୍ଷେତ୍ରରେ ଗ୍ରହଣ ନ କରି, ନିଜସ୍ୱ ମତକୁ ଯୁକ୍ତିର ସହ ଉପସ୍ଥାପନ କରିଛନ୍ତି । ବହିର ପରିଯୋଜନା କାଳରେ ଆଠଗୋଟି ବିଭାଗ ଓ ଅଧ୍ୟାୟରେ ଏହା ଶେଷ କରିବେ ବୋଲି ମନସ୍ଥ କରିଛନ୍ତି ଏବଂ ପ୍ରଥମରୁ ଅଷ୍ଟମ ଅଧ୍ୟାୟ ପର୍ଯ୍ୟନ୍ତ, ଯଥାକ୍ରମେ–ଓଡ଼ିଶାର ଭୂଗୋଳ, ଓଡ଼ିଶାର ଆଦିମ ଇତିହାସ, କେଶରୀବଂଶୀୟ ରାଜାଗଣ, ଗଙ୍ଗବଂଶୀୟ ରାଜାଗଣ, ଓଡ଼ିଶାର ସ୍ୱାଧୀନତା ଲୋପ, ମୁସଲମାନ ଶାସନ, ଇଂରାଜୀ ଶାସନ ବିଷୟରେ ଚର୍ଚ୍ଚା କରିଛନ୍ତି । ଛୋଟ ଉପସଂହାରଟିଏ ଲେଖିଛନ୍ତି ଏବଂ ସେ ଯେ

'ଇଷ୍ଟାବ୍ଲିସ୍‌ମେଣ୍ଟ ବିରୋଧୀ' ଓ 'ଏଙ୍ଗ୍ରି ୟଙ୍ଗ୍‌ମ୍ୟାନ୍' ଥିଲେ, ଉପସଂହାରରେ ତାହା ସ୍ପଷ୍ଟ ହୋଇଯାଇଛି । ବହିର ଆଠଗୋଟି ଅଧ୍ୟାୟରେ ପ୍ୟାରୀମୋହନଙ୍କ ଇତିହାସ ଚର୍ଚ୍ଚାର ମୌଳିକତା ସଂପର୍କରେ ସଂକ୍ଷେପରେ ଏତିକି ମାତ୍ର କୁହାଯାଇପାରେ ଯେ, ପ୍ରଥମ ଅଧ୍ୟାୟରେ ସେ ଓଡ଼ିଶାର ଭୂଗୋଳ ବିଷୟରେ କହିଲା ବେଳେ-ଏହାର ରାଜନୀତିକ ସୀମା, କ୍ଷେତ୍ରଫଳ, ନଦନଦୀ, ପାହାଡ଼ପର୍ବତ, ଖଣିଜସଂପଦ, ଜଳବାୟୁ, ଭୂତତ୍ତ୍ୱ ଓ ମଣିଷ ଏବଂ ଦ୍ୱିତୀୟ ଅଧ୍ୟାୟରେ ଏହାର ପ୍ରାଚୀନ ଇତିହାସ, ଅର୍ଥାତ୍ ଆଦିମ ଅଧିବାସୀମାନଙ୍କ ଜୀବନଯାତ୍ରାଠାରୁ ଆରମ୍ଭ କରି ପଞ୍ଚମ ଶତାବ୍ଦୀ ପର୍ଯ୍ୟନ୍ତ ରାଜନୀତି, ଧର୍ମ, ସମାଜ ବ୍ୟବସ୍ଥାର ଚିତ୍ର ଦେଇଛନ୍ତି । ଅତ୍ୟନ୍ତ ନିର୍ମୋହ ଭାବରେ ସେ କହିବାକୁ ଚାହିଁଛନ୍ତି ଯେ, ଖ୍ରୀ.ପୂ. ଦ୍ୱିତୀୟ ଠାରୁ ପଞ୍ଚମ ଶତାବ୍ଦୀ ପର୍ଯ୍ୟନ୍ତ ଓଡ଼ିଶାର ସ୍ପଷ୍ଟ ଇତିହାସ ମିଳେ ନାହିଁ । ପୁନଶ୍ଚ ସେ ମାଦଳାପାଞ୍ଜିକୁ କାଳ୍ପନିକ କହିବାକୁ ଦ୍ୱିଧା ମଣିନାହାନ୍ତି । ଓଡ଼ିଶାର ଆଦିମ ମଣିଷମାନଙ୍କ କଥା କହିଲା ବେଳେ ସେ ରାଜେନ୍ଦ୍ରଲାଲ ମିତ୍ରଙ୍କୁ ଗ୍ରହଣ କରିଛନ୍ତି, ମାତ୍ର କୌଣସି କାରଣରୁ ଶ୍ରୀ ମିତ୍ର ଓଡ଼ିଆମାନଙ୍କପାଇଁ ଯେଉଁ ଅପ୍ରୀତିକର ଓ ଅପମାନଜନକ ଶବ୍ଦଗୁଡ଼ିକ, ଯଥା: ବର୍ବର, ପାଲିଙ୍କିବାହକ, ବେହେରା ଇତ୍ୟାଦି ପ୍ରୟୋଗ କରିଥିଲେ, ସେ ତାହା ଗ୍ରହଣ କରିନାହାନ୍ତି । ମାତ୍ର ଉତ୍ରମାନେ ଅନାର୍ଯ୍ୟଗୋଷ୍ଠୀର ଲୋକ ଥିଲେ ବୋଲି ସ୍ପଷ୍ଟ ଶବ୍ଦରେ ଉଲ୍ଲେଖକରିଛନ୍ତି ଏବଂ ଅନ୍ୟ ବିଦେଶୀ ଐତିହାସିକମାନଙ୍କ ପରି ଏଠି ବଞ୍ଚିଥିବା ମଣିଷମାନଙ୍କ ଧର୍ମବିଶ୍ୱାସ; ସ୍ଥାପତ୍ୟ, ସଙ୍ଗୀତ, ନୃତ୍ୟ ପ୍ରତି ଅନୁରକ୍ତି; ସମରକୌଶଳ, ଦୁଃସାହସିକ ନୌଯାତ୍ରାର ଗାଥା ବର୍ଣ୍ଣନାକରିଛନ୍ତି ଏବଂ ଅନ୍ୟ ଐତିହାସିକମାନଙ୍କ ପରି ସେ ମଧ୍ୟ କହିଛନ୍ତି, ଏ ଭୂମିର ପ୍ରାଚୀନ ରାଜନୀତିକ ଇତିହାସ, ଧର୍ମ ବିଶ୍ୱାସ ଓ ଧର୍ମୀୟ ଗୋଷ୍ଠୀଗୁଡ଼ିକ ମଧ୍ୟରେ ସଂଘର୍ଷର ଇତିହାସ ।[୨୪]

ଓଡ଼ିଶାର ପ୍ରାଚୀନ ଇତିହାସ ଚର୍ଚ୍ଚାର ଏକ ପ୍ରଧାନ ଚରିତ୍ର ରକ୍ତବାହୁ, ତାହାର ଓଡ଼ିଶା ଅଧିକାର ଏବଂ ଯାବା ଉପଦ୍ୱୀପରେ କଳିଙ୍ଗମାନଙ୍କର ଉପସ୍ଥିତି । ହଣ୍ଟର ଯାବାରେ ଉପନିବେଶ ପ୍ରତିଷ୍ଠାକାରୀମାନଙ୍କୁ ଆୟୋନୀୟ ଗ୍ରୀକ୍ ଓ ଯବନ ଶବ୍ଦରୁ ଯାବାର ସୃଷ୍ଟି, ଗ୍ରୀକ୍‌ମାନଙ୍କଠାରୁ ଭାରତୀୟମାନେ ଶିଳ୍ପକାର୍ଯ୍ୟ ଶିଖିଥିବା ମନ୍ତବ୍ୟକୁ ସେ ବିରୋଧ କରିଛନ୍ତି, ଏବଂ ଗ୍ରୀକ୍ ଆଗମନ ପୂର୍ବରୁ ଭାରତୀୟମାନେ ସମୁଦ୍ରପୋତ ବ୍ୟବହାରରେ ନିପୁଣ ଥିଲେ; ତାମ୍ରଲିପ୍ତ, ଚିଲିକା, କଳିଙ୍ଗପତ୍ତନମ୍ ବନ୍ଦରଗୁଡ଼ିକ ତାହାର ଉଦାହରଣ ବୋଲି ସଯୌକ୍ତିକ ପ୍ରମାଣ କରିଛନ୍ତି ।[୨୫]

ରକ୍ତବାହୁକୁ ଗ୍ରୀକ୍‌ଦେଶାଗତ ଯବନ, ସମୁଦ୍ରପଥ ଦେଇ ଓଡ଼ିଶା ଆକ୍ରମଣ କରିଥିବା ପ୍ରସଙ୍ଗକୁ ଆଚାର୍ଯ୍ୟ ବିରୋଧ କରି ଲେଖିଛନ୍ତି–ବିଶେଷତଃ ଗ୍ରୀକ୍‌ଙ୍କର ଅର୍ଣ୍ଣବପୋତରେ ଚଢ଼ି ଯୁଦ୍ଧକରିବା ନିମନ୍ତେ ଭାରତବର୍ଷର ପୂର୍ବ ଅଞ୍ଚଳକୁ ଆସିଥିବାର ଅନୁମାନ ବିନା ଅନ୍ୟ କୌଣସି ପ୍ରମାଣ ନ ଥିବା ପ୍ରତ୍ୟକ୍ଷେ, ଆମ୍ଭମାନଙ୍କର ଅନୁମାନ କି ଯେ ବଳବତ୍ତର ସତ୍ୟାଶ୍ରୟୀ ନ ହେବ, ଆମ୍ଭେମାନେ ବୁଝିପାରୁ ନାହୁଁ । (ଆଚାର୍ଯ୍ୟ ୨୦୦୧/ ପୃ.୫୨)

ଷ୍ଟର୍ଲିଂଙ୍କ ଦୃଷ୍ଟିରେ ରକ୍ତବାହୁ, Red-Arm, ସେ କାଳର ଇରାନ୍, କାବୁଲ୍, ପାରସ୍ୟ, ଆଫଗାନିସ୍ଥାନ, ତାର୍ତ୍ତାର ଅର୍ଥାତ୍ ମଧ୍ୟପ୍ରାଚ୍ୟର ଜଣେ ଦୁଃସାହସୀ, ଯିଏ ୧୪୬ ବର୍ଷ ଧରି ଓଡ଼ିଶାରେ

ଶାସନ କରିଛି ଏବଂ ଯାହାଙ୍କ ବର୍ବରୋଚିତ ଆକ୍ରମଣର ପ୍ରତିବାଦରେ ଉତ୍ୟକ୍ତ ସମୁଦ୍ର, ତାଙ୍କର ସମସ୍ତ ସୈନ୍ୟଙ୍କୁ ବାତ୍ୟା ଓ ଉତ୍ତାଳ ତରଙ୍ଗରେ ହତ୍ୟା କରିଛନ୍ତି ଏବଂ ଜନ୍ମ ନେଇଛି ଚିଲିକା ହ୍ରଦ– ତାହା କିମ୍ବଦନ୍ତୀ ମାତ୍ର । ଏହି ଘଟଣାକୁ ସେ 'Fierce dispute between Brahma and Buddha' ଏବଂ ଚିଲିକା ସମ୍ଭବତଃ ସମକାଳୀନ ଏକ ପ୍ରାକୃତିକ ବିପର୍ଯ୍ୟୟର ପରିଣତି ବୋଲି କହିଛନ୍ତି । ଆଚାର୍ଯ୍ୟ ରକ୍ତବାହୁକୁ ହିନ୍ଦୁବିରୋଧୀ ବୌଦ୍ଧଗୋଷ୍ଠୀର ନେତୃତ୍ୱ ନେଉଥିବା ଅନ୍ୟତମ ଯବନ ବୋଲି କହିବା, ଷ୍ଟର୍ଲିଂଙ୍କ ବିଚାରର ପ୍ରତିଧ୍ୱନି ।

ଓଡ଼ିଶା ଇତିହାସର ତୃତୀୟରୁ ଅଷ୍ଟମ ଅଧ୍ୟାୟ ପର୍ଯ୍ୟନ୍ତ ବର୍ଣ୍ଣିତ ବୃତ୍ତାନ୍ତ, ପୂର୍ବ ଐତିହାସିକ ମାନଙ୍କ ଅନୁମାନ ଅନୁରୂପ ଏବଂ ସେଗୁଡ଼ିକ ମୁଖ୍ୟତଃ ମାଦଳାପାଞ୍ଜି ପ୍ରଦତ୍ତ ବିବରଣୀର ପ୍ରତିଚ୍ଛାୟା । ଗଙ୍ଗବଂଶ ଓ ସୂର୍ଯ୍ୟବଂଶ ଯେ ଦୁଇଟି ସ୍ୱତନ୍ତ୍ର ବଂଶ, ସେ ତାହା ଅନୁମାନ କରିପାରି ନାହାନ୍ତି, ଯଦିଚ ମାଦଳା ପାଞ୍ଜିରେ ଏ ସମ୍ପର୍କରେ ସୂଚନା ରହିଛି । ହଣ୍ଟରଙ୍କ ଇତିହାସରେ ଅଧ୍ୟାୟୀକରଣ ଆଧାରରେ 'Orissa Under Foreign Governors' ଅଧ୍ୟାୟକୁ ଓଡ଼ିଶାର ସ୍ୱାଧୀନତା ଲୋପ, ମୁସଲମାନ ଶାସନ, ମରହଟ୍ଟା ଶାସନ ଶୀର୍ଷକ ତିନିଗୋଟି ଭାଗରେ ବିଭକ୍ତ କରିଛନ୍ତି ଏବଂ 'The English Settlers and Governors of Orissa' ଅଧ୍ୟାୟକୁ ଇଂରେଜ ଶାସନ ଶୀର୍ଷକରେ ଅଷ୍ଟମ ଅଧ୍ୟାୟରେ ଉଲ୍ଲେଖ କରିଛନ୍ତି । ଇଂରେଜମାନଙ୍କ ପରି ମରହଟ୍ଟା ଓ ମୁସଲମାନଙ୍କୁ ଲୁଣ୍ଠନକାରୀ, ଅତ୍ୟାଚାରୀ କହିଛନ୍ତି ଏବଂ ପ୍ରତ୍ୟେକ ରାଜବଂଶର ଶାସନକାଳରେ ଓଡ଼ିଶାର ଧର୍ମଜୀବନ, ମନ୍ଦିର ଗଢ଼ଣ କଳା. ଭାଷା ଓ ସାହିତ୍ୟ ସମ୍ପର୍କରେ ଚର୍ଚ୍ଚା କରିବାକୁ ବିସ୍ମୃତ ହୋଇନାହାନ୍ତି । ଏକ ଜାତିର ଇତିହାସ ଯେ କେବଳ ତା'ର ରାଜନୀତିକ ଇତିହାସ ନୁହେଁ; ଅଧିକନ୍ତୁ ଭାଷା, ସଂସ୍କୃତି, ସମାଜ ଜୀବନ, ସାହିତ୍ୟ, ଧର୍ମ ସହିତ ବହୁଭାବରେ ସୂତ୍ରାୟିତ, ତାହା ପ୍ରମାଣକରିବା ତାଙ୍କର ଆଦର୍ଶହୋଇଛି ।

ଓଡ଼ିଆ ଭାଷାରେ ଲିଖିତ ଏହି ପ୍ରଥମ ଇତିହାସ ବହି, ଆଜି ପଢ଼ିଲା ବେଳେ ମୋର ଯାହା ମନେହୁଏ, ଆଚାର୍ଯ୍ୟ ଜଣେ ଶୁଦ୍ଧବାଦୀ ମାନସିକତାର ମଣିଷ । ତାହା ହୋଇ ନ ଥିଲେ, ଉତ୍କଳର ଯେଉଁ ସ୍ଥାପତ୍ୟକୁ ଦେଖି ସମଗ୍ର ବିଶ୍ୱ ଅଭିଭୂତ ଓ ପ୍ରଶଂସାମୁଖର; ତାହାର ସେ ପ୍ରଶଂସା କରିଥିଲେ ସୁଦ୍ଧା, ମୂର୍ତ୍ତିଗୁଡ଼ିକର ନଗ୍ନତାକୁ ନିନ୍ଦା କରି ନ ଥା'ନ୍ତେ ।[୨୬] ପୁନଶ୍ଚ ଉପେନ୍ଦ୍ର, ଦୀନକୃଷ୍ଣ, ଅଭିମନ୍ୟୁ ଆଦି ମଧ୍ୟଯୁଗୀୟ କବିମାନଙ୍କ ପ୍ରତି ତାଙ୍କର ଏତେ ମାର୍ଜିତ ଦୃଷ୍ଟିଭଙ୍ଗୀ ନ ଥିଲା ।[୨୭] ସବୁଠାରୁ ଆଶ୍ଚର୍ଯ୍ୟର କଥା, ବହିର କୌଣସି ଗୋଟିଏ ସ୍ଥାନରେ ସାରଳାଦାସଙ୍କ ସମ୍ପର୍କରେ ସେ ଉଲ୍ଲେଖ କରି ନାହାନ୍ତି । ସମକାଳରେ, ସାରଳାଦାସ ନାମକ ଜଣେ ସ୍ରଷ୍ଟା ଓଡ଼ିଆ ସାହିତ୍ୟର ଇତିହାସରେ ଯେ ବିସ୍ମୟ ବ୍ୟକ୍ତିତ୍ୱ, ସମ୍ଭବତଃ, ତାହା ଚର୍ଚ୍ଚିତ ହୋଇ ନାହିଁ, ଏବଂ ତଥ୍ୟର ଅଭାବ, ସୀମିତ ଅଧ୍ୟୟନ ଅଥବା ଅନ୍ୟ କୌଣସି କାରଣରୁ ହେଉ, ପ୍ୟାରୀମୋହନଙ୍କ କପିଳେନ୍ଦ୍ର ଦେବଙ୍କ କାଳରୁ ଓଡ଼ିଶାର ପରବର୍ତ୍ତୀ କାଳୀନ ଇତିହାସ ଚର୍ଚ୍ଚା, ପ୍ରାଚୀନ ଯୁଗ ପରି ଏତେ ବ୍ୟାପକ ଓ ମନନଶୀଳ ହୋଇ ନାହିଁ । ଇଂରେଜ ଶାସନକାଳୀନ ଓଡ଼ିଶାର କଥା କହିଲା ବେଳେ, ପ୍ରଚୁର ଉପାଦାନ ଉପଲବ୍ଧ ସତ୍ତ୍ୱେ, ସେ ସମ୍ଭବତଃ ଅନେକ କହିବାକୁ ଚାହିଁ, ସତେ ଯେପରି କହିପାରି ନାହାନ୍ତି । ଏବଂ, ଅତ୍ୟନ୍ତ ସାହସର ସହିତ, ଓଡ଼ିଶା ଇତିହାସର ଅନ୍ୟତମ ସଂଗ୍ରାମୀ

ଭାବରେ ଚିତ୍ରିତ ବକ୍ସି ଜଗବନ୍ଧୁ ବିଦ୍ୟାଧରଙ୍କ ଇଂରେଜ ବିରୋଧୀ ଆହ୍ୱାନ ଯେ, ମୁଖ୍ୟତଃ ତାଙ୍କ ବ୍ୟକ୍ତିକ ଆର୍ଥିକ ସ୍ୱାଧୀନତା ଅପହରଣର ପ୍ରଧାନ କାରଣ ଥିଲା, ତାହା ଉଲ୍ଲେଖ କରିଛନ୍ତି ।[୨୮] ପାଇକ ବିଦ୍ରୋହ ସଂପର୍କରେ ତାଙ୍କ ମନ୍ତବ୍ୟ, ଶ୍ରୀଯୁକ୍ତ ସୋମଙ୍କ ଇତିହାସ ପୁସ୍ତକର ପ୍ରତିଧ୍ୱନି ବୋଲି ମନେହୁଏ ।[୨୯]

## ପାଞ୍ଚ

ଏବେ ମୁଁ ଏହି ଆଲୋଚନାର ଆରମ୍ଭକୁ ଫେରିବି । ମୁଁ ଲେଖିଥିଲି, 'ଓଡ଼ିଶାର ଇତିହାସ' ପ୍ରକାଶନ ପରେ ପରେ କେତେକ ଓଡ଼ିଶାବାସୀ ବଙ୍ଗାଳୀ, ବହିରେ ପ୍ରଦତ୍ତ ଐତିହାସିକ ତଥ୍ୟ ଓ ଭାଷାକୁ କେନ୍ଦ୍ରକରି, ଏହା ଯେ ଜାତୀୟ-ବିଶ୍ୱାସ ଓ ଇଂରେଜ ପ୍ରଶାସନର ବିରୋଧୀ, ତେଣୁ ବିଦ୍ୟାଳୟର ପାଠ୍ୟପୁସ୍ତକ ରୂପେ ପ୍ରଚଳନ ଅନୁପଯୋଗୀ, ତତ୍‌ସଂକ୍ରାନ୍ତରେ ସରକାରଙ୍କ ପାଖରେ ଅଭିଯୋଗ କରିଥିଲେ, ଉଦ୍ଦେଶ୍ୟ ପୂରଣରେ ସଫଳ ହୋଇଥିଲେ ଏବଂ ଅଭିଯୋଗକାରୀ ଥିଲେ କାଳୀପଦ ବନ୍ଦୋପାଧ୍ୟାୟ । ଏଠାରେ ସୂଚନା ଦେବାଲାଗି ଉଚିତ୍ ମଣୁଛି ଯେ, କାଳୀପଦ ବାବୁ ୧୮୬୯ ମସିହାରେ ଡ଼ିବେଟିଂ କ୍ଲବ୍ ଏବଂ ଉତ୍କଳ ହିତୈଷିଣୀ ପତ୍ରିକା ମାଧ୍ୟମରେ, ଓଡ଼ିଶାର ଉନ୍ନତି କରିବାକୁ ହେଲେ ବିଦ୍ୟାଳୟରୁ ଓଡ଼ିଆ ଭାଷା ଉଠାଇ ଦେବା ଓ ଓଡ଼ିଆ ପରିବର୍ତ୍ତେ ବଙ୍ଗଳା ଲିପିରେ ଲେଖିବାପାଇଁ ପରାମର୍ଶ ଦେଇଥିଲେ ଏବଂ ତାଙ୍କର ସକଳ ଉଦ୍ୟମ ଭିତ୍ତିହୀନ ବୋଲି ପ୍ରମାଣିତ ହୋଇଥିଲା ।[୩୦] ତେଣୁ ତିନିଶହ ଟଙ୍କା ଅର୍ଥ ସାହାଯ୍ୟରେ ଓଡ଼ିଆ ଭାଷାରେ ଲିଖିତ ଏତେ ସୁସଂଯୋଜିତ, ତଥ୍ୟଗର୍ଭୀ ଓ ପାଣ୍ଡିତ୍ୟପୂର୍ଣ୍ଣ ଇତିହାସ ବହି ଦେଖି ସେ ଚମକି ପଡ଼ିଛନ୍ତି; ପ୍ରତିକ୍ରିୟାଶୀଳ ହୋଇଛନ୍ତି ଏବଂ ଛିଦ୍ରାନ୍ୱେଷୀ ଆଖି ନେଇ ବହିଟିର ମୂଲ୍ୟାୟନ କରିଛନ୍ତି । ବହି ବିରୋଧରେ ରହିଛି ତାଙ୍କର ଦୁଇଟି ଅଭିଯୋଗ । ପ୍ରଥମତଃ, କଳାପାହାଡ଼ର ଓଡ଼ିଶା ଆକ୍ରମଣ ସମ୍ବନ୍ଧିତ । ଆଚାର୍ଯ୍ୟଙ୍କ ଉକ୍ତି କଳାପାହାଡ଼, 'ଜଗନ୍ନାଥ ଦେବଙ୍କୁ ହସ୍ତୀ ପିଠିରେ ଲଦି ଗଙ୍ଗାକୂଳକୁ ଘେନିଗଲେ ଏବଂ ଗଙ୍ଗାକୂଳେ ଜଳୁଥିବା ଏକ ଚିତାବହ୍ନିରେ ଜଗନ୍ନାଥଙ୍କୁ ପୋଡ଼ି ଦେବାପାଇଁ ନିକ୍ଷେପକଲେ । ଜଗନ୍ନାଥ ଦେହ ଚିତାଅଗ୍ନିରେ ପୋଡ଼ି ନ ଯାଉଣୁ ବିଶର ମହାନ୍ତି ନାମକ ଏକ ବ୍ୟକ୍ତି ତାଙ୍କୁ ଓଟାରି ଆଣିଲା ଏବଂ ତାଙ୍କର ନାଭିସ୍ଥଳ ଉଦ୍ଧାର କରି ନେଇ ଓଡ଼ିଶାକୁ ପ୍ରତ୍ୟାଗତ ହେଲା । (ଆଚାର୍ଯ୍ୟ ପୃ ୧୧୫/୧୧୬) ଏବଂ ଓଡ଼ିଶାର ଦେଉଳମାନଙ୍କରେ ଆଜିକାଲି ଯେ ଅନେକ ଅର୍ଦ୍ଧଭଗ୍ନ ମୂର୍ତ୍ତି ଦୃଷ୍ଟିଗୋଚର ହୁଅଇ, ସେମାନେ କଳାପାହାଡ଼ ଓ ତତ୍‌ଧର୍ମାବଲମ୍ବୀମାନଙ୍କ ହସ୍ତର କୀର୍ତ୍ତି ବିଶେଷ । ଅଦ୍ୟାପି ସୁଦ୍ଧା ଲୋକେ କହନ୍ତି, କଳାପାହାଡ଼ର ଗୋଚର୍ମ ନିର୍ମିତ ବାଦ୍ୟରେ ଦେବଦେବୀଙ୍କ ହସ୍ତପଦ ଖସି ପଡ଼ିଅଛି । (ଆଚାର୍ଯ୍ୟ ପୃ ୧୨୧)

ଏବଂ, ଦ୍ୱିତୀୟତଃ, ଇଂରେଜମାନଙ୍କ ଶାସନ ପରିପ୍ରେକ୍ଷୀରେ 'ବଞ୍ଚନା' ଶବ୍ଦର ବ୍ୟବହାର, ଯାହା 'ବଞ୍ଚିତ' ହେବା ଆବଶ୍ୟକ । ମାତ୍ର ଗ୍ରନ୍ଥବର୍ଣ୍ଣିତ ଏହି ଦୁଇ ପ୍ରସଂଗ ବ୍ୟତୀତ ଅନ୍ୟ ବହୁ କାରଣ ଯେ ବଙ୍ଗାଳୀମାନଙ୍କର ପ୍ରତିକ୍ରିୟାଶୀଳତାର ଆଧାର, ତତ୍‌ସଂକ୍ରାନ୍ତରେ ଏଠାରେ ଆଲୋକପାତ କରାଯାଇପାରେ ।

ବହିର ଅନେକ ସ୍ଥଳରେ ଆଚାର୍ଯ୍ୟ, ବଙ୍ଗଳାର ରାଜାମାନେ ବିଭିନ୍ନ ସମୟରେ ଉତ୍କଳ ରାଜାଙ୍କର ଆଶ୍ରିତ ହୋଇଛନ୍ତି ବୋଲି ସୂଚନା ଦେଇଛନ୍ତି । ଓଡ଼ିଶାର ପ୍ରାଚୀନ ଇତିହାସର ଚର୍ଚ୍ଚା କାଳରେ ସେ ଲେଖିବଛନ୍ତି–

(୧) ମଗଧ ରାଜାଙ୍କ ନିର୍ଘଣ୍ଟରୁ ଜଣାଯାଏ ଯେ ଚନ୍ଦ୍ରବଂଶୀୟ ରାଜାମାନେ ବଙ୍ଗଦେଶରେ ସାମୟିକ ଅଧିକାର ପ୍ରାପ୍ତ ହୋଇଥିଲେ । ସମ୍ଭବତଃ ଖ୍ରୀଷ୍ଟୀୟ ଚତୁର୍ଥ/ପଞ୍ଚମ ଶତାବ୍ଦୀରେ ଚନ୍ଦ୍ରବଂଶୀୟ ରାଜାମାନେ ବଙ୍ଗଳାରେ ରାଜତ୍ୱ କରୁଥିଲେ । ଲିଖିତ ଅଛି, ଭୂଷଚନ୍ଦ୍ର ନାମକ ଜନୈକ ରାଜା ବଙ୍ଗଦେଶରେ ହୀନବଳ ହୋଇ ଉଠିଲାରୁ ଜାଲେଗୁହ ନାମକ ଓଡ଼ିଶାର ଜଣେ ରାଜା ତାଙ୍କ ରାଜ୍ୟର ପୂର୍ବଭାଗରୁ ଅଧିକାଂଶ ସ୍ୱାଧିକାରଭୁକ୍ତ କରିଥିଲେ । କର୍ମଚନ୍ଦ୍ର ନାମକ ଅନ୍ୟ ଏକ ବଂଶୀୟ ରାଜା ଓଡ଼ିଶାର ଅନ୍ୟ ଏକ ନୃପତିଙ୍କ ଅଧୀନସ୍ଥ ହୋଇଥିଲେ । (ଆଚାର୍ଯ୍ୟ: ପୃ ୧୬୩)

(୨) ବଙ୍ଗଦେଶର ସେନ୍‌ବଂଶୀୟ ଆଦିରାଜା ରୂପସେନ୍ ବା ଆଦିଶ୍ୱର ଯେ କି ୯୬୪ ଖ୍ରୀଷ୍ଟାବ୍ଦରେ ସିଂହାସନ ଆରୋହଣ କରିଥିଲେ । ବଙ୍ଗ ଦେଶରେ ଶାସ୍ତ୍ରଜ୍ଞ ଓ ବେଦବେଦାଙ୍ଗକୁଶଳ ବ୍ରାହ୍ମଣମାନଙ୍କର ଅଭାବ ଦେଖି ପ୍ରଥମେ ଓଡ଼ିଶାରୁ ବୈଦିକ ବ୍ରାହ୍ମଣମାନଙ୍କୁ ନିମନ୍ତ୍ରଣ କରି ଘେନିଗଲେ । XXX ଓଡ଼ିଶାର ବ୍ରାହ୍ମଣମାନେ ବଙ୍ଗଦେଶରେ ଉପନିବେଶ ସଂସ୍ଥାପନ କରି ରହିଲେ । ଅଦ୍ୟାପି ଉତ୍କଳ ବ୍ରାହ୍ମଣଙ୍କର ସନ୍ତାନସନ୍ତତି ବଙ୍ଗଦେଶରେ ବାସ କରୁଅଛନ୍ତି । (ଆଚାର୍ଯ୍ୟ: ପୃ.୬୯)

(୩) ରାଜେଶ୍ୱର ଦେବଙ୍କ ଶାସନକାଳରେ ବଙ୍ଗଦେଶର ସେନବଂଶୀୟ ଶେଷ ହିନ୍ଦୁରାଜା ଲାକ୍ଷ୍ମଣେୟ ମୁସଲମାନମାନଙ୍କ ଆକ୍ରମଣ ଭୟରେ ପଳାଇ ଆସି ଜଗନ୍ନାଥ ମନ୍ଦିରରେ ଆଶ୍ରୟ ଗ୍ରହଣ କରି ଅବଶିଷ୍ଟ କାଳ ସେଠାରେ କଟାଇ ଥିବାର ମୁସଲମାନ ଇତିହାସବେତ୍ତାଏ ଲେଖିଛନ୍ତି । (ଆଚାର୍ଯ୍ୟ: ପୃ.୮୭)

(୪) ବର୍ତ୍ତମାନ ଓଡ଼ିଶାରେ ଉପନିବେଶୀ ବଙ୍ଗାଳୀଙ୍କର ସଂଖ୍ୟା ନିତାନ୍ତ ଅଳ୍ପ ନୁହେଁ । ପ୍ରାୟ ଲକ୍ଷାଧିକ ହେବ । ଗଙ୍ଗବଂଶୀୟ ରାଜାଙ୍କ ସମୟରେ ଓଡ଼ିଶାକୁ ସେମାନଙ୍କର ଆଗମନର କାରଣ ହୋଇଥିଲା । ସ୍ୱୟଂ ବଙ୍ଗଳାର ଶେଷ ରାଜା ୧୨୦୩ ମସିହାରେ ଓଡ଼ିଶାକୁ ପଳାଇ ଆସିଥିଲେ । XXX ପୁରୀ ଜଗନ୍ନାଥ ଦେବ ମଧ୍ୟ ଅନେକ ବଙ୍ଗାଳୀଙ୍କୁ ଓଡ଼ିଶାକୁ ଆସିବାକୁ ପ୍ରଲୁବ୍ଧ କରିଥିଲେ । (ଆଚାର୍ଯ୍ୟ: ପୃ. ୧୦୯)

(୫) ଗଙ୍ଗବଂଶୀୟ ରାଜାଙ୍କ ସମୟରେ ଓଡ଼ିଶାବାସୀଏ ଯେ କେତେ ଶକ୍ତିଶାଳୀ ଥିଲେ, ଏକଥା କହିବା ବାହୁଲ୍ୟ । ସେମାନେ ବାହୁବଳରେ ତ୍ରିବେଣୀଠାରୁ ଗୋଦାବରୀ ପର୍ଯ୍ୟନ୍ତ ଓ ଅନେକ ଥର ଶିକ୍ଷିତ ମୁସଲମାନ ସେନାଙ୍କୁ ଅବଲୀଳାକ୍ରମେ ପରାଭବ କରିଥିଲେ । (ଆଚାର୍ଯ୍ୟ: ପୃ ୧୧୧)

(୬) ମୁସଲମାନମାନଙ୍କ ନିକଟରେ ଚାକିରୀ କରିବା ଯୋଗୁଁ କେତେକ ଖୋରଟା ଓ ବଙ୍ଗଳୀ ମୁସଲମାନମାନଙ୍କ ସମୟରେ ମଧ୍ୟ ଓଡ଼ିଶାକୁ ଆସିଥିଲେ । XXX କେବଳ ଯେ ବଙ୍ଗଦେଶୀୟ

ବ୍ରାହ୍ମଣ ଓ କାୟସ୍ଥ ଯେ ଏ ଦେଶକୁ ଆସି ଉପନିବେଶ ସ୍ଥାପନ କରିଛନ୍ତି ଏମନ୍ତ ନୁହେଁ, ବଙ୍ଗଦେଶୀୟ ଚଷା, ତୁମ୍ବୁକୀ, ଭଣ୍ଡାରୀ ଓ ଅନ୍ୟାନ୍ୟ କୌଣସି କୌଣସି ହିନ୍ଦୁ ସମାଜର ନୀଚ ଜାତି ସୁଦ୍ଧା ଓଡ଼ିଶାକୁ ଆସି ବସବାସ ସଂସ୍ଥାପନ କରିଛନ୍ତି । (ଆଚାର୍ଯ୍ୟ: ପୃ. ୧୩୯)

ଓଡ଼ିଶାର ଭାଷା, ସାହିତ୍ୟର ପ୍ରାଚୀନତା ଏବଂ ଉନ୍ନତ ସାମାଜିକ, ସାଂସ୍କୃତିକ ଓ ରାଜନୀତିକ ବ୍ୟବସ୍ଥାର ଇତିହାସ, ଆଧୁନିକ ବଙ୍ଗୀୟମାନଙ୍କର ଅଭିଜାତବୋଧକୁ ସତେ ଯେପରି ଭାରି ଆଘାତ ଦେଇଛି । ସେମାନେ ପ୍ରତିବାଦ କରିଛନ୍ତି ଓ ଫେରାଦ ହୋଇଛନ୍ତି ପ୍ରଭୁଙ୍କ ଦପ୍ତରରେ । ଓଡ଼ିଆମାନେ ଯେ ଇଂରେଜ ଶାସନ ବିରୋଧୀ, ପ୍ୟାରୀମୋହନଙ୍କ ବହିରୁ ସେମାନେ ବହୁ ଉଦାହରଣ ପାଇଛନ୍ତି । ନିମ୍ନୋକ୍ତ ଉଦ୍ଧୃତିଗୁଡ଼ିକରୁ ଲେଖକଙ୍କର ଏହି ମାନିସକତାର ଆକଳନ କରାଯାଇପାରେ ।

(୧) ଭାରତବର୍ଷକୁ ଇଂରେଜମାନେ ପ୍ରଥମେ ବାଣିଜ୍ୟ କରିବାପାଇଁ ଆଗମନ କରି ସେମାନଙ୍କର ବାହୁବଳ ଓ କୌଶଳଦ୍ୱାରା ଅବଶେଷରେ ସେହି ଭାରତବର୍ଷକୁ ଅଧିକୃତ ରାଜ୍ୟରେ ପରିବର୍ତ୍ତିତ କଲେ । (ଆଚାର୍ଯ୍ୟ: ପୃ. ୧୫୧)

(୨) କଟକ ସ୍କୁଲ୍ ୧୮୬୮ ମସିହାରେ ହାଇସ୍କୁଲ୍ ରୂପେ ପରିବର୍ତ୍ତିତ ହୋଇ ବର୍ତ୍ତମାନ କଲେଜରେ ପରିଣତ ହୋଇଛି । ମାତ୍ର ଯେଉଁ ପ୍ରକାର କଲେଜ ଏଠାରେ ହୋଇଅଛି, ସେପରି କଲେଜ ବାଞ୍ଛନୀୟ ନୁହଇ, ଏପରି ହେବା ଅପେକ୍ଷା ବରଂ ନୋହିଥିବାର ଶୁଭଙ୍କର ଥିଲା । (ଆଚାର୍ଯ୍ୟ: ପୃ. ୧୭୧)

(୩) ଓଡ଼ିଶାରେ ଚାଷର ବିଶେଷ ଉନ୍ନତି ହୋଇ ନାହିଁ । (ଆଚାର୍ଯ୍ୟ: ପୃ. ୧୭୩)

(୪) ଉଚ୍ଚ ଇଂରାଜୀ ଶିକ୍ଷାର ବହୁଳ ପ୍ରସାର ଓଡ଼ିଶାରେ ହୋଇ ନାହିଁ ସତ୍ୟ, କିନ୍ତୁ ସେଥିକି କହିବାର ଅଛି ଯେ, ଇଂରାଜୀ ଉଚ୍ଚଶିକ୍ଷା ଓଡ଼ିଶାବାସୀଙ୍କି ଦେବା ସକାଶେ ଇଂରେଜଙ୍କର କୌଣସି ବିଶେଷ ଚେଷ୍ଟା ହୋଇ ନାହିଁ । (ଆଚାର୍ଯ୍ୟ: ପୃ. ୧୭୩)

(୫) ନାଳଖୋଳା, ନଦୀବନ୍ଧ ତିଆରି ସମ୍ପର୍କରେ ମନ୍ତବ୍ୟ: ଇଂରାଜୀ ଗବର୍ଣ୍ଣମେଣ୍ଟଙ୍କର ,ସମସ୍ତ ସାଧାରଣ କାର୍ଯ୍ୟକୁ ଆମ୍ଭେମାନେ ଯେମନ୍ତ ପ୍ରଶଂସା କରୁ, ସେହିସବୁ କାର୍ଯ୍ୟ ଚଳାଇବା ସକାଶେ ଦୁଃଖୀ ଭାରତବାସୀଙ୍କର ଅର୍ଥର ଯଥେଚ୍ଛା ଅପବ୍ୟୟ କରିବା ବିଷୟକୁ ମଧ୍ୟ ଅତ୍ୟନ୍ତ ଦୂଷଣୀୟ ଓ ଗର୍ହିତ ବୋଲି ବିବେଚନା କରୁ । ପୁନଶ୍ଚ ଏହି ସାଧାରଣ କାର୍ଯ୍ୟ ମଧ୍ୟରୁ କେତେକ କାର୍ଯ୍ୟ ସକାଶେ ଏ ଦେଶମାନଙ୍କରୁ କେଉଁ କର ଗୃହୀତ ହେବାର ବିଧି ହୋଇଅଛି, ସେଥିଦ୍ୱାରା ଦୁଃଖି ଲୋକଙ୍କ ଆଖିରୁ ପ୍ରତ୍ୟହ ଯେଉଁ ଅଶ୍ରୁବାରି ବହିର୍ଗତ ହେଉଅଛି, ଦରିଦ୍ରଙ୍କ ହୃଦୟରୁ ଯେଉଁ ହା ହା ଧ୍ୱନି ଉଠୁଅଛି, ସେ ସମସ୍ତ ଚିନ୍ତା କଲେ ଉକ୍ତ ସାଧାରଣ କାର୍ଯ୍ୟଚୟର ମାହାତ୍ମ୍ୟ ଏକାବେଳକେ ଲୋପମାନ ହୁଅନ୍ତା । (ଆଚାର୍ଯ୍ୟ: ପୃ. ୧୭୫/୬)

(୬) କେବଳ ଗୋଟିକେତେ ଅଲାଭ ଏହି ଯେ, ଇଂରାଜ ଗବର୍ଣ୍ଣମେଣ୍ଟ ଆମ୍ଭମାନଙ୍କୁ ଅବିଶ୍ୱାସ କରୁଅଛନ୍ତି । ଯେ ପ୍ରକାର କରଭାର ଦ୍ୱାରା ପ୍ରଜାମାନଙ୍କୁ ଜର୍ଜରିତ କରିଅଛନ୍ତି ଏବଂ ଆମ୍ଭମାନଙ୍କୁ ସେମାନଙ୍କ ଶାସନ ପ୍ରଣାଳୀରେ ଭାଗୀ କରୁ ନାହାନ୍ତି । ମୁସଲମାନ ଓ ମରହଟ୍ଟାମାନେ ଅନ୍ୟ

ପ୍ରକାରେ ଅତ୍ୟାଚାର କରୁଥିଲେ ସୁଦ୍ଧା ଦେଶୀୟ ଲୋକଙ୍କୁ ଶାସନରେ ଭାଗ ଦେଇଥିଲେ । ଦେଶୀୟ ଲୋକଙ୍କୁ ବୃହତ୍ ବୃହତ୍ ଅଞ୍ଚଳର ଶାସନକର୍ତ୍ତା ମଧ୍ୟ ସୈନ୍ୟମାନଙ୍କର ଅଧିନାୟକତ୍ୱରେ ବରଣ କରୁଥିଲେ । (ଆଚାର୍ଯ୍ୟ: ପୃ.୧୭୯)

(୭) ସଂକ୍ଷେପତଃ ଚାରିଆଡ଼କୁ ଅନାଇଲେ ବର୍ତ୍ତମାନ କେବଳ ଆଶାର ଚିହ୍ନ ଦେଖାଯାଏ । xxx ସମସ୍ତ ଭାରତବାସୀଏ ଏକ ଜାତିତ୍ୱ ଲାଭ କରିବେ, ଏହା ସ୍ୱପ୍ନର କଥା ନୁହେଁ ।

ଉପର୍ଯ୍ୟୁକ୍ତ ବାକ୍ୟଗୁଡ଼ିକୁ ପଢ଼ିଲା ବେଳେ ଯେକୌଣସି ପାଠକ ନିଶ୍ଚିତଭାବେ ଅଟକି ଯିବ । ଭିତରେ ସେ ନିଜର ଏବଂ ନିଜ ଜାତିର ଅସ୍ମିତାକୁ ଅନୁଭବ କରିଥିବା ଏବଂ ନିଜକୁ ପ୍ରତିଷ୍ଠା କରିବାକୁ ଚାହୁଁଥିବା ଜଣେ ବିପ୍ଳବୀର ତେଜ ଅନୁଭବ କରିବ । ‘ସମଗ୍ର ଭାରତବାସୀ ଦିନେ ଏକଜାତିତ୍ୱ ଲାଭ କରିବେ’, ଏହା କଦାଚ ଜଣେ ସାଧାରଣ ମଣିଷର ଉକ୍ତି ହୋଇ ନ ପାରେ । ମାତ୍ର ଏକଥା ଆଦୌ ଗ୍ରହଣୀୟ ନୁହେଁ ଯେ, ପ୍ୟାରୀମୋହନ ଇଂରେଜମାନଙ୍କର ଜଣେ ସଚ୍ଚା ନିନ୍ଦୁକ । ସେ ବିଦେଶୀମାନଙ୍କ କମ୍ ପ୍ରଶଂସା କରି ନାହାନ୍ତି ।

ବିଦେଶୀମାନେ ଯେ ଭାରତକୁ ନୂଆ ଆଖି ଦେଇଛନ୍ତି, ପୃଥିବୀକୁ ଦେଖିବାର ସୁଯୋଗ ସୃଷ୍ଟି କରିଛନ୍ତି, ଧର୍ମ ଓ ଦେଶାଚାର ନାମରେ ଶହଶହ ବର୍ଷ ଧରି ମଣିଷକୁ ଜଡ଼ ଓ ବିବକେହୀନ କରି ରଖିଥିବା xxx ଯାବତୀୟ ଅନ୍ଧବିଶ୍ୱାସର ପରିଶୋଧନର କାରଣ ହୋଇଛନ୍ତି ଏବଂ ଶିକ୍ଷା, ଗମନାଗମନ, ବାଣିଜ୍ୟ, ପରିବହନ, ଶିଳ୍ପ, କୃଷି ଆଦି ନାନା କ୍ଷେତ୍ରରେ ନୂଆ ଆୟାମମାନ ଦେଇଛନ୍ତି, ଏ କଥା ମଧ୍ୟ କହିଛନ୍ତି । ମାତ୍ର କାଳୀପଦବାବୁ ଏବଂ ତାଙ୍କର ସଙ୍ଗୀମାନଙ୍କୁ ପ୍ୟାରୀମୋହନଙ୍କ ସ୍ପଷ୍ଟୋକ୍ତି ଆଶ୍ଚର୍ଯ୍ୟ କରିଛି ଏବଂ ସଂକୀର୍ଣ୍ଣ ଭାବ ନେଇ, ସ୍ୱାର୍ଥହାସଲପାଇଁ ତାଙ୍କ ବିରୋଧରେ ମୁନିବ ପାଖରେ ଫେରାଦ ହୋଇଛନ୍ତି, ଫଳ ବି ପାଇଛନ୍ତି । ଆଶ୍ଚର୍ଯ୍ୟ କଥା ଏହିକି ଯେ, ଆପଣାର ଭିତିରି ଉଦ୍ଦେଶ୍ୟକୁ ଗୋପନୀୟ ରଖିବାପାଇଁ, ସେମାନେ ବହିରେ ବର୍ଣ୍ଣିତ ‘କଳାପାହାଡ଼’ ଓ ‘ଜଗନ୍ନାଥ’ ପରି ଏକ ସମ୍ବେଦନଶୀଳ ଧର୍ମ ପ୍ରସଙ୍ଗର ଆଲୋଚନା ଉପରେ ଗୁରୁତ୍ୱ ଦେଇଛନ୍ତି ।

ପ୍ୟାରୀମୋହନଙ୍କ ‘କଳାପାହାଡ଼’ ଓ ‘ଜଗନ୍ନାଥକୈନ୍ଦ୍ରିକ’ ଘଟଣାର ବର୍ଣ୍ଣନା ଅତ୍ୟନ୍ତ ମାମୁଲି । ଯେ, ତାହା ଯେ ଆଲୋଚନାର ଏକ ପ୍ରସଙ୍ଗ ହୋଇପାରେ, ଏକଥା ଆଜି କୌଣସି ସଚେତନ ପାଠକ ସହଜରେ ବିଶ୍ୱାସ କରିପାରିବ ନାହିଁ । ଓଡ଼ିଶାର ଇତିହାସ ଲେଖିଥିବା ପ୍ରତ୍ୟେକ ଦେଶୀ ଓ ବିଦେଶୀ ବିଦ୍ୱାନ୍ ସେହି ଘଟଣାକୁ ସେମାନଙ୍କ ଦୃଷ୍ଟିରେ ବିଚାର କରିଛନ୍ତି । ୩୧ ଅତିକଥନ ଭିତରେ ସତ୍ୟକୁ ଖୋଜିଛନ୍ତି । କାରଣ କଳାପାହାଡ଼ ନାମକ ଜଣେ ପ୍ରତିକ୍ରିୟାଶୀଳ ଓ ଯବନାୟିତ ହିନ୍ଦୁର ଆଚରଣ ଓଡ଼ିଆମାନଙ୍କୁ ମାନସିକ ସ୍ତରରେ ସେତିକି ଆଘାତ ଦେଇ ନ ଥିଲେ, ସେ ଆଦୌ ଜଣେ କିମ୍ବଦନ୍ତୀର ନାୟକ, ଏପରି କି କେବଳ ମାଦଳାପାଞ୍ଜି ନୁହେଁ, ହିନ୍ଦୁମାନଙ୍କର ବାର୍ଷିକ ପାଞ୍ଜିର ଘୃଣିତ ଚରିତ୍ର ହୋଇ ନ ଥା'ନ୍ତା । ପ୍ୟାରୀମୋହନ ସେହି କିମ୍ବଦନ୍ତୀର ବର୍ଣ୍ଣନା କରୁ କରୁ ହଣ୍ଟରଙ୍କ blazing pile of wood କୁ ଚିତାଅଗ୍ନି ଶବ୍ଦରେ ଅନୁବାଦ କରି ଦେଇଅଛନ୍ତି ଏବଂ ଶବ ପୋଡ଼ିହେଉଥିବା ଅଗ୍ନିକୁ ଯେ ଚିତାବହ୍ନି କୁହାଯାଏ, ସେ ଜାଣି ପାରି ନାହାନ୍ତି । କାଳୀପଦ ବହିଖଣ୍ଡିକ

ପଢ଼ିସାରିବା ପରେ ଅସହିଷ୍ଣୁ ହୋଇ ପଡ଼ିଛନ୍ତି । ବହିକୁ ବଦନାମ କରିବା ଏବଂ ଲେଖକଙ୍କ ଉପରେ ପ୍ରତିଶୋଧ ନେବାପାଇଁ ଦୃଢ଼ପ୍ରତିଜ୍ଞ ହୋଇ ସେ ତାଙ୍କୁ ଉଭୟ ଇଂରେଜ ଓ ଜଗନ୍ନାଥଦ୍ରୋହୀ ବୋଲି ପ୍ରଚାର କରିଛନ୍ତି । ପ୍ୟାରୀମୋହନ କିନ୍ତୁ ପରେ ନିଜ ଭୁଲ୍ ବୁଝିଛନ୍ତି, ବହିର ଅଶୁଦ୍ଧି ସଂଶୋଧନ ପୃଷ୍ଠାରେ 'ଚିତା'ଶବ୍ଦ ଉଠାଇ ଦେଇ ପଢ଼ିବାକୁ ପାଠକମାନଙ୍କୁ ଅନୁରୋଧ କରିଛନ୍ତି ।[୩୨] ମାତ୍ର କାଳୀପଦ ଏବଂ ତାଙ୍କ ଅନ୍ୟ ବନ୍ଧୁମାନେ ଆପଣା ଜାତିର ଯେଉଁ ପରିଚୟ, ପ୍ରତିବାଦ ମାଧ୍ୟମରେ ଲେଖି ଦେଇଗଲେ, (ଖଣ୍ଡେ ଭଲ ଇତିହାସ ବହିକୁ ଆଧାର କରି) ଓଡ଼ିଶାର ଇତିହାସରେ ଆଜି ମଧ୍ୟ ସେମାନଙ୍କ ସ୍ୱରୂପ ସଂପର୍କରେ ଆମକୁ ସଚେତନ କରିଦେଉଛି ।[୩୩]

ଶେଷରେ ପ୍ୟାରୀମୋହନଙ୍କ 'ଓଡ଼ିଶାର ଇତିହାସ' ସଂପର୍କରେ ଏତିକି କୁହାଯାଇ ପାରେ ଯେ, ଏହା ଜଣେ ବଙ୍ଗାଳୀ ଅଥଚ ଓଡ଼ିଶାକୁ ନିଜର ଜନ୍ମଭୂମି ମଣୁଥିବା ସଚେତନ ମଣିଷ ହାତରେ ଲିଖିତ ଓଡ଼ିଆ ଜାତିର କେବଳ ଗତ ଦିନର ଗାଥା ନୁହେଁ, ଏକ ଜାତିର ଅତୀତର ଗୌରବାବହ ସୁଦିନ ଓ ନିନ୍ଦନୀୟ ଦୁର୍ଦ୍ଦିନ, ଉଭୟର ମୋହମୁକ୍ତ ଚିତ୍ର ମାଧ୍ୟମରେ ତାହାର ଅସ୍ମିତାର ଅନ୍ୱେଷଣ ଓ ଭବିଷ୍ୟତର ଗଢ଼ଣପାଇଁ ଏକ ଆହ୍ୱାନ । ଏହି ବହି ସେଦିନ ନିଶ୍ଚିତ ଭାବରେ ଇଂରେଜମାନଙ୍କୁ ସଂକେତ ଦେଇଥିବ ଯେ, ଭାଷା, ଧର୍ମ ଓ ସାହିତ୍ୟକୁ ଆଳକରି ବୟସ୍କ ଭାରତୀୟମାନେ ପରସ୍ପର ସହ ଝଗଡୁଥିଲେ ସୁଦ୍ଧା କେଉଁଠି କେଉଁଠି ତରୁଣମାନେ ବୃହତ୍ତର ଭାରତ ଗଢ଼ିବାର ସ୍ୱପ୍ନ ଦେଖିଲେଣି । ସେଇଥିପାଇଁ ଚାଟୁକାରମାନଙ୍କ ପରାମର୍ଶରେ ସେମାନେ ବହିକୁ ବିଦ୍ୟାଳୟର ଖୁଆଡ଼ ବାହାରେ ରଖିବାକୁ ସିଦ୍ଧାନ୍ତ ନେଇଛନ୍ତି । ମାତ୍ର ବାସ୍ତବତଃ, ବଙ୍ଗାଳୀମାନଙ୍କର ପାଠ୍ୟପୁସ୍ତକ ରଚନା ମାଧ୍ୟମରେ ଅର୍ଥ ଉପାର୍ଜନ ଓ କର୍ତ୍ତୃତ୍ୱବିସ୍ତାରୀ ମାନସିକତା ଅମଳ ଦେଇପାରିନି । ହାରିବା ହିଁ ସାର ହୋଇଛି ।

ଏବଂ, ଏହି ତରୁଣଙ୍କ ଚେତନାର ପରିଶୋଧିତ ତଥ୍ୟଭୂମି ଉପରେ ପଲ୍ଲବିତ ହୋଇଛି ଓଡ଼ିଶାର ନୂଆ ଇତିହାସ ।[୩୪] ମାତ୍ର ଗୁରୁତ୍ୱପୂର୍ଣ୍ଣ ପ୍ରସଙ୍ଗ, ଇତିହାସକୁ କୌଣସି ଜନସମୁଦାୟର ପରିଚିତି-ଅନୁଭବର ଅବ୍ୟର୍ଥ ଓ ସମ୍ମୋହନ-ମୋଦକ ଭାବରେ ଯେ ପ୍ରୟୋଗ କରାଯାଇପାରେ, ଏହି ଔପନିବେଶିକ ଭାବାଦର୍ଶ ଓଡ଼ିଆଙ୍କ କ୍ଷେତ୍ରରେ ମଧ୍ୟ ଭଲ ଅମଳ ଦେଇଛି । ସେମାନେ ପୀଡ଼ାଦାୟକ ସତ୍ୟ ଅପେକ୍ଷା କଳ୍ପିତ ଓ ପ୍ରୀତିପ୍ରଦ ବାସ୍ତବତା ଇତିହାସର ପିଣ୍ଡ ହେବା ଅବଶ୍ୟ ଆବଶ୍ୟକତା ବୋଲି ବିଶ୍ୱାସ କରିଛନ୍ତି । ବହି ସଂପର୍କରେ ଉତ୍କଳ ମଧୁପ ପତ୍ରିକାର ଦ୍ୱିତୀୟଭାଗ.ସପ୍ତମ-ଅଷ୍ଟମ ସଂଖ୍ୟା (୧୮୭୯)ରେ ପ୍ରକାଶିତ ଚାରି ପୃଷ୍ଠାର ସମାଲୋଚନା ଏହି ମାନସିକତାର ଉଦାହରଣ । ସମାଲୋଚନାର କେତୋଟି ଧାଡ଼ି ଏହିପରି ।

> ଗ୍ରନ୍ଥଖଣ୍ଡି ପଢିଲା ବେଳେ ତହିଁରେ ଲୁଚି ରହିଥିବା ତେଜ ମନୋ ମଧ୍ୟରେ ପ୍ରବେଶ କରି ଯେତେବେଳେ ମନକୁ ଉତ୍ତେଜିତ କରିଦିଏ ତେତେବେଳେ ମନେହୁଏ ଯେପରି ବକ୍ତାଙ୍କ ମୁଖରୁ ଅନର୍ଗଳ ବାକ୍ୟସ୍ରୋତଃ ନିର୍ଗତ ହୋଇ ଶୋଣିତୋତ୍ତେଜନାରେ ଶରୀର ପବିତ୍ର କରୁଅଛି । ଆଉ ସେହିସବୁ ପୁସ୍ତକକୁ କେବଳ ପୁସ୍ତକ କୁହାଯିବ ଯହିଁରେ ଲେଖକର ମନୋଭାବ ପାଠକ ମନରେ

ଖୋଦିତ ହୋଇଯାଏ । xx ଆମ୍ଭେମାନେ ତାବତୀୟ ଉତ୍କଳବାସୀଙ୍କି ଏହି ଗ୍ରନ୍ଥଖଣ୍ଡି ସମୁଦାୟ ପାଠ କରିବା ନିମନ୍ତେ ଅନୁରୋଧ କରୁଅଛୁ ।[୩୫]

ସେମାନେ ବିଚାରିଛନ୍ତି ଏହି ବହି ପଢ଼ି ଓଡ଼ିଆ ନିନ୍ଦୁକମାନେ ଯେ ପାନେ ପାନେ ପାଇବେ, ତାନୁହେଁ, ପିଲାମାନେ ମଧ ସେମାନଙ୍କ ପୂର୍ବପୁରୁଷଙ୍କର ରୋମାଞ୍ଚକର ବୀରତ୍ୱପୂର୍ଣ୍ଣ ଗାଥା ଜାଣି ବେଶ୍ ପୁଲକିତ ହେବେ । ବିଶ୍ୱନାଥ କର ମଧ ଆଉ ପାଦେ ଆଗେଇଯାଇ କହିଛନ୍ତି, ଏହା ନିରର୍ଥକ ଇତିହାସ ନୁହେଁ, ସାହିତ୍ୟଗ୍ରନ୍ଥ ।[୩୬]



## ନୋଟ୍ ଓ ଆକର ସୂଚୀ

୧. ଉତ୍କଳ ଦୀପିକା-ତା ୬, ୧୩ରିଖ ସେପ୍ଟେମ୍ବର ଏବଂ ତା ୧୪, ୧୧ରିଖ ଅକ୍ଟୋବର- ୧୮୭୯ ।

ବହିର ପ୍ରଥମ ସଂସ୍କରଣ ୧୮୭୯ ଏବଂ ଦ୍ୱିତୀୟ ମୁଦ୍ରଣ ୧୯୨୫ ମସିହାରେ ବିଶ୍ୱନାଥ କରଙ୍କ ଉଦ୍ୟମରେ ପ୍ରକାଶିତ । କର ଏହାର ଭୂମିକା ମଧ ଲେଖିଛନ୍ତି । ତାଙ୍କ ମତରେ 'ପ୍ୟାରୀମୋହନ ଯେଉଁ ସମୟରେ ଇତିହାସ ରଚନାରେ ପ୍ରବୃତ୍ତ ହୋଇଥିଲେ, ତାହା ଆଧୁନିକ ଓଡ଼ିଆ ଭାଷାର ଗଠନକାଳ । xxx ଆମ୍ଭେମାନେ ତାଙ୍କର ଭାଷା ପ୍ରୟୋଗର କୌଶଳ ଦେଖି ମୁଗ୍ଧ ହୋଇଅଛୁ । xxx ପୁସ୍ତକଖଣ୍ଡି ଇତିହାସ ହେଲେ ମଧ ତାହାର ଗୋଟିଏ ସାହିତ୍ୟିକ ମୂଲ୍ୟ ରହିଛି । ତାହା ମଧ ଏକ ପ୍ରକାର ଇତିହାସର ଅଂଶ ।' ଏହାର ତୃତୀୟ ସଂସ୍କରଣ ପ୍ରକାଶ ପାଇଛି 'ଓଡ଼ିଶା ବୁକ୍ ଷ୍ଟୋରସ୍' କଟକଙ୍କ ଦ୍ୱାରା ୨୦୦୧ ମସିହାରେ । ମୁଖବନ୍ଧ ଲେଖିଛନ୍ତି ସେକ୍ ମତଲୁବ୍ ଅଲ୍ଲୀ । ସେ ପ୍ରଥମ ସଂସ୍କରଣ ଦେଖି ନ ଥିବାରୁ ସେଥିରେ ସଂଯୋଜିତ ପରିଶିଷ୍ଟ ଏହି ଅଧୁନାତନ ମୁଦ୍ରଣରେ ସ୍ଥାନ ପାଇ ନାହିଁ ।

୨. ଭୂମିକା : ସଂଲଗ୍ନିକା ୧ ।

୩. ଅବଶ୍ୟ ଡ଼କ୍ଟର ଦୁର୍ଗାପ୍ରସନ୍ନ ପଣ୍ଡା ଆପଣାର ଏକ ଆଲୋଚନାରେ "୧୮୭୦ ମସିହା ଜୁଲାଇ ୧ ତାରିଖ ମଧରେ, ଏକ ସରକାରୀ ବିଜ୍ଞାପନ ଉପରେ ନିର୍ଭର କରି ବହିର ପାଣ୍ଡୁଲିପି ବିଦ୍ୟାଧାୟିନୀ କମିଟି – କଟକଙ୍କୁ ହସ୍ତାନ୍ତର କରିଛନ୍ତି ଏବଂ ୧୮୭୫ ମସିହାରେ ଜଏଣ୍ଟ ଇନ୍‌ସପେକ୍ଟରଙ୍କୁ ପ୍ରଦତ୍ତ ପାଣ୍ଡୁଲିପି, ଦ୍ୱିତୀୟବାର ପ୍ରକାଶିତ ବିଜ୍ଞାପନର ଫଳ" ବୋଲି କହିଛନ୍ତି । ମାତ୍ର ଏହି ମନ୍ତବ୍ୟ ସ୍ୱୀକାର କରିବାକୁ ତଥାପି କିନ୍ତୁ ଲାଗେ । କାରଣ, ପୂର୍ବପ୍ରକାଶିତ ଏକ ବିଜ୍ଞାପନ (୧୧.୯.୭୯) କୁ ଆଧାର କରି ଆଚାର୍ଯ୍ୟ ଯଦି ପାଣ୍ଡୁଲିପି ପ୍ରସ୍ତୁତ କରିଥିବେ, ସେତେବେଳକୁ ସେ ସଦ୍ୟ ଏନ୍‌ଟ୍ରାନ୍‌ସ୍ ପାସ୍ କରିଥିବା ଛାତ୍ର ଏବଂ ତାଙ୍କର ବୟସ ମାତ୍ର ଅଠର । ପୁନଶ୍ଚ ଆଚାର୍ଯ୍ୟ ମଧ ମୁଖବନ୍ଧରେ ତତ୍‌ସମ୍ପର୍କରେ କିଛି ଉଲ୍ଲେଖ କରି ନାହାନ୍ତି ।

ପଣ୍ଡା, ଦୁର୍ଗାପ୍ରସନ୍ନ: ୨୦୦୩, ନିଷିଦ୍ଧ ହୋଇଥିବା ଦୁଇଖଣ୍ଡ ଗ୍ରନ୍ଥ: କୋଣାର୍କ-୧୨୯, ପୃ-୨୨-୨୪

୪. ଦ୍ରଷ୍ଟବ୍ୟ : ସଂଲଗ୍ନିକା ୨ ଓ ୯

୫. ଦ୍ରଷ୍ଟବ୍ୟ : ସଂଲଗ୍ନିକା ୩

୬. ଦ୍ରଷ୍ଟବ୍ୟ : ସଂଲଗ୍ନିକା ୪, ୫, ୬, ୭, ୮, ୧୦, ୧୧

୭. (କ) Stirling, Andrew : ୧୮୧୩ ମସିହାରେ ଭାରତ ଆସିଛନ୍ତି; ପର୍ଶିଆନ୍ ସେକ୍ରେଟାରୀ ଭାବରେ କାର୍ଯ୍ୟ କରିଛନ୍ତି । ଏବଂ, ତାଙ୍କର ଦେହାନ୍ତ ହୋଇଛି ୧୮୩୦ ମସିହାରେ । ଓଡ଼ିଶାର ଇତିହାସ ଲେଖିବାପାଇଁ ମାଦଳା ପାଞ୍ଜି ଓ ରାଜବଂଶାବଳୀ ଗ୍ରନ୍ଥର ସାହାଯ୍ୟ ନେଇଛନ୍ତି ଓ ଓଡ଼ିଶାର ବିଭିନ୍ନ ଅଞ୍ଚଳ ମଧ୍ୟ ପରିଭ୍ରମଣ କରିଛନ୍ତି । ତାଙ୍କ ଆଲୋଚନା Asiatic Researches ପତ୍ରିକାର XV ସଂଖ୍ୟାରେ, ୧୮୨୫ ମସିହାରେ 'An Account, Geographical, Statistical and Historical of Orissa; Propritor: Cuttack ଶୀର୍ଷକରେ ପ୍ରକାଶିତ ହୋଇଛି ।

(ଖ) ପାଦ୍ରୀ ଆମସ୍ ସଟନ୍‌ଙ୍କ "ଇତିହାସ ସାର ସଂଗ୍ରହଃ ଅଥଃ ଓଡ଼ିଶା ଆଦି ବିବରଣ ସଂକ୍ଷେପ" ଦୁଇଗୋଟି ଭାଗରେ ୧୮୪୦ ମସିହାରେ ପ୍ରକାଶିତ । ଓଡ଼ିଶାର ବିଦ୍ୟାଳୟ ସମୂହରେ ପାଠ୍ୟପୁସ୍ତକ ଭାବରେ ଲିଖିତ ଏହି ବହି, ଓଡ଼ିଆ ଭାଷାରେ ଲିଖିତ ପ୍ରଥମ ଓଡ଼ିଶା ଇତିହାସ । ସଟନ୍ ମଧ୍ୟ ଷ୍ଟର୍ଲିଂ ଓ ମାଦଳାପାଞ୍ଜି ନିର୍ଭର ।

(ଗ) ଉଇଲିୟମ୍ ହଣ୍ଟର ଭାରତ ଆସିଛନ୍ତି ୧୮୬୨ ମସିହାରେ । ଜଣେ ବିଜ୍ଞାନର ଛାତ୍ର, ମାତ୍ର ଇଣ୍ଡୋଲୋଜି ପଢ଼ିଛନ୍ତି । ବଙ୍ଗଳା ଓ ଓଡ଼ିଶାର ଇତିହାସ ଏବଂ ଭାରତର ଅଣଆର୍ଯ୍ୟ ଭାଷା ସମ୍ପର୍କରେ ତାଙ୍କର ଅଧ୍ୟୟନ ଓ ବିଚାର କେତେ ତଥ୍ୟ ଆଧାରିତ ଓ ଯୁକ୍ତିନିଷ୍ଠ, ତାହା ଆଜି ମଧ୍ୟ ଭାରତୀୟମାନଙ୍କୁ ଆଶ୍ଚର୍ଯ୍ୟ କରେ । Orissa History (Smith, Elder & Co. 15 Waterloo place, London) ଦୁଇଗୋଟି ଭାଗରେ ପ୍ରକାଶିତ ହୋଇଛି ଇଂଲଣ୍ଡରେ, ୧୮୭୨ ମସିହାରେ । ୧୮୮୭ ମସିହାରେ ସେ ଚାକିରୀରୁ ଅବସର ନେଇଛନ୍ତି । ୧୯୦୧ ମସିହାରେ ତାଙ୍କ ଦେହାନ୍ତ ହୋଇଛି ।

(ଘ) Toynobey, G. : **A Sketch of History of Orissa from 1803 to 1823.** ପ୍ରକାଶପାଏ ୧୮୨୮ ମସିହାରେ । ଷ୍ଟର୍ଲିଙ୍କ ଓଡ଼ିଶା ଇତିହାସ ପୁସ୍ତକର ଏହା ଏକ ପ୍ରତିଚ୍ଛାୟା । ଗ୍ରନ୍ଥଟି ତିନି ଭାଗରେ ବିଭକ୍ତ । ପ୍ରଥମ ଭାଗରେ ଇଂରେଜମାନଙ୍କ ଓଡ଼ିଶା ଅଧିକାର, ଓଡ଼ିଶାର ଅଧିବାସୀ, ଖୁରୁଧା ବିଦ୍ରୋହ; ଦ୍ୱିତୀୟ ଭାଗରେ ମରହଟ୍ଟାମାନଙ୍କର ଶାସନ ଓ କରବ୍ୟବସ୍ଥା, ବ୍ରିଟିଶ୍ ସରକାରଙ୍କ ରାଜସ୍ୱ ନୀତି, କରଜ ବ୍ୟବସ୍ଥା, ଜମିଜମା ବନ୍ଦୋବସ୍ତ, ଓଡ଼ିଶାରେ ଜମିଦାରୀ ନିଲାମ ହେବାର ଇତିହାସ, ବଙ୍ଗାଳୀମାନଙ୍କର ଓଡ଼ିଶା ଆଗମନ ଏବଂ ସେମାନଙ୍କର କର୍ତ୍ତୃତ୍ୱବିସ୍ତାରୀ ମାନସିକତା; ଏବଂ ତୃତୀୟ ଭାଗରେ, ପ୍ରଶାସନ ଓ ନ୍ୟାୟିକ ବ୍ୟବସ୍ଥାରେ

ଇଂରେଜମାନଙ୍କର ସଂସ୍କାର ଆଭିମୁଖ୍ୟର ଚିତ୍ର ପ୍ରଦତ୍ତ । ଓଡ଼ିଆମାନଙ୍କର ସାମାଜିକ ଜୀବନର ବିଭିନ୍ନ ଜାତିର ଭୂମିକା ଏବଂ ଇଂରେଜ ପ୍ରବର୍ତ୍ତିତ ପ୍ରଶାସନିକ, ଶୈକ୍ଷିକ ଓ ଅମଲାତାନ୍ତ୍ରିକ ବ୍ୟବସ୍ଥାରେ ବଙ୍ଗାଳୀମାନଙ୍କ ଆଧିପତ୍ୟ ଓ ଦୌରାତ୍ମ୍ୟର ବିବରଣୀ - ଏହି ଇତିହାସଗ୍ରନ୍ଥର ବୈଶିଷ୍ଟ୍ୟ ।

(ଙ) ରଙ୍ଗଲାଲ ବାନାର୍ଜୀ ଆଧୁନିକ ଭାରତର ଅନ୍ୟତମ ସୁପରିଚିତ ପୁରାତତ୍ତ୍ୱବିତ୍ । ଶିଳାଲେଖ ଅଧ୍ୟୟନରେ ତାଙ୍କର ବିଶେଷ ପାରଦର୍ଶିତା । ତାଙ୍କ ବ୍ୟକ୍ତିତ୍ୱର ବୈଶିଷ୍ଟ୍ୟ; ସମାକାଳୀନ ବହୁ ବଙ୍ଗାଳୀଙ୍କ ପରି ଓଡ଼ିଶା, ଅଧିକନ୍ତୁ ଓଡ଼ିଆ ଭାଷା ପ୍ରତି ସେ ପ୍ରାୟତଃ ଉନ୍‌ନାସିକକତା ଦେଖାଇନାହାନ୍ତି । "ଉତ୍କଳ ବର୍ଣ୍ଣନ" ଓଡ଼ିଶା ଇତିହାସ ସଂକ୍ରାନ୍ତରେ ତାଙ୍କର ଏକ ବିଶେଷ ଆଲୋଚନା ଗ୍ରନ୍ଥ ।

(ଚ) ରାଜେନ୍ଦ୍ରଲାଲ ମିତ୍ର ଭାରତର ଅନ୍ୟତମ ବିଖ୍ୟାତ ଗବେଷକ-ପ୍ରଶାସକ । ଦୁଇଗୋଟି ଭାଗରେ ପ୍ରକାଶିତ Antiquities of Orissa (1875 ଏବଂ 1880) ଓଡ଼ିଶାର ପ୍ରାଚୀନ ଇତିହାସ ସଂକ୍ରାନ୍ତ ଦୁଇଗୋଟି ପ୍ରାମାଣିକ ଗ୍ରନ୍ଥ । ଓଡ଼ିଶାକୁ କେତେ ଅନ୍ତରଙ୍ଗ ଭାବରେ ବିଶ୍ଳେଷଣ କରାଯାଇପାରେ, ତାଙ୍କ ଗ୍ରନ୍ଥର ପରିଚ୍ଛେଦ ଏହାର ଉଦାହରଣ, ଯଥା–Antiquities and Classification of Indian Architecture, Construction of Orissa Temple, Architectural Details & Sculpture, Structural Indication of the Social Condition of the Temple Builders, Religion of the Temple Builders (Vol-1) ଏବଂ Khandagiri, Bhubaneswar, Puri (Its Situation, Boundary, Konark, Jajpur, Cuttack (Vol.2) । ଦ୍ୱିତୀୟ ଖଣ୍ଡରେ ଧଉଳି ଓ ପୁରୀର ଶିଳାଲେଖର ଅନୁବାଦ କରିଛନ୍ତି ଏବଂ ଏହି କ୍ଷେତ୍ରରେ ତାଙ୍କର ଆଦର୍ଶ ହୋଇଛନ୍ତି ରଙ୍ଗଲାଲ ବାନାର୍ଜୀ–Calcutta, Wyman & Co., 10 Hare Street and S. Council House Streets.

୮. (କ) ଆମସ୍ ସଟନଙ୍କ ଇତିହାସ ଗ୍ରନ୍ଥ Orissa and Its Evangelization ଏଗାରଗୋଟି ପରିଚ୍ଛେଦରେ ବିଭକ୍ତ । ପ୍ରଥମ, ଦ୍ୱିତୀୟ, ଓ ତୃତୀୟ ପରିଚ୍ଛେଦରେ ସେ (a) Orissa, Its Geography: Soil, scenery and productions, climate, population, etc. A Sketch of Orissa History, present social and moral condition of Orissa.

ଏବଂ ଅବଶିଷ୍ଟ ଅଧ୍ୟାୟଗୁଡ଼ିକରେ ଓଡ଼ିଶାର ମିଶନାରୀମାନଙ୍କର କାର୍ଯ୍ୟକଳାପ ସମ୍ପର୍କରେ ଚର୍ଚ୍ଚା କରିଛନ୍ତି । ତାଙ୍କୁ ଜଣେ ପରିବ୍ରାଜକ ଓ ଗବେଷକ, ଉଭୟର ମାନ୍ୟତା ଦିଆଯାଇପାରେ । ଗ୍ରନ୍ଥର ଶେଷରେ ସେ ଲେଖିଛନ୍ତି–(b) The Indian banyan tree present no unfilt illustration of our mission to Orissa. The beautiful ond useful product of Indian plains affords a graceful shelter to many graveyard travellers and few thoughtful minds can contemplate this kind provision of this magnificent creator without some thoughts of his greatness. ପୃଷ୍ଠା ୩୯୫, 1850, England, published at Berby.

ଜଗନ୍ନାଥ ଜୀଉଙ୍କ ପ୍ରତି କଳାପାହାଡ଼ର ଅତ୍ୟାଚାର କଥା ଯାହା ମୁଦ୍ରିତ କରିଅଛନ୍ତି ଏବଂ ଆମ୍ଭେମାନେ ମାଦଳାପାଞ୍ଜିରେ ମଧ୍ୟ ପଢ଼ିଅଛୁ ଓ ଉକ୍ତ ଦୁଇ ଇତିହାସରେ ମଧ୍ୟ ପଢ଼ିଅଛୁ । ଜଗନ୍ନାଥଙ୍କ ବିରୁଦ୍ଧରେ ଲେଖାଥିବା ସମସ୍ତ ବିଷୟ ଥର୍ମୋମିଟରରେ ମାପିବାରୁ ଜାଣିପାରିଲୁ ଯେ, ପ୍ୟାରୀବାବୁଙ୍କ ଇତିହାସରେ ଯାହା ଲେଖା ହୋଇଅଛି, ତାହା ଅନେକ ଡ଼ିଗ୍ରୀ ତଳକୁ ଖସି ପଡ଼ିଲା । ଏମନ୍ତ ସ୍ଥଳେ କାଳୀପଦବାବୁ ସଟନ୍ ସାହେବଙ୍କୁ ଓ ମାଦଳାପାଞ୍ଜି ଲେଖକଙ୍କୁ କୌଣସି ଦଣ୍ଡ ନ ଦେଇ ପ୍ୟାରୀବାବୁଙ୍କ ବିରୁଦ୍ଧରେ ଏତେ କଥା କହୁଅଛନ୍ତି, ସେଥିର କାରଣ କିସ ? କାଳୀପଦବାବୁ ଜଗନ୍ନାଥଙ୍କର ପକ୍ଷ ହୋଇ ଜଗନ୍ନାଥଙ୍କ ବିରୁଦ୍ଧରେ ଇତିହାସମାନଙ୍କରେ ଯେଉଁସବୁ କଥା ଲେଖା ଅଛି, ତାହା ଅଧିକ ଉତ୍ଖାତ କରିଥିବାରୁ କେହି କେହି କାହାକୁ ଜଗନ୍ନାଥ ଦେବଙ୍କ Personal Friend ଅର୍ଥାତ୍ ଅଙ୍ଗସଙ୍ଗୀ ବନ୍ଧୁ ବୋଲି କହି ପାରନ୍ତି । କିନ୍ତୁ ପ୍ରକୃତ ବିଚାରକମାନେ ସେଥି ନିମନ୍ତେ କାଳୀପଦବାବୁଙ୍କୁ ଅବଶ୍ୟ ଦୋଷ ଦେବେ; କାରଣ ଜଗନ୍ନାଥ ଜୀଉଙ୍କ ବିରୁଦ୍ଧରେ ଯାହା ଲେଖାଅଛି ତାହା ସେ କେତେ ଦିନ ହେଲା ସମସ୍ତ ଓଡ଼ିଶ୍ୟାରେ ଘୋଷଣା କରୁଅଛନ୍ତି । ଆମ୍ଭେମାନେ ମଧ୍ୟ କାଳୀପଦବାବୁଙ୍କୁ ଜଗନ୍ନାଥ ଜୀଉଙ୍କର ଦୋସ୍ତ ବୋଲି କହି ନ ପାରୁ । ଆମ୍ଭମାନଙ୍କ ବିବେଚନାରେ ଏପରି ବିରାଡ଼ି ବେପାରରେ ଲାଭ କିସ ?

## (୧୨) ବାଲେଶ୍ୱର ସମ୍ବାଦ ବାହିକା: ତା୧୩ରିଖ, ମଇ ସନ୧୮୮୦ ମଶୀହା

ଆମ୍ଭେମାନେ ଦୁଃଖର ସହିତ ଦୀପିକାରୁ ଅବଗତ ହେଲୁ ଯେ, କଟକ ଜିଲ୍ଲାର ମାଜିଷ୍ଟ୍ରେଟ୍ ପସି ସାହେବ ପ୍ୟାରୀବାବୁଙ୍କର ଓଡ଼ିଶ୍ୟାର ଇତିହାସ ବର୍ତ୍ତମାନ ବିଦ୍ୟାଳୟମାନଙ୍କରେ ପଢ଼ାଯିବାର ନିଷେଧ କରିଅଛନ୍ତି । ଆମ୍ଭେମାନେ ପୂର୍ବେ ବୋଲିଅଛୁ କାଳୀପଦବାବୁ 'ନଛୋଡ଼ବନ୍ଧା' । ସେ ସହଜରେ ଛାଡ଼ିବାର ଲୋକ ନୁହନ୍ତି । କାଳୀପଦବାବୁ ପ୍ୟାରୀବାବୁଙ୍କ ଇତିହାସକୁ ରହିତ କରିବା ନିମନ୍ତେ ଅନେକ ଅର୍ଥବ୍ୟୟ କରି ଯେଉଁସବୁ ପାମ୍ଫଲେଟ୍ ଛାପି ଓଡ଼ିଶ୍ୟାରେ ସବୁଆଡ଼େ ବୁଣିଥିଲେ, ତାହା କାର୍ଯ୍ୟରେ ଆଇଲା, କିନ୍ତୁ ସାହେବଙ୍କ ସେହି ଆଦେଶ ଓଡ଼ିଶ୍ୟାର ତିନି ଜିଲ୍ଲାରେ ପ୍ରତିପାଳିତ ହେବ କି ନା, ଜଣାଯାଇନାହିଁ । ପସି ସାହେବ ଜଣେ ବହୁଦର୍ଶୀ ହାକିମ । ଅତ୍ୟନ୍ତ ଦୁଃଖର ବିଷୟ ଯେ, ସେ ଶିକ୍ଷା କମିଟିଙ୍କର ଓ ସାଧାରଣ ମତକୁ ଉପେକ୍ଷା କରି କେବଳ କାଳୀପଦବାବୁଙ୍କ ମତ ଅନୁସାରେ କାର୍ଯ୍ୟ କଲେ । ପ୍ୟାରୀବାବୁ ନିଜ ଇତିହାସରେ ଶ୍ରୀ ଜଗନ୍ନାଥଙ୍କ ବିରୁଦ୍ଧରେ (ଯେମନ୍ତ କିମ୍ବଦନ୍ତୀ ଅଛି) ଯାହା ଲେଖିଥିଲେ ତାହା ତାଙ୍କ ସ୍ୱକପୋଳକଳ୍ପିତ ନୁହେଁ । ତେବେ କଳୀବାବୁ ସେଥି ବିରୁଦ୍ଧରେ ଯେ ଏତେ ଦୂର କଲେ, ସେଥିର କାରଣ କିସ ? ଅମ୍ଭେମାନେ ଅନୁମାନ କରୁ, ସେଥିର ଅବଶ୍ୟ କୌଣସି ଗୂଢ଼ କାରଣ ଅଛି । ତାହା ନେହିଲେ କାଳୀପଦବାବୁ ଜଗନ୍ନାଥଙ୍କ ଦୋସ୍ତ ହୋଇ ଏତେ ଦୂର ଲଢ଼ି ନ ଥା'ନ୍ତେ । (କାଳୀପଦବାବୁ ଜଗନ୍ନାଥ ଦେବଙ୍କର ଯେପରି ଦୋସ୍ତ, ତାହା ଭୂଦେବବାବୁ ପ୍ରଭୃତି ତାଙ୍କ ନିମନ୍ତ୍ରଣ ଅସ୍ୱୀକାର କରିବାରୁ ଜଣା ପଡ଼ିଅଛି ।) ଆମ୍ଭେମାନେ ନିଶ୍ଚୟ ରୂପେ କହିପାରୁ, ପ୍ୟାରୀବାବୁ ଯେବେ ବାଲେଶ୍ୱରବାସୀ ହୋଇଥାଆନ୍ତେ ଏବଂ ତାଙ୍କ ଇତିହାସ ଯେବେ ଏଠାକାର କୌଣସି ଯନ୍ତ୍ରାଳୟରେ ମୁଦ୍ରିତ ହୋଇଥାଆନ୍ତା, ତେବେ କୌଣସି ବିବାଦ କି ଗୋଳମାଳ ଘଟି ନ ଥାନ୍ତା; ମଧ୍ୟ କୋହିନୂର ଓ ଭୂତାବେଶ ନାଟକ ବାହାରି ନ ଥା'ନ୍ତା । ଭୂତାବେଶ ନାଟକର ବିବରଣ ବାରାନ୍ତରେ ବକ୍ତବ୍ୟ ।



# କଟକର କର୍ତ୍ତୃତ୍ୱ, ଭାଷା ରାଜନୀତି ଓ ଶବ୍ଦତତ୍ତ୍ୱବୋଧ ଅଭିଧାନ

## ଏକ

୧୯୧୬ ମସିହା, ମାର୍ଚ୍ଚମାସରେ ପ୍ରାୟ ୨୦ ହଜାର ଶବ୍ଦ ବିଶିଷ୍ଟ ଏକ କୋଷଗ୍ରନ୍ଥ ଶବ୍ଦ ତତ୍ତ୍ୱବୋଧ ଅଭିମାନ ନାମରେ ପ୍ରକାଶପାଇଛି । ୧୧୧୫ ପୃଷ୍ଠା ବିଶିଷ୍ଟ ଏହି ସୁଦୃଶ୍ୟ ଗ୍ରନ୍ଥ ବଜାରକୁ ଆସୁଣୁ ନଆସୁଣୁ ଉତ୍କଳ ସାହିତ୍ୟ ସମାଜର ଜନୈକ ସଭ୍ୟ ଆପଣାର ନାମ ଗୋପନ ରଖି ଉତ୍କଳ ଦୀପିକା ସମ୍ବାଦ ପତ୍ରରେ ଘୋର ପ୍ରତିକ୍ରିୟା ପ୍ରକାଶ କରିଛନ୍ତି । ତାଙ୍କ ପତ୍ରଟି ଏହିପରି-

> ଏତେ କାଳରେ ଖଣ୍ଡିଏ ଭଲ ଅଭିଧାନ ହେବ ବୋଲି ଯାହାକୁ ଆଶା କରିଥିଲୁ, ତାହାର ଏ ଶୋଚନୀୟ ଦଶା xx ଏଥିରେ ଶବ୍ଦମାନଙ୍କର ଅର୍ଥ ବିଚିତ୍ର । ଅନେକ ଶବ୍ଦର ଅର୍ଥ ମଧ ଠିକ୍ ହୋଇନାହିଁ । ଅଶ୍ରୁତ, ଅପ୍ରଚଳିତ ଶବ୍ଦ ବହୁଳ ଦେଖାଗଲା । ଅଥଚ ଅନେକ ସୁପ୍ରଚଳିତ ଶବ୍ଦ ଏଥିରେ ନାହିଁ । ଅଧିକ ଆଶ୍ଚର୍ଯ୍ୟର କଥା, ଓଡ଼ିଆ ଭାଷାର ଏହି ଅଭିଧାନରେ ଅନେକ ବଙ୍ଗଳା ଶବ୍ଦ ଓ ଅର୍ଥ ସ୍ଥାନ ପାଇଛି । ଶବ୍ଦ ନିର୍ବାଚନ ଦୋଷ ଓ ପୁନରାବୃତ୍ତିରେ ଏ ପୁସ୍ତକଟି ଅଯଥା ଦୀର୍ଘ ହୋଇଛି । xx ଏପରି ଭ୍ରମ, ପ୍ରମାଦପୂର୍ଣ୍ଣ, ଦୋଷବହୁଳ ଗ୍ରନ୍ଥ ଲାଗି କ'ଣ ଏତେ ଆୟୋଜନ ? ଆମ୍ଭମାନଙ୍କର ଏକାନ୍ତ ଆଶା, ସମାଜ ପକ୍ଷରୁ ଏହାର ଆଲୋଚନା ହୋଇ ଶୁଦ୍ଧି ପରିଶିଷ୍ଟ ବାହାରିବ, ଏହା ନହେଲେ ଏ ପ୍ରକାର ପୁସ୍ତକ ଜନସାଧାରଣରେ ପ୍ରଚାରିତ ହେବା ସମ୍ଭବ ନୁହେଁ । ଅଭିଧାନର ଦାୟିତ୍ୱ ଅଳ୍ପ ନୁହେଁ । ପାଠକ ସାଧାରଣଙ୍କୁ ପୂର୍ବରୁ ଏ ସମ୍ବାଦ ଜଣାଇବା ସଙ୍ଗତି ମନେକରି ଆଜି ଏ ପତ୍ର ଲେଖିଲି ।[୧]

ଏହି ଦୀର୍ଘ ପତ୍ର ମାର୍ଚ୍ଚ ମାସ ୨୮ ତାରିଖରେ ଲେଖାଯାଇଛି । ଏବଂ, ପତ୍ରପ୍ରେରକ (ପଣ୍ଡିତ ମୃତ୍ୟୁଞ୍ଜୟ ରଥ ?) ଏହାର ମୂଲ୍ୟାୟନପାଇଁ ଶିକ୍ଷା ବିଭାଗର କର୍ତ୍ତୃପକ୍ଷଙ୍କୁ ପରାମର୍ଶ ଦେଇଛନ୍ତି ।

ପାରଳାଖେମୁଣ୍ଡିର ଅଧିବାସୀ ଜନୈକ ମଦନମୋହନ ଦାଶ ଅଭିଧାନ ସଂକ୍ରାନ୍ତରେ ପ୍ରକାଶିତ ପତ୍ରର ପ୍ରତିବାଦ କରିଛନ୍ତି । ସେ ଲେଖିଥିବା ପତ୍ର ଦୀପିକାର ଏପ୍ରିଲ୍ ମାସ ଆଠ ତାରିଖରେ ପ୍ରକାଶ ପାଇଛି । ସେ ଲେଖିଛନ୍ତି-

> ଦେଶ ମଧ୍ୟରେ ଯଦି ଏଭଳି ଦୁରାଚାରୀ ଓ ଦୁରାଲୋଚକ ବାହାରନ୍ତି, ଦେଶର ନେତୃସ୍ଥାନୀୟ ପତ୍ରିକା ସମ୍ପାଦକମାନେ ଯଦି ଭଲମନ୍ଦ ବିଚାର ନକରି ସେମାନଙ୍କୁ ପ୍ରଶ୍ରୟ ଦିଅନ୍ତି, ତେବେ ଏ ହତଭାଗ୍ୟ ଦେଶରେ ଅମୃତ କାହିଁକି ବିଷରେ ପରିଣତ ନହେବ ? ବଙ୍ଗ ଶବ୍ଦ ତ ଏହି ଅଭିଧାନରେ ପ୍ରାୟ ନାହିଁ । ତଥାପି କହୁଁ, ସେଭଳି ଶବ୍ଦମାନ ସୁଦ୍ଧା ଅଭିଧାନରେ କ୍ରମବିଶେଷରେ ସ୍ଥାନ ପାଇବା ଉଚିତ୍ । ପ୍ରକୃତ ଅଭିଧାନକର୍ତ୍ତା ଓ ବେତ୍ତାମାନେ ଏହା ସ୍ୱୀକାର କରିବେ ।[୨]

ଦାଶଙ୍କ ପତ୍ରରେ ଉଲ୍ଲିଖିତ କେତୋଟି ଶବ୍ଦ ଅବଶ୍ୟ ପୀଡ଼ାଦାୟକ । ମାତ୍ର ସବୁଠାରୁ କୌତୂହଳର ପ୍ରସଙ୍ଗ, ଦୀପିକାର ସମ୍ପାଦକ ରାୟବାହାଦୂର ଶ୍ରୀଯୁକ୍ତ ସୁଦାମ ଚରଣ ନାୟକ ବେନାମୀ ପତ୍ରପ୍ରେରକଙ୍କ ପକ୍ଷରୁ ଓକିଲାତି କରିଛନ୍ତି । ତାଙ୍କ ନାମ ଘୋଷଣା ନକରି ମଦନମୋହନଙ୍କ ମନ୍ତବ୍ୟକୁ ଭିତ୍ତିହୀନ କହିଛନ୍ତି । ତାଙ୍କ ଭାଷାରେ- "ଅଭିଯୋଗକାରୀ ଯେ ସେ ଜଣେ ନୁହନ୍ତି । ଜଣେ ଗଣନୀୟ ଲେଖକ ଓ ସତ୍‌ସାହିତ୍ୟିକ । ସେ ପ୍ରୋକ୍ତ ଅଭିଧାନ ସମ୍ପର୍କରେ ଯାହା କିଛି ଲେଖିଛନ୍ତି, ନିଜେ ଦେଖି ମତ ଦେଇଛନ୍ତି ଏବଂ ସେ ଆମ୍ଭମାନଙ୍କୁ ଯାଇଁ ମୌଖିକ କହିଲେ, ସେଥିରୁ ମଧ୍ୟ ବୁଝିପାରିଅଛୁ । ସେ ବିଦ୍ୱେଷାଭାବାପନ୍ନ ହୋଇ ଏପରି ଲେଖିଥିବେ, ଏହା ଆମ୍ଭେମାନେ ବିଶ୍ୱାସ କରିପାରୁନାହୁଁ ।"[୩] ସୁଦାମ ବାବୁ ପତ୍ରପ୍ରେରକଙ୍କ ନାମ ପ୍ରକାଶ କରିନଥିଲେ ମଧ୍ୟ ସେହି ବ୍ୟକ୍ତି ଯେ ପଣ୍ଡିତ ମୃତ୍ୟୁଞ୍ଜୟ ରଥ, ଏହା ଅଭିଧାନ ସଂକ୍ରାନ୍ତ ପରବର୍ତ୍ତୀ ଆଲୋଚନାରୁ ଅନୁମିତ ।

ଦୀପିକା ସମ୍ପାଦକଙ୍କ ଉପର୍ଯ୍ୟୁକ୍ତ ମନ୍ତବ୍ୟ ଓଡ଼ିଶାର ସାହିତ୍ୟିକମଣ୍ଡଳୀରେ ଅପ୍ରୀତିକର ପରିସ୍ଥିତି ସୃଷ୍ଟି କରିଛି । ଆଶା ଏବଂ ଓଡ଼ିଆ ଓ ନବସମ୍ବାଦର ସମ୍ପାଦକମାନେ ଦୀପିକା ସହିତ ସାମିଲ୍ ହୋଇଛନ୍ତି । ପରିସ୍ଥିତି ଭିନ୍ନ ରୂପ ନେଇଛି । ପ୍ରତ୍ୟେକ ପଣ୍ଡିତ ନିଜ ନିଜ ବିଚାରର ଗରୁତା ପ୍ରମାଣପାଇଁ ପ୍ରଜ୍ଞା ଓ ସହୃଦୟତା ଉଭୟକୁ ବିସର୍ଜନ କରିଛନ୍ତି । ଏବଂ, ଏଥିପାଇଁ ପତ୍ରିକାର ମାନନୀୟ ସମ୍ପାଦକମାନେ ସେମାନଙ୍କୁ ପ୍ରୋତ୍ସାହିତ କରିଛନ୍ତି । ଅଭିଧାନ ସମ୍ବନ୍ଧରେ ଶେଷ ଲେଖା ପ୍ରକାଶ ପାଇଛି ଦୀପିକା ଓ ଆଶା ପତ୍ରିକାରେ, ଯଥାକ୍ରମେ ଅଗଷ୍ଟ ୧୨ ଓ ସେପ୍‌ଟେମ୍ବର ୨୫ ତାରିଖରେ । ବିବାଦକୁ ଆଉ ଅଧିକ ନ ଫଣ୍ଡଲେଇବା ନିମିତ୍ତ ପ୍ରତ୍ୟେକ ପଣକରିଛନ୍ତି । ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ପ୍ରସଙ୍ଗ ଏହିକି ଯେ, ପଣ୍ଡିତ ନନ୍ଦଙ୍କର ବିଦ୍‌ବତ୍ତାର ଶ୍ରାଦ୍ଧକରୁଥିବା ରାୟବାହାଦୂର ସୁଦାମ ବାବୁ ତାଙ୍କ ପ୍ରଶଂସା କରି ଲେଖିଛନ୍ତି -

> ଏ ମହାଶୟଙ୍କର ଅଧ୍ୟବସାୟ ଧନ୍ୟ । ଆମ୍ଭେମାନେ ଶୁଣୁଅଛୁ, ପଣ୍ଡିତ ମହାଶୟ ଉତ୍କଳ ଭାଷା ଓ ଉତ୍କଳ ସାହିତ୍ୟର ଇତିହାସ ଲେଖିପାପାଇଁ ଉଦ୍‌ଯୋଗ କରୁଅଛନ୍ତି । ଏହି ଦୁଇଗୋଟି ବିଷୟ ଯେ ଉତ୍କଳ ସାହିତ୍ୟ କ୍ଷେତ୍ରରେ ଅତ୍ୟାବଶ୍ୟକ, ପୁଣି ଲିଖିତ ହେଲେ ଯେ ଉତ୍କଳ ସାହିତ୍ୟର ଅଭାବ ଘୁଞ୍ଚିବ, ଏମନ୍ତ ନୁହଇ, ଗୌରବ

ମଧ୍ୟ ବଢ଼ିବ । ଆମ୍ଭେମାନେ ଯେତେଦୂର ଜାଣୁ ନନ୍ଦ ଆପଣେ ଏ ଅଭାବ ପୂରଣ କରିବାକୁ ସକ୍ଷମ ।[୪]

ଏପ୍ରିଲ୍ ୧ତାରିଖରୁ ଜୁନ୍ ୯ତାରିଖ, ଏହି ସ୍ୱଳ୍ପ ସମୟସୀମା ମଧ୍ୟରେ ସୁଦାମ ବାବୁ ପଣ୍ଡିତ ନନ୍ଦଙ୍କ ସମ୍ପର୍କରେ ଆପଣାର ମନ୍ତବ୍ୟ ପରିବର୍ତ୍ତନ କଲେ କ'ଣ ପାଇଁ ? ଜୁନ୍ ମାସ ୯ ତାରିଖ ପୂର୍ବରୁ ସେ ଯାହାସବୁ ପ୍ରକାଶ କରୁଥିଲେ, ତାହା କ'ଣ ତାଙ୍କ ବିବେକ ଓ ପାଣ୍ଡିତ୍ୟର ଅଭିବ୍ୟକ୍ତି ନଥିଲା ? ସେ କ'ଣ ପଣ୍ଡିତଙ୍କ ବ୍ୟକ୍ତିତ୍ୱକୁ ଠିକ୍ ଭାବରେ ବୁଝିପାରି ନଥିଲେ, ଅଥବା ଅନ୍ୟ କେତେକଙ୍କଦ୍ୱାରା ପ୍ରରୋଚିତ ହୋଇ ଏକ ଭ୍ରାନ୍ତ ଉତ୍ସାହରେ ସମର ଭୂମିକୁ ଡେଇଁ ପଡ଼ିଥିଲେ ?

ମୋର ଯାହା ମନେହୁଏ, ସୁଦାମବାବୁଙ୍କ ଶେଷ ମନ୍ତବ୍ୟ ଛଳନାମୁକ୍ତ । ପଣ୍ଡିତ ମହାଶୟଙ୍କ ଉଦାରତାକୁ ସେ ବୁଝିପାରିଛନ୍ତି । ତେଣୁ ପ୍ରାୟ ତିନିମାସ ଅବଧି ମଧ୍ୟରେ ଦୀପିକା ପୃଷ୍ଠାରେ ଯାହା ସବୁ ପ୍ରକାଶପାଇଛି, ତାହା ମୂଳରେ ସମକାଳୀନ ଓଡ଼ିଆ ସାହିତ୍ୟର ନେତୃତ୍ୱ ନେଉଛନ୍ତି ବୋଲି ଦାବିକରୁଥିବା ଏକ ଶକ୍ତିଶାଳୀ ଗୋଷ୍ଠୀର ଭୂମିକା ସେ ସକ୍ରିୟ ରହିଛି- ଏକଥା ଅସ୍ୱୀକାର କରାଯାଇ ନପାରେ । ସମ୍ଭବତଃ ସୁଦାମବାବୁ, ପ୍ରଥମେ ବିଦ୍ୱାନମାନଙ୍କ ଅହଂକାରକୁ ସମୁଝି ପାରିନାହାନ୍ତି । ଏବଂ, ପରେ, ଏଥିପାଇଁ ମଲା ସାପ ବେକରେ ପକାଇ ସତ୍ୟ ସ୍ୱୀକାର କରିବାକୁ ଉଚିତ୍ ମଣିଛନ୍ତି ।

ଶବ୍ଦତତ୍ତ୍ୱବୋଧ ଅଭିଧାନ ଏକ ଭାଷାଗ୍ରନ୍ଥ । ମାତ୍ର ଏହି ଗ୍ରନ୍ଥକୈନ୍ଦ୍ରିକ କଳହକୁ ଆଧାର କରି, ଆପଣାପାଇଁ ଏକ ନିର୍ଦ୍ଦିଷ୍ଟ ରାଜନୀତିକ ଆୟତନ ଦାବି କରୁଥିବା ନେତୃସ୍ଥାନୀୟମାନଙ୍କ ଅଞ୍ଚଳକୈନ୍ଦ୍ରିକ କର୍ତ୍ତୃତ୍ୱବୋଧ, ଆତ୍ମମ୍ଭରିତା ଓ ଛଳପାଣ୍ଡିତ୍ୟର ସ୍ୱରୂପକୁ ଆକଳନ କରିପାରିବା ।

## ଦୁଇ

ପଣ୍ଡିତ ଗୋପୀନାଥ ନନ୍ଦଶର୍ମା ପାରଳାଖେମୁଣ୍ଡିର ଅଧିବାସୀ, ଜନ୍ମ ୧୮୬୯ ମସିହା ଅଗଷ୍ଟମାସ ବାର ତାରିଖ । ତାଙ୍କ ପୂର୍ବ ପୁରୁଷ ଥିଲେ ପୁରୀର ବୀରଭଦ୍ରପୁର ଶାସନର ବାସିନ୍ଦା । ସମ୍ଭବତଃ ଅଷ୍ଟାଦଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ପାରଳା ମହାରାଜାଙ୍କ ପୃଷ୍ଠପୋଷକତା ସେମାନଙ୍କୁ ନୂତନ ଭୂମିକୁ ଆଦରି ନେବାର ସୁଯୋଗଦେଇଛି । ନନ୍ଦ ମହାଶୟ ପ୍ରଥମେ ଚାଟଶାଳୀ ଏବଂ ପରେ ୧୮୮୨ରୁ ୧୮୮୬ ମସିହା ପର୍ଯ୍ୟନ୍ତ ମଧ୍ୟ-ଇଂରାଜୀ ବିଦ୍ୟାଳୟରେ ପଢ଼ିଛନ୍ତି । ପାରଳାଖେମୁଣ୍ଡି ତେଲୁଗୁ ଅଧ୍ୟୁଷିତ, ଏବଂ ତେଲୁଗୁ ଭାଷା ବିଦ୍ୟାଳୟରେ ବାଧ୍ୟତାମୂଳକ ଥିବାରୁ, ସେ ଏହି ଭାଷା ଓ ସାହିତ୍ୟ ପଢ଼ିଛନ୍ତି । ଏତଦ୍‌ବ୍ୟତୀତ ସଂସ୍କୃତ, ପ୍ରାକୃତ, ବଙ୍ଗଳା, ହିନ୍ଦୀ ଭାଷା ଓ ସାହିତ୍ୟରେ ମଧ୍ୟ ବ୍ୟୁତ୍ପତ୍ତିଲାଭ କରିଛନ୍ତି । ସେ ଇଂରାଜୀ ଅବଶ୍ୟ ପଢ଼ିଛନ୍ତି, ମାତ୍ର ଅନ୍ୟ ଭାଷାଗୁଡ଼ିକ ପରି ଏହି ବିଦେଶୀ ଭାଷା- ଅବଗାହୀ ହୋଇପାରି ନାହାନ୍ତି । ତାଙ୍କ ବ୍ୟକ୍ତିତ୍ୱର ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ବିଭବ, ଜଣେ ପଣ୍ଡିତ ଭାବରେ ସେ କୌଣସି ସରକାରୀ କିମ୍ବା ବେସରକାରୀ ଶିକ୍ଷାନୁଷ୍ଠାନରୁ ପ୍ରମାଣପତ୍ର ହାସଲ କରିପାରିନାହାନ୍ତି । ଘରେ ବାପାଙ୍କ ପାଖରେ ପଢ଼ିଛନ୍ତି ଏବଂ ଗଭୀର ଶ୍ରଦ୍ଧା ଓ ଅଧ୍ୟବସାୟଯୋଗୁଁ ବିଦ୍ୟାମାନଙ୍କୁ ସାଧନ କରିବାରେ ସମର୍ଥ ହୋଇଛନ୍ତି । ସମକାଳୀନ ବିଦ୍ୱତ୍‌ମଣ୍ଡଳୀରେ ବେଶ୍ ସ୍ୱତନ୍ତ୍ର ଦିଶିଛନ୍ତି ଏବଂ ସେଥିଯୋଗୁଁ ରାଜାଙ୍କ ପ୍ରତିଷ୍ଠିତ ରାଜ୍ କଲେଜରେ ଅଧ୍ୟାପନା (୧୯୧୦-

୧୯୧୮) କରିବାର ସୁଯୋଗ ମଧ୍ୟ ପାଇଛନ୍ତି ।[୫] ଶ୍ୟାମସୁନ୍ଦର ରାଜଗୁରୁ, ଗୋପୀନାଥ ନନ୍ଦଶର୍ମାଙ୍କ ସାଧନା ଏବଂ ଗଜପତିମାନଙ୍କ ପୃଷ୍ଠପୋଷକତା ଲାଭକରି ପାରଳାଖେମୁଣ୍ଡି ଓଡ଼ିଆ ଭାଷା, ସାହିତ୍ୟ ଓ ସଂସ୍କୃତି ଚର୍ଚ୍ଚାର ଅନ୍ୟତମ ପୀଠ ହୋଇପାରିଛି । ପଣ୍ଡିତ ନନ୍ଦ କିନ୍ତୁ ଅଧିକ କାଳ ବଞ୍ଚିନାହାନ୍ତି । ମାତ୍ର ଚଉବନ ବର୍ଷ ବୟସରେ,୧୯୨୪ ମସିହା ଜାନୁଆରି ମାସ ଚଉଦ ତାରିଖରେ ଶେଷ ନିଃଶ୍ୱାସ ତ୍ୟାଗ କରିଛନ୍ତି ।

ଏହା ସ୍ୱୀକୃତ ଯେ, ଓଡ଼ିଶାର ପ୍ରାଚୀନ କବିମାନଙ୍କ ଜୀବନୀ ଓ ସାହିତ୍ୟ ଏବଂ ଭାଷା ଓ ବ୍ୟାକରଣ ଚର୍ଚ୍ଚାର ଭିତ୍ତିଭୂମି ପ୍ରତିଷ୍ଠା କରିଛନ୍ତି ଶ୍ୟାମ ସୁନ୍ଦର ରାଜଗୁରୁ । ପରବର୍ତ୍ତୀ କାଳରେ ରାଜଗୁରୁଙ୍କ ବିଚାରକୁ ପରିପୁଷ୍ଟ କରିବାରେ ଗୋପୀନାଥ ହିଁ ଶ୍ରଦ୍ଧାଶୀଳ ହୋଇଛନ୍ତି । ଓଡ଼ିଆ ଭାଷାର ପ୍ରାଚୀନତା ଓ ପ୍ରାଚୀନ କବିମାନଙ୍କ ବୈଶିଷ୍ଟ୍ୟ ପ୍ରତିପାଦନ ଉଦ୍ଦେଶ୍ୟରେ ସେ ସଂସ୍କୃତ ଗ୍ରନ୍ଥଗୁଡ଼ିକର ଅଧ୍ୟୟନ ଓ ଅନୁଶୀଳନ କରିଛନ୍ତି । ସମକାଳରେ ଉପଲବ୍ଧ ସାରଳା ଦାସଙ୍କ ମହାଭାରତ, ବଳରାମ ଦାସଙ୍କ ଦାଣ୍ଡୀ ରାମାୟଣ ଓ ଜଗନ୍ନାଥ ଦାସଙ୍କ ଭାଗବତ ତାଙ୍କ ବିଶ୍ଳେଷଣର ଆକରଗ୍ରନ୍ଥ ହୋଇଛି । ତାଙ୍କ ପାଣ୍ଡିତ୍ୟ, ପ୍ରତିଭା ଓ ଅଧ୍ୟବସାୟରୁ ଜନ୍ମ ନେଇଛି ମହାଭାରତ, ଦାଣ୍ଡୀ ରାମାୟଣ ଓ ଭାଗବତ ସଂକ୍ରାନ୍ତ ଆଲୋଚନା । ଉତ୍କଳସାହିତ୍ୟ, ମୁକୁର ଓ ସତ୍ୟବାଦୀ ସାହିତ୍ୟ ପତ୍ରିକାର ସମ୍ପାଦକମାନେ ତାଙ୍କୁ ପ୍ରକାଶିତ ହେବାର ସୁଯୋଗ ଦେଇଛନ୍ତି । ଓଡ଼ିଶାରେ ତୁଳନାତ୍ମକ ସାହିତ୍ୟ-ସମୀକ୍ଷାର ଭିତ୍ତିଭୂମି ତାଙ୍କରିଦ୍ୱାରା ହିଁ ସମାର୍ଜିତ ହୋଇଛି ।

ସଂସ୍କୃତ, ପ୍ରାକୃତ ଓ ଦେଶୀୟ ସାହିତ୍ୟର ଅଧ୍ୟୟନ, ସମ୍ଭବତଃ ପଣ୍ଡିତ ମହାଶୟଙ୍କୁ ଓଡ଼ିଆ ଭାଷାର ଉତ୍ପତ୍ତି ଓ ବିକାଶକ୍ରମର ବୈଚିତ୍ର୍ୟ ଭେଦିବାପାଇଁ ପ୍ରଚୋଦିତ କରିଛି । ପ୍ରାୟ ତିରିଶ ବର୍ଷ ବୟସ ବେଳକୁ ସେ ଓଡ଼ିଆ ଭାଷାରେ କୋଷଗ୍ରନ୍ଥ ସଂକଳନ ପରି ଏକ ଆୟାସସାଧ,ବିପଜ୍ଜନକ ଅଥଚ ପ୍ରୀତିକର (ହାର୍ମଲେସ୍ ଡ୍ରଜେରି) କାର୍ଯ୍ୟରେ ମନୋନିବେଶ କରିଛନ୍ତି । ଜଣେ ଦକ୍ଷିଣୀ ତରୁଣର ମେଧା ଓ ଆତ୍ମବଳ;ସମକାଳୀନ ଓଡ଼ିଆ ଭାଷା, ସାହିତ୍ୟ ଓ ସଂସ୍କୃତିର ତରୁଣ ଓ ବୟସ୍କ ଗାଦିନାସୀନମାନଙ୍କ ଗାତ୍ରଦାହର ହେତୁ ହୋଇଛି । ଏବଂ, ପରବର୍ତ୍ତୀ କାଳରେ ଶ୍ରୀଯୁକ୍ତ ରାଜଗୁରୁ ଆରମ୍ଭ କରିଥିବା ଓଡ଼ିଆ ବ୍ୟାକରଣ ଚର୍ଚ୍ଚା ତାଙ୍କରି ହାତରେ ହିଁ ପାକଳ ହୋଇଛି ।[୬] ଓଡ଼ିଆ କାରକ, ବିଭକ୍ତି, କୃଦନ୍ତ ଓ କ୍ରିୟାପଦଗୁଡ଼ିକର ସେ ବିଶେଷ ଅଧ୍ୟୟନ କରିଛନ୍ତି । ମୃତ୍ୟୁପରେ ତାଙ୍କ ଭାଷା-ଅଧ୍ୟୟନ ଓଡ଼ିଆ ଭାଷାତତ୍ତ୍ୱ ଶୀର୍ଷକ ଗ୍ରନ୍ଥ ୧୯୨୭ ମସିହାରେ ପ୍ରକାଶିତ ହୋଇଛି । ଏହି ଗ୍ରନ୍ଥ ପ୍ରକାଶନରେ ପ୍ରମୁଖ ଭୂମିକା ନେଇଛନ୍ତି ବଳଭଦ୍ର ନନ୍ଦଶର୍ମା । ମାତ୍ର ତାଙ୍କ ପ୍ରଜ୍ଞା ଓ ସାଧନା ସମକାଳୀନ ଓଡ଼ିଶାର ନେତୃସ୍ଥାନୀୟମାନଙ୍କ ପ୍ରତି ଯେ ଏକ ଆହ୍ୱାନ ଥିଲା- ଶବ୍ଦତତ୍ତ୍ୱବୋଧ ଅଭିଧାନ୍ ଗ୍ରନ୍ଥକୈନ୍ଦ୍ରିକ କୋଳାହଳ, ଓଡ଼ିଆ ଭାଷା ଓ ସାହିତ୍ୟ ଅଧ୍ୟୟନ ଇତିହାସରେ ଏହି ଅସୁସ୍ଥ ପରମ୍ପରାର ଉଦାହରଣ ।

## ତିନି

ପଣ୍ଡିତ ଗୋପୀନାଥ ପ୍ରାୟ ୧୯୯୫-୯୬ ମସିହା ବେଳକୁ ଓଡ଼ିଆ ଭାଷାର ଏକ ଶବ୍ଦକୋଷର ଅଭାବ ଅନୁଭବ କରିଛନ୍ତି । ଜଣେ ତରୁଣର ଏଇ ଅନୁଭବକୁ ଆକସ୍ମିକ ଅଥବା ଅହେତୁକ କୁହାଯାଇନପାରେ । ଆମସ ସଟନ୍, ଡବ୍ଲ୍ୟୁ ମିଲର, ବ୍ରୁକ୍ସ୍, ଚତୁର୍ଭୁଜ ପଟ୍ଟନାୟକ

ଏବଂ ଜଗନ୍ନାଥ ରାଓ ପ୍ରମୁଖ ସଂକଳିତ ଓ ପ୍ରକାଶିତ କୋଷଗ୍ରନ୍ଥଗୁଡ଼ିକ ତାଙ୍କ ଆଖିରେ ପଡ଼ିଥିବ । ସେ ସେଗୁଡ଼ିକୁ ପଢ଼ିଥିବେ, ପରଖିଥିବେ । ଏବଂ, ଏହି ବିଶେଷ ପରୀକ୍ଷଣ ହିଁ ତାଙ୍କୁ ଜାତିର ଅଭାବ ସଂପର୍କରେ ସଚେତନ କରି ଦେଇଥିବ । ଶ୍ୟାମ ସୁନ୍ଦର ରାଜଗୁରୁ ତାଙ୍କ ଅବବୋଧରେ ଭାଷାଚର୍ଚ୍ଚାର ଏହି ବିଶେଷ ରୀତିର ପ୍ରଚୋଦକ ।

କେଉଁ ଅଞ୍ଚଳର ଭାଷା ଓଡ଼ିଆ ଏବଂ ସାହିତ୍ୟର ଭାଷା ହେବା ଆବଶ୍ୟକ, ଊନବିଂଶ ଶତାବ୍ଦୀରେ ଜନ୍ମ ନେଇଥିବା ବିତର୍କ, ଯଥାର୍ଥତଃ ବିଂଶ ଶତାବ୍ଦୀର ପ୍ରଥମ ଦଶକରେ ଘନ ହୋଇଛି । ୧୯୦୨ ମସିହାରେ ପଦ୍ମନାଭ ଦେବଙ୍କ ପ୍ରହ୍ଲାଦ ଓ ୧୯୦୬ ମସିହାରେ ଗୌରଚନ୍ଦ୍ର ନାରାୟଣ ଦେବଙ୍କ ଧ୍ରୁବ ନାଟକ ପ୍ରକାଶପାଇଛି ଏବଂ ପୁସ୍ତକ ଦୁଇଟିର ସମୀକ୍ଷା କରିଛନ୍ତି ଯଥାକ୍ରମେ ଦୀପିକା ଓ ଉତ୍କଳ ସାହିତ୍ୟର ସମ୍ପାଦକମାନେ ।[୭] ଶ୍ୟାମସୁନ୍ଦର ଉଭୟ ସମ୍ପାଦକଙ୍କର ବିଚାରର ପ୍ରତିବାଦ କରିଛନ୍ତି । ସେମାନଙ୍କ ମନ୍ତବ୍ୟ ଓଡ଼ିଆ ସାହିତ୍ୟର ବାତାବରଣକୁ ବେଶ କିଛି କାଳ ଧରି ଉଷ୍ଣକରି ରଖିଛି ।[୮] ଗୌରୀଶଙ୍କର ପ୍ରହ୍ଲାଦ ନାଟକର ସଙ୍ଗୀତ, ଭାଷା ଓ ବାକ୍ୟଗଠନ ଶୈଳୀ ପ୍ରତି ଆଙ୍ଗୁଳି ନିର୍ଦ୍ଦେଶ କରିଥିବାରୁ, ଶ୍ୟାମସୁନ୍ଦର ଏହାର ଉତ୍ତରରେ ଲେଖିଛନ୍ତି,

> ଅମୁକ ଭାଷା ଦୋଷ ସଂଲଗ୍ନ, ଅମୁକ ଭାଷା ଦୋଷ ସହିତ, ଏହା ଜାଣିବା ସକାଶେ ଆପଣମାନେ କି ନିୟମ କରିଛନ୍ତି ? ନା, ଆପଣମାନେ ମନେ କରିଛନ୍ତି କଟକ ଓଡ଼ିଆ ମାତ୍ର ବିଶୁଦ୍ଧ ଓଡ଼ିଆ, ଓ ଅନ୍ୟାନ୍ୟ ଅଞ୍ଚଳର ଓଡ଼ିଆ ଓଡ଼ିଆ ନୁହେଁ । xx ଯଦି ଆପଣ କଟକ ଓଡ଼ିଆ ଆଦର୍ଶ ମନେକରି ଦକ୍ଷିଣ ଓଡ଼ିଆକୁ ଦୋଷ ତଳେ ଗଣନା କରିଛନ୍ତି, ତେବେ ଏହା କେବଳ ଭ୍ରମ । xx ଯେଉଁ ଭାଷାରେ ଆପଣ ପୁସ୍ତକାଦି ଲେଖିଛନ୍ତି ଓ ଲେଖନ୍ତି, ତାହା ସାଧାରଣତଃ ପ୍ରକୃତ ଓଡ଼ିଆ ନୁହେଁ । ଓଡ଼ିଆ ଭାଷା କେବଳ ସଂସ୍କୃତର ଅପଭ୍ରଂଶ,ଏହି ଭ୍ରମରେ ପଡ଼ି ଆପଣମାନଙ୍କ ଅଭିଧାନ ସଂସ୍କୃତ । ଅନ୍ତତଃ ମାତୃଭାଷା ପ୍ରତି ଆପଣମାନଙ୍କ ଦୃଷ୍ଟି ଏତେ ହୀନ ଯେ ଯଦି କେତେକ କ୍ରିୟା ଓ କାରକର ପ୍ରତିବନ୍ଧକ ନଥା'ନ୍ତା, ଆଜିକାଲି ଆପଣଙ୍କ କୃତବିଦ୍ୟମଣ୍ଡଳୀରେ ଓଡ଼ିଆ ଭାଷା ଶୁଣିବାକୁ ଥାଆନ୍ତା କି ନାହିଁ ସନ୍ଦେହ ।[୮]
> **ପୁନଶ୍ଚ ସେହି ବର୍ଷ ଦୀପିକାର ଅଗଷ୍ଟ ମାସ ୨ତାରିଖ ସଂଖ୍ୟାରେ ସେ ଲେଖିଛନ୍ତି,**
> ଭଲ ଓଡ଼ିଆ ଭାଷା ଜାଣିବା ସକାଶେ ଏହି ଦକ୍ଷିଣୀ କବିମାନଙ୍କର ଗ୍ରନ୍ଥ ଆଲୋଚନା କରିବାକୁ ପରା ଆପଣ ଆମ୍ଭମାନଙ୍କୁ ଅନୁରୋଧ କରିଛନ୍ତି । ତେବେ ଦକ୍ଷିଣୀ ଓଡ଼ିଆ ପ୍ରକୃତ ଓଡ଼ିଆ ନହେଲା କିପରି ? ଜନସାଧାରଣ ଯେପରି କଥାବାର୍ତ୍ତା କରନ୍ତି, ସେହିପରି ଲେଖିବାର ଲଜ୍ଜ୍ୟାକର ନୁହେଁ, xx ବର୍ତ୍ତମାନ ଜାତୀୟ ଭାଷା କେବଳ ଜନସାଧାରଣଙ୍କ ମୁଖରୁ ଶୁଣିବାକୁ ମିଳେ ।[୯]

ରାଜଗୁରୁ ଓଡ଼ିଆ ଭାଷାରେ ଅଭିଧାନ ନଥିବା କଥା, ପୁନଶ୍ଚ ବିଶ୍ୱନାଥ କରଙ୍କଦ୍ୱାରା ଆଲୋଚିତ ଧ୍ରୁବ ନାଟକ ପ୍ରସଙ୍ଗରେ ଉତ୍‌ଥାପନ କରିଛନ୍ତି । କରଙ୍କ ମନ୍ତବ୍ୟ : 'ଏହି ପୁସ୍ତକରେ ପ୍ରାଦେଶିକତା ଅତ୍ୟନ୍ତ ଅଧିକ. । ଗ୍ରନ୍ଥାକାର ଭବିଷ୍ୟତରେ ଏ ସବୁ ତ୍ରୁଟି ପରିହାର କରିବାକୁ ଯତ୍ନ କରିବେ'[୧୦] ଶ୍ରୀରାଜଗୁରୁଙ୍କୁ ମୁଖର କରିଛି । ଏକ ଜାତୀୟ ଭାଷାରେ 'ପ୍ରାଦେଶିକତା' ଶବ୍ଦର

ଭ୍ରମାତ୍ମକ ପ୍ରୟୋଗ ତାଙ୍କ ମୁଖରତାର କାରଣ ହୋଇଛି । ସାମନ୍ତମାନଙ୍କ ଭାଷା କୃତ୍ରିମ, ଭାବପ୍ରକାଶର ବାଧକ ଏବଂ ଲୋକମାନଙ୍କର ଭାଷା ଜୀବନ୍ତ, ଗତିଶୀଳ ଓ ଭାବ ଉଦ୍‌ବୋଧକ- ଏହା ପ୍ରମାଣ କରିବାପାଇଁ ସେ ମାକ୍ସ୍‌ମୁଲାରଙ୍କ ସାଇନ୍‌ସ୍ ଅଫ୍ ଲାଙ୍ଗୁଏଜ୍ ଏବଂ ଉଇଟ୍‌ନେଙ୍କ ଲାଇଫ୍ ଏଣ୍ଡ ଗ୍ରୋଥ୍ ଅଫ୍ ଲାଙ୍ଗୁଏଜ୍ ଗ୍ରନ୍ଥ ଦୁଇଟିର ବହୁ ଅଂଶ ଉଦ୍ଧାର କରିଛନ୍ତି । ତାଙ୍କ ଭାଷାରେ

> ଗ୍ରୀସ୍, ରୋମ୍, ଭାରତବର୍ଷ, ଫ୍ରାନ୍‌ସ୍, ସ୍ପେନ୍ ଓ ଇଟାଲି ଇତ୍ୟାଦି ଦେଶମାନଙ୍କରେ ଆମେ ଯାହାକୁ ଭାଷା କହୁ, ତାହା କୃତ୍ରିମ ଭାଷା । ଭାଷାର ପ୍ରକୃତ ପ୍ରାଣ କେବଳ ପ୍ରାଦେଶିକତା । ଏହା ପ୍ରମାଣସିଦ୍ଧ ନହେଲେ କି କାଳି ଅଞ୍ଚଳର ନବ୍ୟ ଶିକ୍ଷିତ ଉତ୍କଳ ସାମନ୍ତମାନେ ମାତୃଭାଷା ପ୍ରାୟ ଭୁଲିଯାଇଥାନ୍ତେ । xx ଭାଷା ଓ ପ୍ରାଦେଶିକତା ମଧ୍ୟରେ କୌଣସି ପ୍ରଭେଦ ନାହିଁ । ପୃଥିବୀରେ ଏପରି କୌଣସି ଭାଷା ନାହିଁ ଯାହାକୁ ଆମେ ପ୍ରାଦେଶିକତା କହିନପାରିବା । xxx ପ୍ରାଦେଶିକତା ଦୋଷରେ ଗଣ୍ୟ ନୁହେଁ । ବରଂ ପୁସ୍ତକରେ ଯେତେ ଅଧିକ ପରିମାଣରେ ବ୍ୟବହୃତ ହେବ, ତେତେ ବାଞ୍ଛନୀୟ ।[୧୧]

ରାଜଗୁରୁଙ୍କ ଆକ୍ଷେପର ଉତ୍ତର ଦେବାକୁ ଯାଇ ବିଶ୍ୱନାଥ କର ସାହିତ୍ୟର ଆତ୍ମଗୌରବ ପ୍ରତିଷ୍ଠା ଉଦ୍ଦେଶ୍ୟରେ ଲେଖକମାନେ ଆପଣା ଅଞ୍ଚଳର ଭାଷା ପ୍ରୟୋଗକୁ ଦୂଷଣୀୟ କହିବା ସହିତ ଜଣେ ଉପଦେଶକର ଭୂମିକା ନେଇ ରାଜଗୁରୁଙ୍କୁ ପ୍ରଶ୍ନ କରିଛନ୍ତି-

> ଲିଖିତ ଭାଷାର ଗୋଟାଏ ଆଦର୍ଶ ରହିବା ଉଚିତ ନୁହେଁ କି ? ତେବେ କାହାକୁ ଆଦର୍ଶ କହିବା ? ଆମ୍ଭମାନଙ୍କ ମତରେ ସର୍ବାଞ୍ଚଳ ପ୍ରଚଳିତ ଓ ସର୍ବଜନବୋଧ ବିଶୁଦ୍ଧ ଓଡ଼ିଆ ଗ୍ରାମ୍ୟ କଥା ଓ idioms ରକ୍ଷା କରି ଅଧିକ ପରିମାଣରେ ସଂସ୍କୃତମୂଳକ ସହଜ ଶବ୍ଦମାନ ବ୍ୟବହାର କଲେ, କାହାର କୌଣସି ଆପତ୍ତି ରହିବ ନାହିଁ । ଯାହା ସମ୍ପୂର୍ଣ୍ଣରୂପେ ସ୍ଥାନୀୟ ଓ ବିକାରପ୍ରାପ୍ତ, ତାହା ସର୍ବଥା ବର୍ଜ୍ଜନୀୟ । ଗଂଜାମ ଅଞ୍ଚଳର ଓଡ଼ିଆ ଭାଷା ବିକୃତ ଅବସ୍ଥା ପ୍ରାପ୍ତ ହୋଇଅଛି, ଏକଥା କ'ଣ ସେ ଅସ୍ୱୀକାର କରନ୍ତି ? ଭାଷା କାହିଁକି, ଓଡ଼ିଆ ଅକ୍ଷରର ମଧ୍ୟ କିଞ୍ଚିତ ଅପବ୍ୟବହାର ଘଟିଅଛି । ତେବେ ଆହାକୁ ଆଦର୍ଶ କହିବା ?[୧୨]

ଭାଷା ସଂକ୍ରାନ୍ତରେ ବିଶ୍ୱନାଥଙ୍କ ମନ୍ତବ୍ୟ ଯେ ପ୍ରମାଦପୂର୍ଣ୍ଣ, ତାହା ରାଜଗୁରୁଙ୍କ ପ୍ରତିବାଦ ପତ୍ରରେ ସୁସ୍ପଷ୍ଟ । ତାଙ୍କ ଭାଷାରେ

> କୌଣସି ଏକ ପ୍ରଦେଶରେ ଯେଉଁ ଭାଷା ପ୍ରାୟ ସକଳ ଶ୍ରେଣୀର ଲୋକମାନଙ୍କ ଦ୍ୱାରା ବ୍ୟବହୃତ ହୋଇଥାଏ ଏବଂ ଅନ୍ୟାନ୍ୟ ପ୍ରଦେଶରେ ବ୍ୟବହୃତ ହେଲେ ସହଜରେ ବୁଝାପଡ଼େ ନାହିଁ, ତାହା ପ୍ରାଦେଶିକ ବା (Provincialism) ନିମ୍ନଶ୍ରେଣୀର ଲୋକମାନ କଥା vulgarism । ଅପଭ୍ରଂଶ (corruption) ପ୍ରାଦେଶିକତା ନୁହେଁ । ଉଦାହରଣସ୍ୱରୂପ 'ଓଡ଼ିଶାର ବିଭିନ୍ନ ଅଞ୍ଚଳରେ ଥିବା ଲୋକମାନଙ୍କଦ୍ୱାରା ଭିନ୍ନ ଭିନ୍ନ ବାଗରେ କଥିତ- କୋଆଡେ > କୁଆଡ଼େ,

ହେଇଟି > ହେଟି, କୋଉଠୁ > କୌଠୁ >କେଉଁଠୁ ଆଦି ଶବ୍ଦ ପ୍ରାଦେଶିକ ନୁହେଁ । ଯେଉଁ ଭାଷାରେ ଅଭିଧାନ ଆଜି ପର୍ଯ୍ୟନ୍ତ ସଂକଳିତ ହୋଇ ନାହିଁ, ଯେଉଁ ଭାଷାର ଆଦର୍ଶ ଗଠିତ ହୋଇନାହିଁ, ସେହି ଭାଷାର ସର୍ବାଞ୍ଚଳ ପ୍ରଚଳିତ ଓ ସର୍ବତନବୋଧ ବିଶୁଦ୍ଧକତା ବା idioms କିପରି ଜଣାଯିବ ? ସଂସ୍କୃତମୂଳକ ସହଜ ଶବ୍ଦମାନ ବ୍ୟବହାର କଲେ ସାଧାରଣ ଲୋକ ବୁଝିପାରିବେ କି ?' ବୋଲି ଅତ୍ୟନ୍ତ କ୍ଷୋଭର ସହିତ ସେ କହିଛନ୍ତି ।[୧୩]

ରାଜଗୁରୁଙ୍କ ଏହି ବିଚାରର ଉତ୍ତର ଦେବା ବିଶ୍ୱନାଥଙ୍କ ପକ୍ଷେ ସମ୍ଭବ ହୋଇନାହିଁ । ବରଂ ରାଜଗୁରୁ ନିର୍ଭୀକ ଭାବରେ ରାଧାନାଥ ରାୟ ଓ ମଧୁସୂଦନ ରାଓଙ୍କ ଗଦ୍ୟ ଶୈଳୀ ସମ୍ପର୍କରେ ଅପ୍ରୀତିକର ମନ୍ତବ୍ୟ ଦେଇଛନ୍ତି । ଜାତୀୟ ସାହିତ୍ୟର ଭୂୟୋବିକାଶର ପ୍ରତିବନ୍ଧକ ରୂପରେ ସେ ସମକାଳୀନ ଦୁଇ ପ୍ରତିପତ୍ତିଶାଳୀ ପଦାଧିକାରୀଙ୍କୁ ଦାୟୀ କରିଛନ୍ତି । ତାଙ୍କ ଭାଷାରେ

ଗତ ଶତାବ୍ଦୀରେ ବାମଣ୍ଡାର ବାସୁଦେବ ସୁଢ଼ଳ ଦେବଙ୍କ ଆନୁକୂଲ୍ୟରେ ମଧୁ ରାଧାନାଥ ପ୍ରଭୃତି ଯେଉଁ ବିଜୁଳି ନୂତନ ଯୁଗର ପ୍ରବର୍ତ୍ତନ କରିଥିଲେ ତହିଁରେ ଏକ ପ୍ରକାର ଜାତୀୟ ଭାଷା ଓ ସାହିତ୍ୟର ବିକାଶ ନାନା କାରଣରୁ ଅବିଚ୍ଛିନ୍ନ ହୋଇ ପଡ଼ିଥିଲା । ପରେ ସେହି ରୀତିରେ ରଚିତ ସାହିତ୍ୟକୁ ରାଧାନାଥ ଓ ମଧୁସୂଦନ ଲୋକରୁଚିର ବିରୋଧରେ ଶିକ୍ଷା ବିଭାଗର କର୍ତ୍ତାରୂପେ ଔଷଧ ସେବନ ବିଧିରେ ଦେଶରେ ଭର୍ତ୍ତି କଲେ । ତେଣୁ ପ୍ରବର୍ତ୍ତକମାନଙ୍କର ସାଧୁ ଉଦ୍ୟମ ସତ୍ତ୍ୱେ ଜାତୀୟ ତଥା ଭାଷାର ଭୂୟୋବିକାଶ ହ୍ରସ୍ୱ ହେଲା ।[୧୪]

ରାଜଗୁରୁଙ୍କ ଏହି ମନ୍ତବ୍ୟ ଓଡ଼ିଆ ଭାଷା ଓ ସାହିତ୍ୟର ଇତିହାସରେ କିଛି କମ୍ ଗୁରୁତ୍ୱପୂର୍ଣ୍ଣ ନୁହେଁ । ମାତ୍ର ଯଥାର୍ଥତଃ ଊନବିଂଶ ଶତାବ୍ଦୀରେ ରାଧାନାଥ ଓ ମଧୁସୂଦନ ଯେ ଓଡ଼ିଆ ଭାଷାର ତ୍ରାଣକର୍ତ୍ତା ଓ ଆଧୁନିକ ଗଦ୍ୟଶୈଳୀର ପ୍ରବକ୍ତା, ଶିକ୍ଷିତମଣ୍ଡଳୀରେ ଅନୁରୂପ ବିଶ୍ୱାସ ସୃଷ୍ଟି କରାଯାଇଛି । ଏବଂ, ଏହି କର୍ତ୍ତୃତ୍ୱବିସ୍ତାରି ମାନସିକତାକୁ ପରିପୋଷଣ କରିଛନ୍ତି ବିଶ୍ୱନାଥ କର, ଚତୁର୍ଭୁଜ ପଟ୍ଟନାୟକ, ସାଧୁଚରଣ ରାୟ, ଜଗନ୍ନାଥ ରାଓ ଏବଂ ଅନ୍ୟ ବ୍ରାହ୍ମ-ବିଶ୍ୱାସୀମାନେ । ସାର୍ ବାସୁଦେବ ସୁଢ଼ଳ ଦେବଙ୍କ ଅଳଙ୍କାରବୋଧୋଦୟ (୧୮୮୬) ପୁସ୍ତକର ସମୀକ୍ଷା କାଳରେ ମଧୁସୂଦନ

ଓଡ଼ିଶାର ପ୍ରାଚୀନ ସାହିତ୍ୟ ବୋଲି ଯାହା ଜନମାନସରେ ପ୍ରତିଷ୍ଠିତ, ସେଥିର ଅଧିକାଂଶ ଯେ ସୁରୁଚି-ସମ୍ଭୂତ ନୁହେଁ, ତାହା ବିନା ବ୍ୟାକରଣ ସାହିତ୍ୟ ଚର୍ଚ୍ଚାରେ ପାଠକମାନେ ସମୀଚୀନ ରୂପେ ଉପଲବ୍ଧ କରିପାରିବେ ନାହିଁ । ବ୍ୟାକରଣ ଓ ଅଳଙ୍କାରଠାରେ ପ୍ରାଚୀନ ଉତ୍କଳ ସାହିତ୍ୟ ଯେମନ୍ତ ଅପରାଧୀ ତେମନ୍ତ ଭାରତ ବର୍ଷର ଅନ୍ୟ ପ୍ରଦେଶରେ ଅଛି କି ନାହିଁ, ସନ୍ଦେହର ସ୍ଥଳ,

ବୋଲି ଉଲ୍ଲେଖ କରିଛନ୍ତି ।[୧୫]

ଭଂଜ କବିଙ୍କର ସେ ପ୍ରଶଂସା କରିଥିଲେ ସୁଦ୍ଧା, ମଧ୍ୟଯୁଗୀୟ ଓଡ଼ିଆ କବିମାନଙ୍କର ଭାଷା ଓ ବ୍ୟାକରଣ ଜ୍ଞାନ ସମ୍ପର୍କରେ ତାଙ୍କ ମନ୍ତବ୍ୟରେ ଭାଷାର ଶୁଦ୍ଧୀକରଣ ମାନସିକତା ହିଁ ସୁସ୍ପଷ୍ଟ ।

ମଧୁସୂଦନ ବଙ୍ଗଳାରେ ଲିଖିତ ଓ ବଙ୍ଗୀୟ ସାହିତ୍ୟ ପରିଷଦ ଦ୍ୱାରା ପ୍ରକାଶିତ ଏକ ତ୍ରୈମାସିକୀରେ ଓଡ଼ିଆ ଭାଷା ଶୀର୍ଷକ ଆଲୋଚନାରେ ଆଧୁନିକ ଓଡ଼ିଆ ଭାଷା କିପରି ଦିନକୁ ଦିନ ବଙ୍ଗଳା ପରି ହୋଇ ଆସୁଅଛି, ତତ୍‌ସଂକ୍ରାନ୍ତରେ ସ୍ପଷ୍ଟ ଉଲ୍ଲେଖ କରିଛନ୍ତି । (ଓଡ଼ିଆ ଭାଷା-ଅନୁବାଦ : ବିଶ୍ୱନାଥ କର-ଉତ୍କଳ ସାହିତ୍ୟ/ପ୍ରଥମ ଭାଗ/ପ୍ରଥମ ସଂଖ୍ୟା- ପୃ-୨୫-୨୮) ତାଙ୍କୁ ଏ କ୍ଷେତ୍ରରେ ପୂର୍ଣ୍ଣ ସମର୍ଥନ କରିଛନ୍ତି ବଙ୍ଗୀୟ ଓ ଗୀର୍ବାଣମନସ୍କ ପଣ୍ଡିତଗୋଷ୍ଠୀ । ସାହିତ୍ୟର ଲୋକାୟନକୁ ସେମାନେ ଆଦୌ ସହ୍ୟ କରିପାରିନାହାନ୍ତି । ବ୍ରାହ୍ମଣମାନଙ୍କ ଛଳ-ସଂସ୍କାରବୋଧ ଓ କୃତ୍ରିମ ଗଦ୍ୟ ଶୈଳୀ ମଧ ଅନେକ ନବଶିକ୍ଷିତଙ୍କୁ ଦାସ କରିରଖିଛି ।

ସାହିତ୍ୟର ଭାଷା ସଂକ୍ରାନ୍ତରେ ଗୌରୀଶଙ୍କରଙ୍କ ବିଚାର ଅବଶ୍ୟ ବ୍ରାହ୍ମବାଚକ, କି ଗୀର୍ବାଣ-ଧର୍ମୀ ନୁହେଁ । ଦୀପିକା ପୃଷ୍ଠାରେ ପ୍ରକାଶିତ ବହୁ ଆଲୋଚନାରେ ଏହା ସୁସ୍ପଷ୍ଟ । ମଧୁସୂଦନଙ୍କ ପ୍ରବନ୍ଧମାଳା ପୁସ୍ତକର ଗଦ୍ୟ ଶୈଳୀ ସଂକ୍ରାନ୍ତରେ ଶ୍ରୀ କ ଛଦ୍ମନାମୀ ଜନୈକ ପତ୍ରପ୍ରେରକଙ୍କ ମନ୍ତବ୍ୟ :

> ଏଥିରେ ବାକ୍ୟାଡ଼ମ୍ବର ସାର, ଏଥିରେ ଯେ କି ଅସଙ୍ଗତି ଅଛି ତାହା କେତେ ଲେଖିବୁ ? ପ୍ରବନ୍ଧମାଳାର ଗ୍ରନ୍ଥକର୍ତ୍ତା କେବଳ ସଂସ୍କୃତ ଶବ୍ଦ ପ୍ରୟୋଗ କରିବାରେ ବ୍ୟଗ୍ର ହୋଇ କର୍କଶ ଓ ଅପ୍ରଚଳିତ ଆଭିଧାନିକ ଶବ୍ଦ ଏତ ପ୍ରୟୋଗ କରିଛନ୍ତି ଯେ, ଗ୍ରନ୍ଥଖଣ୍ଡି ଶ୍ରୁତିକଟୁତା ଓ ଅପ୍ରଯୁକ୍ତତା ଦୋଷରେ ପରିପୂର୍ଣ୍ଣ ହୋଇଅଛି, ମନ୍ତବ୍ୟରେ ଏହା ସୁସ୍ପଷ୍ଟ ।[୧୬]

ପୁନଶ୍ଚ ବାଲେଶ୍ୱରରୁ ପ୍ରକାଶିତ ସମ୍ବାଦ ବାହିକା, ଉତ୍କଳ ଦର୍ପଣ ଏବଂ ଓଡ଼ିଆ ଓ ନବ ସମ୍ବାଦର ଗଦ୍ୟ ଶୈଳୀ ପ୍ରତି ଗୌରୀଶଙ୍କର ଥିଲେ ଅତ୍ୟନ୍ତ ଅନୁଦାର । ଗୌରୀ ଶଙ୍କରଙ୍କର ଏକ ଆଲୋଚନାର ଉତ୍ତର ଦେବାକୁ ଯାଇ ବାହିକା ଉଲ୍ଲେଖ କରିଛି

> ବାହିକାର ଭାଷା ଅଶୁଦ୍ଧ ବୋଲି କହି ନପାରୁ । ଏଥିରେ ଭାଷାଦୋଷ ଥିବା ବଡ଼ ଅସମ୍ଭବ ନୁହେଁ । କାରଣ ଆପଣାର ଦୋଷ ଅପର ଚକ୍ଷୁରେ ଯେପରି ପଡ଼ିପାରେ, ଆପଣାର ଦୋଷ ଆପଣା ଚକ୍ଷୁରେ ସେପରି ପଡ଼ି ପାରେ ନାହିଁ । xx ଏଥିକୁ ଘରର ପରର ବନ୍ଧୁଭାବରେ ପରସ୍ପରଙ୍କ ଦୋଷ ଦେଖାଇ ଦେବା ଉଚିତ ହେଉଅଛି । ତାହା ନୋହିଲେ ଆମ୍ଭମାନଙ୍କ ଯୋଗୁଁ ଉତ୍କଳଭାଷାରେ ଦୂଷିତ ହୋଇଯାଉଅଛି, ଏଥିରେ ଦାୟୀ ହେବ କିଏ ?[୧୭]

ଓଡ଼ିଆ ଓ ନବ ସମ୍ବାଦରେ 'ଓଡ଼ିଆ ଭାଷା' ଶୀର୍ଷକରେ ପ୍ରକାଶିତ ତିନିଗୋଟି ଆଲୋଚନାରେ ସମ୍ପାଦକ ପରୋକ୍ଷଭାବରେ ଗୌରୀଶଙ୍କରଙ୍କ ଭାଷା ସଂକ୍ରାନ୍ତ ମାନସିକତାକୁ ସ୍ୱୀକାର କରିପାରିନାହାନ୍ତି ।[୧୮]

ଏବଂ, ଓଡ଼ିଆ ଅସ୍ମିତା ରକ୍ଷାପାଇଁ ଆଧୁନିକ ନବଶିକ୍ଷିତମାନେ ଊନବିଂଶ ଶତାବ୍ଦୀର ଷଷ୍ଠ ଦଶକରେ ଆଧୁନିକ ବଙ୍ଗାଳୀମାନଙ୍କର ମିଛ ଅଭିଜାତବୋଧ ବ୍ୟାଧିର ସଂକ୍ରମଣରୁ ଆତ୍ମରକ୍ଷାପାଇଁ ଓଡ଼ିଆମାନେ ଅବଶ୍ୟ ଭାଷାକୁ ଏକ ଶକ୍ତିଶାଳୀ ମଧମ ଭାବରେ ଗ୍ରହଣ କରିଛନ୍ତି । ମାତ୍ର ତାହା କେଉଁ ଅଞ୍ଚଳ, କେଉଁ ଜାତି, ଧର୍ମ, ବୃତ୍ତି ଓ ମାନସିକତାର ମଣିଷମାନଙ୍କ ଭାଷା- ଯାହା ସକଳଙ୍କୁ

ସୂତ୍ରାୟିତ କରିପାରିବ, ତଥାପି ଅସ୍ପଷ୍ଟ ହୋଇରହିଛି । ଏବଂ, ଅସ୍ପଷ୍ଟତାର କାରଣ ହୋଇଛି, ନେତୃତ୍ୱ-କନ୍ଦଳ । ବିଶେଷତଃ, କଟକ ଏହି ଗୋଳରେ ଛଟକ ଦେଖାଇଛି । ଏବଂ, ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ପ୍ରସଙ୍ଗ, ସମ୍ବଲପୁରରେ ହିନ୍ଦୀଭାଷା ପ୍ରଚଳନର ବିରୋଧ ଓ ସମ୍ବଲପୁର ରାଜନୀତିକ ଓଡ଼ିଶା ଏକ ଅଂଶ ବୋଲି ଦାବୀ କରୁଥିବା ଓଡ଼ିଆମାନେ, ସ୍ଥାନୀୟମାନଙ୍କ ଭାଷାକୁ ବଣୁଆ କହିଛନ୍ତି ।[୯]

ସମକାଳରେ ଅନ୍ୟ ଏକ ଉଲ୍ଲେଖନୀୟ ଘଟଣା-ଫକୀରମୋହନ, ଗୋବିନ୍ଦ ରଥଙ୍କ ପରି ବୟସ୍କ ଏବଂ ଗୋପାଳ ଚନ୍ଦ୍ର ପ୍ରହରାଜ, ନନ୍ଦକିଶୋର ବଳ, ଅଭିରାମ ଭଂଜ ଓ ଶ୍ୟାମ ସୁନ୍ଦର ରାଜଗୁରୁ ଆଦି ତରୁଣମାନଙ୍କର ଆବିର୍ଭାବ । ସେମାନେ ରାୟ- ରାଓ, ଏବଂ କଟକ ପ୍ରିଣ୍ଟିଂ କମ୍ପାନୀ ଏଣ୍ଡ କୋଃମାନଙ୍କ କର୍ତ୍ତୃତ୍ୱରୁ ଓଡ଼ିଆ ଭାଷାର ମୁକ୍ତିପାଇଁ ଆପଣା ଆପଣା ପାଖରେ ପ୍ରତିଶ୍ରୁତିବଦ୍ଧ ହୋଇଛନ୍ତି । ସାହିତ୍ୟର ଭାଷା କହିଲେ, ଜନ ସମୁଦାୟର ଭାଷା କଥା ହିଁ ବୁଝିଛନ୍ତି । ସମୁଦାୟର ଆତ୍ମା- ତାର ଭାଷା । ସେମାନଙ୍କ ଆତ୍ମାର ଅକ୍ଷରାୟନ ସାହିତ୍ୟକୁ କେବଳ ସକଳଙ୍କର ଗ୍ରହଣଶୀଳ କରେ ନାହିଁ, ବରଂ ସାହିତ୍ୟ ଜୀବନଧର୍ମୀ ଓ ଗତିଶୀଳ ହୁଏ । କିନ୍ତୁ 'ଗ୍ରାମ୍ୟ'କୁ ଦୋଷ ବିବେଚନା କରୁଥିବା ସାହିତ୍ୟରଥୀମାନେ ସରସ୍ୱତୀଙ୍କର ସାମାଜିକୀକରଣକୁ ଏକ କୁରୁଚିପୂର୍ଣ୍ଣ ବିଚାର ଓ ତାଙ୍କ ପ୍ରତି ଘୋର ଅମର୍ଯ୍ୟାଦା ଆଖ୍ୟା ଦେଇଛନ୍ତି । ସେମାନେ ମଧ୍ୟ ଭାଷାର ମୂଳ ଖୋଜିଛନ୍ତି । ଏକ ଜାତିର ମାନକ ଭାଷା ତିଆରିରେ ଆପଣାର ଈଶ୍ୱରଦତ୍ତ ସାମର୍ଥ୍ୟ ଓ ପାଣ୍ଡିତ୍ୟକୁ ଖଟଣି କରିଛନ୍ତି । ଭାଷା ହୋଇଛି ଜାତୀୟତାବୋଧର ବୀଜମନ୍ତ୍ର ।

ମାତ୍ର ଓଡ଼ିଶା କହିଲେ ଯଦି ଓଡ଼ିଆ ଭାଷା କହୁଥିବା ଜନ ସମୁଦାୟକୁ ବୁଝାଏ, କେଉଁ ଅଞ୍ଚଳର ମଣିଷମାନଙ୍କର କଥିତ ଭାଷା ପ୍ରକୃତ ଓ ଶୁଦ୍ଧ ଓଡ଼ିଆ, ତାହା ନେତୃସ୍ଥାନୀୟମାନଙ୍କ ମଗଜକୁ ଗ୍ରାସକରିଛି । ତାହା କ'ଣ ତେଲୁଗୁ ପ୍ରଭାବିତ ଦକ୍ଷିଣାଞ୍ଚଳ, ହିନ୍ଦୀ ପ୍ରଭାବିତ ପଶ୍ଚିମାଞ୍ଚଳ, ବଙ୍ଗଳା ପ୍ରଭାବିତ ଉତ୍ତରାଞ୍ଚଳ, ନା ଏକଦା ଏହି ଅଞ୍ଚଳଗୁଡ଼ିକୁ ଏକ ଶାସନାଧୀନ କରି ରଖିଥିବା କେନ୍ଦ୍ରାଞ୍ଚଳ (କଟକ, ପୁରୀ) ? ଉପର୍ଯ୍ୟୁକ୍ତ ମାନସିକତାରୁ ଜନ୍ମ ନେଇଛି ଆଞ୍ଚଳିକତାବାଦ । ଏବଂ, ଆଞ୍ଚଳିକ ଈଶ୍ୱରମାନଙ୍କ କୋଳାହଳରୁ, ପ୍ରଶାସନର କେନ୍ଦ୍ର କଟକ ସତେ ଯେପରି ବାଜି ମାରିନେଇଛି । ଆଧୁନିକତା କଲିକତାରୁ କଟକ ଆସିବା ବାଟରେ ବାଲେଶ୍ୱରଠାରେ ଟିକେ ଅଟକି ଯାଇଛି । ବାଲେଶ୍ୱର ସମ୍ବାଦ ବାହିକା, ଉତ୍କଳ ଦର୍ପଣ, ଓଡ଼ିଆ ଓ ନବସମ୍ବାଦ ଆଦି ପତ୍ରିକା ସେଇ ପାଖରେ ଜନ୍ମ ନେଇଛନ୍ତି । ଫକୀରମୋହନ, ରାଧାନାଥ ସେଇ ମାଟିରୁ ଆସିଛନ୍ତି । ଦକ୍ଷିଣାଞ୍ଚଳ ମାନ୍ଦ୍ରାଜଦ୍ୱାରା ସଂକ୍ରମିତ ହୋଇଛି । ପାରଳାଖେମୁଣ୍ଡି, ଜୟପୁର, ସୁରଙ୍ଗୀ, ରମ୍ଭା, ଧରାକୋଟର ମହୀପତିମାନେ ଆଧୁନିକତାର ପୃଷ୍ଟପୋଷକ ହୋଇଛନ୍ତି । ଛାପଖାନା ବସେଇଛନ୍ତି, ପତ୍ରିକା ବାହାର କରିଛନ୍ତି । ଶ୍ୟାମସୁନ୍ଦର ରାଜଗୁରୁ, ପଣ୍ଡିତ ଗୋପୀନାଥ ନନ୍ଦ ଶର୍ମା, ଶଶିଭୂଷଣ ରଥ ଦକ୍ଷିଣର ପ୍ରତିନିଧିତ୍ୱ କରିଛନ୍ତି । ପଶ୍ଚିମର ବାମଣ୍ଡା, ସୋନପୁର, ଖଡ଼ିଆଳ ଓ ପାଟଣାର ଈଶ୍ୱରମାନେ ନିଜ ନିଜର ଗଡ଼ଗୁଡ଼ିକୁ ଭାଷା ଓ ସାହିତ୍ୟଚର୍ଚ୍ଚାର କେଳିକାନନ କରିଛନ୍ତି । ବାମଣ୍ଡା ରାଜ୍ୟର ରାଜଧାନୀ ଦେବଗଡ଼ରୁ ସମ୍ବଲପୁର ହିତୈଷିଣୀ, ବିଜୁଳି, ଆଲୋଚନା (୧୯୦୦) ପତ୍ରିକା ପ୍ରକାଶ ପାଇଛି । ବାସୁଦେବ ସୁଢ଼ଳ ଦେବ, ଗୋପୀନାଥ ଗଜପତି, ସଚ୍ଚିଦାନନ୍ଦ ତ୍ରିଭୁବନ ଦେବ, ଜଳନ୍ଧର ଦେବ, ବ୍ରଜବିହାରୀ ସିଂହଦେଓ, ବୀର ବିକ୍ରମ ଦେବଙ୍କ ପରି ରାଜାମାନେ ରାଜଧାନୀରେ ପଣ୍ଡିତମାନଙ୍କ

ଗହଣରେ ଗମାତ୍ କରିଛନ୍ତି । ମୟୂରଭଂଜର ଈଶ୍ୱରମାନେ ମଧ୍ୟ ଶିଳ୍ପ, ସାହିତ୍ୟ, ସଂସ୍କୃତି, ଦାନଶୀଳତା ଆଦି ସକଳ କ୍ଷେତ୍ରରେ ନିଜନିଜର ସ୍ୱାତନ୍ତ୍ର୍ୟ ପ୍ରତିପାଦନ ନିମିତ୍ତ ଆଧୁନିକ ଶିକ୍ଷିତମାନଙ୍କୁ ଉଆସର ଅତିଥି କରିଛନ୍ତି । ତାଳଚେର ଏବଂ ଢେଙ୍କାନାଳ ମଧ୍ୟ ଏ କ୍ଷେତ୍ରରେ ପଛରେ ପଡ଼ିନାହାନ୍ତି । ଏବଂ, ସର୍ବୋପରି କେନ୍ଦ୍ରରେ କର୍ତ୍ତୃତ୍ୱ ବିସ୍ତାର କରିଚନ୍ତି ଗୌରୀଶଙ୍କର, ମଧୁସୂଦନ, କୃଷ୍ଣପ୍ରସାଦ, ରାମଶଙ୍କର, ପ୍ୟାରୀମୋହନ, ଚତୁର୍ଭୁଜ, ବିଶ୍ୱନାଥ, ନନ୍ଦକିଶୋର, ଗୋପାଳ ଚନ୍ଦ୍ର ଏବଂ ଆହୁରି ଅନେକ ।

ଏଠାରେ ଅନ୍ୟ ଏକ ଉଲ୍ଲେଖନୀୟ ପ୍ରସଙ୍ଗ, ଗଡ଼ଜାତର ଦରବାରଗୁଡ଼ିକ ପ୍ରାୟତଃ ଉପକୂଳର ପଣ୍ଡିତ ଓ ଆଧୁନିକ ଶିକ୍ଷାପ୍ରାପ୍ତ ହାକିମ-ଅଧ୍ୟୁଷିତ ହୋଇଛି । ମଧ୍ୟଯୁଗୀୟ ଦରବାରୀ ସରସ୍ୱତୀ ପୁନଶ୍ଚ ଫିରିଙ୍ଗୀ ବେଶବସନରେ ସତେ ଯେପରି ନବଯୌବନୀ ହୋଇଛି । ବିଚାରୀ ସରସ୍ୱତୀ, ଗୀର୍ବାଣ- ବ୍ୟାଧିରେ ପୁନଃସଂକ୍ରମିତ ହୋଇଛନ୍ତି । ରାଜା, ସାମନ୍ତ ଏବଂ ସାମନ୍ତପାଳିତ ଓ ସେବିତ ଦେଶୀ, ବିଦେଶୀ ବିଦ୍ୱାନମାନଙ୍କ ଖିଆଲଚାଳିତ 'ଚତୁରୀ ନାରୀ' ହୋଇଛନ୍ତି । ଗଡ଼ଜାତର ଦରବାରଗୁଡ଼ିକରେ ପରମ୍ପରାପ୍ରିୟ ପଣ୍ଡିତମାନେ ଅବଶ୍ୟ ରହିଛନ୍ତି; ମାତ୍ର ରାଧାନାଥ, ମଧୁସୂଦନ ଓ ସେମାନଙ୍କ ଅନୁଗାମୀମାନଙ୍କ ଯୋଗ୍ୟତା ପଣ୍ଡିତମାନଙ୍କ ବ୍ୟକ୍ତିତ୍ୱକୁ ହ୍ରସ୍ୱ କରିଛି । ଆଧୁନିକମାନେ ବାଲେଶ୍ୱର, ମୟୂରଭଂଜ ଓ ବାମଣ୍ଡାର ଈଶ୍ୱରମାନଙ୍କର ଈଶ୍ୱର ହୋଇଛନ୍ତି ଏବଂ ପରବର୍ତ୍ତୀ କାଳରେ କଟକକୁ ମଧ୍ୟ ଆପଣା ପ୍ରଜ୍ଞାର କଟକ କରିଛନ୍ତି । ସେମାନଙ୍କ କର୍ତ୍ତୃତ୍ୱର କୁସୁମନରେ ସହାୟକ ହୋଇଛନ୍ତି ବିଶ୍ୱନାଥ କର, କୃଷ୍ଣପ୍ରସାଦ ଚୌଧୁରୀ ଓ ଅନ୍ୟମାନେ । ଗୌରୀଶଙ୍କର, ଯିଏ ଊନବିଂଶ ଶତାବ୍ଦୀର ଶେଷ ଚାରି ଦଶକ ଧରି କଟକର କର୍ତ୍ତୃତ୍ୱ ବିସ୍ତାରଣରେ କର୍ଣ୍ଣଧାର ଥିଲେ, ବିଂଶଶତକରେ ସେ କ୍ରମଶଃ ଦୁର୍ବଳ ଅନୁଭବ କରିଛନ୍ତି । ବାଲେଶ୍ୱର, ମୟୂରଭଂଜ, ବାମଣ୍ଡା, ଖଡ଼ିଆଳ ମଧ୍ୟ କଟକର କରାମତ୍ତିକୁ ସାମ୍ନା କରିପାରିନାହାନ୍ତି । ସେମାନେ ବି କଟକ ଆଶ୍ରିତ ହୋଇଛନ୍ତି, ଏବଂ କଟକ ଓଡ଼ିଶାର ରାଜନୀତି, ଓଡ଼ିଆ ଭାଷା, ସାହିତ୍ୟ ଏବଂ ସଂସ୍କୃତିର ରାଜଧାନୀ ହୋଇଛି । ଉପାନ୍ତମାନେ କଟକାଭିମୁଖୀ ହୋଇଛନ୍ତି । ରାଜାମାନେ ଗଡ଼ ଛାଡ଼ି କଟକରେ କୋଠୀ କରିଛନ୍ତି । କଟକ ସେମାନଙ୍କ ବିଭବ ଓ ପ୍ରତିପତ୍ତି ପ୍ରତିଷ୍ଠାର ରଙ୍ଗମଞ୍ଚ ହୋଇଛି । ଏବଂ, କଟକୀମାନେ କେଜାଣି କାହିଁକି, ଏକଦା ଓଡ଼ିଆ ଭାଷା, ସାହିତ୍ୟ ଓ ସଂସ୍କୃତିର ଚର୍ଚ୍ଚାଭୂମି ଦକ୍ଷିଣର ଆଲୋଚନାପାଇଁ ପ୍ରାୟତଃ ଉଦାସୀନ ରହିଛନ୍ତି ।

ବିଂଶ ଶତାବ୍ଦୀର ପ୍ରଥମ ଓ ଦ୍ୱିତୀୟ ଦଶକରେ କଟକର କର୍ତ୍ତୃତ୍ୱକୁ ଚ୍ୟାଲେଞ୍ଜ କରିଛନ୍ତି ଶ୍ୟାମସୁନ୍ଦର ରାଜଗୁରୁ, ଶଶିଭୂଷଣ ରଥଙ୍କ ପରି ଦକ୍ଷିଣୀ ଏବଂ ବ୍ରଜ ସୁନ୍ଦର ଦାସ, ଗୋପବନ୍ଧୁ ଦାସ, ନୀଳକଣ୍ଠ ଦାସ, ଗୋଦାବରୀଶ ମିଶ୍ରଙ୍କ ପରି ସତ୍ୟବାଦୀ ଗୋଷ୍ଠୀର ସାଧକମାନେ । ବ୍ରହ୍ମପୁରରୁ ଆଶା (୧୯୧୪) ପ୍ରକାଶ ପାଇଛି । ଏହାର ସମ୍ପାଦକ ଶଶିଭୂଷଣଙ୍କୁ ମାନସିକ ଓ ବୌଦ୍ଧିକ ଶକ୍ତିରେ ଗତିଶୀଳ କରିଛନ୍ତି ଗୋପବନ୍ଧୁ ଓ ଗୋଦାବରୀଶ । ମାତ୍ର ଆଶ୍ଚର୍ଯ୍ୟର ପ୍ରସଙ୍ଗ ଏହି କି ଯେ, ସମ୍ବାଦ ବାହିକା, ନବସମ୍ବାଦ, ସମ୍ବଲପୁର ହିତୈଷିଣୀ ଆଦି ଅନ୍ୟ ଉପାନ୍ତୀମାନେ ଶଶିବାବୁଙ୍କୁ ପ୍ରାୟତଃ ସହଯୋଗ କରିନାହାନ୍ତି । ଓଡ଼ିଶାର ରାଜନୀତି ଓ ସାହିତ୍ୟର ଇତିହାସକାରମାନେ ମଧ୍ୟ ଗଂଜାମର ଏହି ବିଶେଷତ୍ୱକୁ ସେତିକି ଗୁରୁତ୍ୱ ଦେଇନାହାନ୍ତି । ପଶ୍ଚିମ, କଲିକତାରୁ ବାଲେଶ୍ୱର ବାଟଦେଇ ଅବଶ୍ୟ କଟକକୁ ଆସିଛି । ଫିରିଙ୍ଗି, ଫିରିଙ୍ଗି ଶିକ୍ଷାପ୍ରାପ୍ତ ଦେଶୀ ପ୍ରଶାସକ ଓ ବ୍ରାହ୍ମଧର୍ମର ଅମଲମାନେ

କଟକକୁ ଆଧୁନିକତାର କେନ୍ଦ୍ର କରିଛନ୍ତି । ସେମାନେ ପତ୍ରପତ୍ରିକା ପ୍ରକାଶନ, ପାଠ୍ୟପୁସ୍ତକ ରଚନା ଓ ପ୍ରସାରଣ ମାଧ୍ୟମରେ ଆତ୍ମପ୍ରତିଷ୍ଠାପାଇଁ କ୍ଷମତାକୁ ଇସ୍ତମାଲ୍ କରିଛନ୍ତି- ଅତୀତର ରାଜପୋଷିତ ସଭାସଦ ଓ ସଭା କବିମାନଙ୍କ ପରି । ସେମାନଙ୍କ ପରି ଅନେକ ମାନସିକ ସ୍ତରରେ ଏତେ ଗୁଡ଼ୁଗ୍ରଣ ହୋଇ ପଡ଼ିଛନ୍ତି ଯେ, ନିଜ ନିଜର ବିଚାରକୁ କେବଳ ମାତ୍ର ଗ୍ରହୀତବ୍ୟ ଜ୍ଞାନ କରିଛନ୍ତି । ଏବଂ, ଅବଶିଷ୍ଟମାନଙ୍କ ବାମନାୟନରେ ବୁଦ୍ଧିକୁ ଖଟଣି କରିଛନ୍ତି । ଏପରିକି, ନିଜକୁ ଓଡ଼ିଶାର ମୁଖପାତ୍ର ମଣୁଥିବା ଗୌରୀଶଙ୍କର ପତ୍ରପତ୍ରିକା ପ୍ରକାଶନ ଏକ କ୍ଷତିକାରକ ଓ ପୀଡ଼ାଦାୟକ ବ୍ୟାପାରର ଆଳ ଦେଖାଇ, ଅନ୍ୟ ଆଗ୍ରହୀମାନଙ୍କୁ ଅନେକ ସମୟରେ ନିରୁତ୍ସାହିତ କରିଛନ୍ତି ।[୨୦] ଯେଉଁମାନଙ୍କୁ ସେ କେବେ କେମିତି ପ୍ରଶଂସା କରିଛନ୍ତି, ତାଙ୍କ ବକ୍ତବ୍ୟ ଯେ ଛଳନାର କାବ୍ୟାୟନ, ବହୁ ଲେଖାରୁ ଏହା ସ୍ପଷ୍ଟ ହୋଇଯାଏ । ବିଶ୍ୱନାଥ କରଙ୍କୁ ମଧ୍ୟ ଆମେ ଏହି ମାନସିକତାର ଅନ୍ୟତମ ଆଗ୍ରହୀ କହିପାରିବା । ଉତ୍କଳ ସାହିତ୍ୟ ପତ୍ରିକା ମାଧ୍ୟମରେ ସେ ଅବଶ୍ୟ ଆଧୁନିକ ଓଡ଼ିଆ ସାହିତ୍ୟକୁ ନୂଆ ରୂପ ଓ ଭାବ-ପୋଷାକରେ ଜୀବନ୍ତ କରିଛନ୍ତି । ମାତ୍ର ୧୯୦୫ ମସିହା ପରେ ଫକୀରମୋହନ, ଗଙ୍ଗାଧର, ଗୋପବନ୍ଧୁ, ନୀଳକଣ୍ଠ, ଗୋଦାବରୀଶ ପରି ସ୍ରଷ୍ଟା ଓ କର୍ମୀମାନଙ୍କୁ ଆପଣା ପତ୍ରିକାରେ ଉପେକ୍ଷା କରିବା, ତାଙ୍କ ପ୍ରତିକ୍ରିୟାଶୀଳ ମାନସିକତାର ଯେ ଦୃଷ୍ଟାନ୍ତ ନୁହେଁ,ଏ କଥା ଆମେ ଅସ୍ୱୀକାର କରିପାରିବା ନାହିଁ ।[୨୧]

ଏଠାରେ ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ପ୍ରସଙ୍ଗ କର ଉପେକ୍ଷା କରିଥିବା ଆପଣା ବିଚାର ବିରୋଧୀ ସାହିତ୍ୟ ଓ ସାହିତ୍ୟିକମାନଙ୍କୁ ମୁକୁର (୧୯୦୫) ପତ୍ରିକା ମାଧ୍ୟମରେ ବ୍ରଜ ସୁନ୍ଦର ଦାସ ଅତ୍ୟନ୍ତ ଶ୍ରଦ୍ଧାର ସହିତ ପରିପାଳନ କରିଛନ୍ତି । ବ୍ରଜସୁନ୍ଦର ଜମିଦାର ଥିଲେ । ତେଣୁ ଅର୍ଥର ଅଭାବ ନ ଥିଲା । ଅର୍ଥାଭାବରୁ ଅବଶ୍ୟ ପତ୍ରିକାର ପ୍ରକାଶନ କେବେ କେବେ ଅନିୟମିତ ହୋଇଛି, ମାତ୍ର ପ୍ରକାଶନ ପ୍ରତି ତାଙ୍କ ଆନ୍ତରିକତା ଓ ଆଧୁନିକତା ପ୍ରତି ଗ୍ରହଣଶୀଳ ମନୋଭାବଯୋଗୁଁ ସେ ଅନେକ ପ୍ରତିଭାଙ୍କର ଆତ୍ମପ୍ରତିଷ୍ଠାର କାରଣ ହୋଇଛନ୍ତି । ୧୯୦୬ରୁ ୧୯୧୩ ମସିହା ପର୍ଯ୍ୟନ୍ତ ସେ ଫକୀରମୋହନ, ଗୋପବନ୍ଧୁ, ନୀଳକଣ୍ଠ, ଗୋଦାବରୀଶ ଓ ଗୋପୀନାଥଙ୍କ ପରି ଆଧୁନିକ ବିଚାରସମ୍ପନ୍ନ ବୟସ୍କ ଓ ତରୁଣମାନଙ୍କୁ ଆତ୍ମପ୍ରକାଶର ସୁଯୋଗ ଦେଇଛନ୍ତି । ଅନ୍ୟ ପକ୍ଷରେ ଶଶିଭୂଷଣ ଜଣେ ବ୍ୟବସାୟୀ, ମାତ୍ର ଭାଷା ଓ ସାହିତ୍ୟ ପ୍ରତି ଅନୁରାଗ ଏବଂ ଜାତି ପ୍ରୀତିବୋଧଯୋଗୁଁ ସେ ଓଡ଼ିଆମାନଙ୍କର ଅନ୍ୟତମ ମୁଖପାତ୍ର ରୂପରେ ଉଭା ହୋଇଛନ୍ତି । ସତ୍ୟବାଦୀ ପତ୍ରିକାର ମ୍ୟାନେଜର ଭାବରେ ମଧ୍ୟ ସେ କାମ କରିଛନ୍ତି । ଓଡ଼ିଆ ଭାଷାଚର୍ଚ୍ଚା, ପ୍ରବନ୍ଧ ଓ ସମାଲୋଚନା ସାହିତ୍ୟର ନବାୟନ ଏବଂ ଓଡ଼ିଆ ଜାତୀୟବାଦୀ ଆନ୍ଦୋଳନକୁ ଗତିଶୀଳ କରିବାରେ ସେ ସମକାଳୀନମାନଙ୍କର ସବା ଆଗରେ ଚାଲିଛନ୍ତି । ଗଡ଼ଜାତ ରାଜାମାନଙ୍କର ପ୍ରାଧାନ୍ୟ ଓ ଇଂରେଜ ଶାସନ ପ୍ରବର୍ତ୍ତନ ସତ୍ତ୍ୱେ, ଦକ୍ଷିଣ ଓଡ଼ିଶା ପରମ୍ପରାର ସୁରକ୍ଷା ସହିତ ଆଧୁନିକତାକୁ ଯେପରି ଗ୍ରହଣ କରିଛି, ତାହା ଅନ୍ୟ ଗଡ଼ଜାତ ଅଥବା ମୋଗଲବନ୍ଦୀ ଅଞ୍ଚଳରେ ସମ୍ଭବ ହୋଇନାହିଁ । କେନ୍ଦ୍ରର କର୍ତ୍ତୃତ୍ୱ ଦକ୍ଷିଣ ପାଖରେ ହାରମାନିଛି । ମାତ୍ର ପୃଥିବୀର ସବୁ ରାସ୍ତା ଯେ ରୋମ ଅଭିମୁଖୀ ହେବା ଲାଗି ବାଧ୍ୟ, ଏକ ଅନୁରୂପ ଭୟଙ୍କର ବ୍ୟାଧି-ସଂକ୍ରମିତ- କେନ୍ଦ୍ର କଟକ ସହଜରେ ଅନ୍ୟମାନଙ୍କୁ ସ୍ୱୀକାର କରିପାରିନାହିଁ । ବରଂ ଅଧିକ ଉତ୍ସାହର ସହିତ ଦୂରବର୍ତ୍ତୀମାନଙ୍କୁ ଆପଣାର ପ୍ରାଶାସନିକ ଓ ବୌଦ୍ଧିକ କର୍ତ୍ତୃତ୍ୱ ବଳରେ ନିୟନ୍ତ୍ରଣବିଳାସୀ ହୋଇଛି । ସୀମାନ୍ତକୁ ମିତ୍ର ମଣିନାହିଁ । ତେଣୁ ଭାଷା, ସାହିତ୍ୟ, ଶିକ୍ଷା, ସମାଜ ଓ

ଅର୍ଥ ବ୍ୟବସ୍ଥା ଆଦି ସକଳ କ୍ଷେତ୍ରରେ ଓଡ଼ିଶାର ଅନଗ୍ରସରତାର କାରଣ ଭାବରେ ଆମେ କେନ୍ଦ୍ରର କ୍ଷମତାବିଳାସୀ କଟକୀମାନଙ୍କ ଆଦର୍ଶକୁ ଦାୟୀ କରିପାରିବା ।

କେନ୍ଦ୍ରରେ ସହୃଦୟ ଓ କ୍ଷମତାବିଳାସୀମାନଙ୍କର ପ୍ରତିବାଦକାରୀମାନେ ଯେ ନଥା'ନ୍ତି, ତାହା ନୁହେଁ । ମାତ୍ର ସେମାନେ ସଂଖ୍ୟାନ୍ୟୂନ । ସମକାଳରେ ବହୁ ତରୁଣ ଭାଷା ଓ ସାହିତ୍ୟ କ୍ଷେତ୍ରରେ ରାୟ, ରାଓ, କର, ଓ ଶର୍ମ୍ମାମାନଙ୍କ କର୍ତ୍ତୃତ୍ୱରୁ ମୁକ୍ତିପାଇଁ ସାହସ ବାନ୍ଧିଛନ୍ତି । ସେମାନେ ମଧ୍ୟ ବିଦେଶୀ ବିଦ୍ୟା-ବିଶାରଦ ହୋଇଛନ୍ତି । କଲିକତା ସହିତ ଭାବ ରଖିଛନ୍ତି । ଏବଂ, ପଶ୍ଚିମସଂପୃକ୍ତି ସେମାନଙ୍କ ଚେତନାକୁ ଆଲୋକିତ କରିଛି । ରାୟ ଓ ରାଓ ସାହିତ୍ୟ ଚର୍ଚ୍ଚାରେ ସେମାନେ ଅନୁରାଗୀ ହୋଇଛନ୍ତି । ଭାବ, ଶବ୍ଦଚୟନ ଓ ବାକ୍ୟବିନ୍ୟାସକୁ ଆଧାର କରି ସେମାନଙ୍କ ସାହିତ୍ୟରେ ଅଭିବ୍ୟଞ୍ଜିତ ନୂତନତାକୁ ଆପାତଃ ନିରପେକ୍ଷ ଆଖିରେ ଆକଳନ କରିଛନ୍ତି । ପୂର୍ବ ଆଲୋଚକମାନଙ୍କ ପରି ପ୍ରୀତିପଙ୍କରେ ଜୁବୁବୁବୁ ହୋଇ ନାହାନ୍ତି । ଏହି ପ୍ରସଙ୍ଗରେ ନନ୍ଦକିଶୋର ବଳଙ୍କ ବିଚାରକୁ ଆମେ ପ୍ରତିବାଦର ପ୍ରଥମ ଉଚ୍ଚାରଣ ଭାବରେ ଗ୍ରହଣ କରିପାରିବା । ୧୯୦୦ ମସିହାରେ ଉତ୍କଳସାହିତ୍ୟ ଶୀର୍ଷକ ଆଲୋଚନାରେ ସାହିତ୍ୟର ଭାଷା ସମ୍ବନ୍ଧରେ ସେ ଲେଖିଛନ୍ତି, 'ଓଡ଼ିଶାରେ ସାଧାରଣ ଲୋକମାନଙ୍କପାଇଁ ବୋଧଗମ୍ୟ ପୁସ୍ତକ ମଧ୍ୟ ବହୁଳ ଓ ସୁଲଭ ନୁହେଁ । xx ଇଂରେଜ ରାଜ ଦରବାରରେ ଓ ଜମିଦାରୀ ସିରସ୍ତାରେ କି ଶୋଚନୀୟ ଅବସ୍ଥା । ଦେଶୀୟ ଖ୍ରୀଷ୍ଟାନ୍‌ମାନେ ଯେଉଁ ସାଧୁ ଭାଷାର ସୃଷ୍ଟି କରିଛନ୍ତି ତାହା ଶୁଣିଲେ୍ ଭଦ୍ର ଲୋକ ମଧ୍ୟ ହାସ୍ୟ ସମ୍ବରଣ କରିପାରିବ ନାହିଁ ।'[୨୨] ନନ୍ଦକିଶୋର ଓଡ଼ିଆ ସାହିତ୍ୟକୁ ଏ ଶୋଚନୀୟ ଅବସ୍ଥାରୁ ମୁକ୍ତ କରିବାପାଇଁ ନୂତନ ଶୈଳୀର କବିତା ଲେଖିଛନ୍ତି । ମାତ୍ର ଓଡ଼ିଶାର ସାମନ୍ତ-ମନସ୍କମାନେ ତାଙ୍କୁ ସହଜରେ ଗ୍ରହଣ କରିପାରିନାହାନ୍ତି । କର୍ତ୍ତବ୍ୟବୋଧିନୀ ସମିତିର ସମ୍ପାଦକ ଆନନ୍ଦ ଚନ୍ଦ୍ର ପତି କବିଙ୍କୁ ଶବ୍ଦଚୟନରେ ସତର୍କତା ଅବଲମ୍ବନ କରିବାକୁ ପରାମର୍ଶ ଦେଇଛନ୍ତିଏବଂ ତାଙ୍କ ଗ୍ରାମ୍ୟଗୁଡ଼ିକୁ ପ୍ରତିପାଦନ କରିବାପାଇଁ ପଲ୍ଲୀଚିତ୍ର ଓ ନିର୍ଝରଣୀ କବିତା ପୁସ୍ତକରୁ ଉଦାହରଣ ଦେଇଛନ୍ତି । ତାଙ୍କ ପରାମର୍ଶର ଉତ୍ତରରେ କବି ଲେଖିଛନ୍ତି

> ସଂସ୍କୃତ ଓ ଦେଶୀୟ ଶବ୍ଦମାନଙ୍କର ଏକତ୍ର ସମାବେଶକୁ ଦୋଷ ନ ମଣି ଗୁଣ ବିବେଚନାରେ ଇଚ୍ଛାପୂର୍ବକ (ସତର୍କତା ପ୍ରଯୁକ୍ତ ନୁହେଁ) ମୋ ରଚନାରେ ସ୍ଥାନ ଦେଇଥାଏ । ତେବେ ପ୍ରକୃତ ଗ୍ରାମ୍ୟ ଅଥବା ପ୍ରାଦେଶିକତା ପରିହାର୍ଯ୍ୟ, ଏହା ମୋର ମତ । କିନ୍ତୁ ପ୍ରତ୍ୟେକ ସରଳ, ସହଜ, ଦେଶୀୟ ଶବ୍ଦ ଗ୍ରାମ୍ୟ ନୁହେଁ । xx ଆମ୍ଭମାନଙ୍କ ଜାତୀୟ ସାହିତ୍ୟରେ ଏପରି ଲେଖକ ଦେଖିଅଛି, ଯେ କି କେବଳ ଅସଂଯୁକ୍ତ ବର୍ଣ୍ଣର ଗ୍ରନ୍ଥ ପ୍ରଣୟନ କରି ସାହିତ୍ୟ ଦରବାରରେ ତାହା ଜାରି କରିବାକୁ ଉତ୍ସୁକ । ସାହିତ୍ୟରେ କିନ୍ତୁ ଏପରି ପହଲବାନୀ, କସରତ ବା କୁସ୍ତିଗିରିର ସ୍ଥାନ ନାହିଁ । ଭାବ ପ୍ରକାଶର ସର୍ବାଙ୍ଗୀନ ପଟୁତା ହିଁ ପରିଣତ ଭାଷାର ଲକ୍ଷଣ । କେଉଁ ଶ୍ରେଣୀର ଶବ୍ଦ କେଉଁ ଭାବ ପ୍ରକାଶ ପକ୍ଷରେ ଉପଯୋଗୀ, ସେହି ଭାବ ପ୍ରକାଶ ନିମନ୍ତେ ସେହି ଶ୍ରେଣୀର ଶବ୍ଦ ହିଁ ଅବଲମ୍ବନୀୟ- ସର୍ବଥା ଅବଲମ୍ବନୀୟ ଏବଂ ନିଃସଙ୍କୋଚରେ ଅବଲମ୍ବନୀୟ । ଭାବର ସ୍ୱରଗ୍ରାମ ସହିତ ଭାଷାର ସ୍ୱରଗ୍ରାମର ମିଳନ ବାଞ୍ଛନୀୟ ।[୨୩]

ଓଡ଼ିଆ ଭାଷା ସଂସ୍କୃତର ପୌତ୍ରୀ ହେଲେ ହେଁ ତାହା ଠିକ୍ ସଂସ୍କୃତ ନୁହେଁ । କୌଣସି ଜାତୀୟ ସାହିତ୍ୟର ପ୍ରଥମାବସ୍ଥାରେ ଅନ୍ୟ ଭାଷାକୁ ଶବ୍ଦ ଉଧାର ଆଣିବା ରୀତି ଅନିବାର୍ଯ୍ୟ । କିନ୍ତୁ ପୁରାତନ ଓ ପରିଣତ ଜାତିର ସାହିତ୍ୟରେ ସ୍ୱଦେଶୀୟ ସରଞ୍ଜାମ ବ୍ୟବହାର କରିବା ନିନ୍ଦାର କଥା ନୁହେଁ, ଗୌରବର କଥା । ଆମ୍ଭେମାନେ ବିକୃତ ଭାଷାର ସଭ୍ୟ ।[୨୪] ନନ୍ଦକିଶୋରଙ୍କ ଏହି କେତୋଟି ବାକ୍ୟକୁ ଆମେ ତାଙ୍କ ସାହିତ୍ୟର ଭାଷା ସଂକ୍ରାନ୍ତ ବିଚାର ଓ ପ୍ରୟୋଗ-ଦାମ୍ଭିକତାର ସମବାୟ କହିପାରିବା । ଅବଶ୍ୟ ରାଧାନାଥ ଓ ମଧୁସୂଦନଙ୍କ କବିତାର ଭାଷା ବିଷୟକ ଆଲୋଚନାରେ ସ୍ଥଳ ବିଶେଷରେ ସେ ଆପଣାର ସ୍ୱରକୁ ଯଥାସମ୍ଭବ କୋମଳ କରିଛନ୍ତି । ମାତ୍ର ନିରବ ରହିପାରିନାହାନ୍ତି । ରାଧାନାଥଙ୍କ ରଚନାକୁ ସାଧୁ, ସଂସ୍କୃତ ଓ ପ୍ରଚଳିତ ଶବ୍ଦ ସମୂହର ବିଚିତ୍ର ସମାହାର xx ଅସରନ୍ତା ଭଣ୍ଡାର, ଛାୟାବାଜିତୁଲ୍ୟ, ଚମତ୍କାର, ଭାବରେ ବିବେଚନା କରିଛନ୍ତି । ପୁନଶ୍ଚ, ସେ କବିଙ୍କୁ ଉତ୍କଳଭାଷାର ସଂସ୍କାରକ କହିବା ସଙ୍ଗେ ସଙ୍ଗେ ତାଙ୍କ କବିତାର ଶବ୍ଦ ସମ୍ପର୍କରେ ଅଧିକ ସ୍ୱଷ୍ଟ କରିଦେବାକୁ ଯାଇ ଲେଖିଛନ୍ତି, ଏତଦ୍ୱାରା କେହି ବୁଝିବେ ନାହିଁ ଯେ, ସରଳ ଭାଷାର ସ୍ଥାନ ସାହିତ୍ୟରେ ନାହିଁ । ଜୀବନ୍ତ, ଉନ୍ନତ ଓ ସର୍ବାଙ୍ଗ ସୁନ୍ଦର ସାହିତ୍ୟରେ ବହୁ ଭଙ୍ଗୀ (Stylc) ଯୁକ୍ତ ଭାଷା ଥାଏ । ଏମାନେ ନିଜ ନିଜ ରାଜ୍ୟରେ ଶ୍ରେଷ୍ଠ ଓ ସୁନ୍ଦର ।[୨୫] ପୁନଶ୍ଚ ମଧୁସୂଦନ ରାଓଙ୍କ ଛାନ୍ଦମାଳାର ପ୍ରଥମ ଓ ଦ୍ୱିତୀୟ ଭାଗର ଆଲୋଚନା ପ୍ରସଙ୍ଗରେ ସେ ଅବଶ୍ୟ କବିଙ୍କ ଭାଷାକୁ ଲଳିତ, ମଧୁର ଏବଂ ସରଳ କହିଅଛନ୍ତି । ମାତ୍ର ପର ବାକ୍ୟରେ-ଅଥଚ ସର୍ବତ୍ର ଏପରି ନୁହେଁ । ଅନୁପ୍ରାସବହୁଳ, ଭାବଅନୁଗାମିନୀ ବୋଲି ଉଲ୍ଲେଖ କରିଛନ୍ତି । ବଳ, ରାଓଙ୍କ ସମ୍ପର୍କରେ ଅନେକ କିଛି ଅପ୍ରୀତିକର କଥା କହିବାକୁ ଚାହିଁ ମଧ ନିରବ ରହିଛନ୍ତି । ରାଓଙ୍କ ମୃତ୍ୟୁ ପରେ ପ୍ରକାଶିତ ଅନ୍ୟ ଏକ ଆଲୋଚନାରେ ସେ ବ୍ରାହ୍ମଧର୍ମ ଗ୍ରହଣ ନ କରିବାର କାରଣ ସଂପର୍କରେ ଲେଖିଛନ୍ତି-

> ବ୍ରାହ୍ମ ସମାଜ ଓଡ଼ିଶାରେ ଚିରକାଳ ସ୍ଥାୟୀ ଓ ବିସ୍ତୃତ ହେଲେ ଓଡ଼ିଆ ଭାଷାର କି ଦଶା ହେବ ? xx ଇଂରେଜ ଶିକ୍ଷା ସଭ୍ୟତା ଫଳରେ ବ୍ରାହ୍ମସମାଜ ବଙ୍ଗଦେଶରୁ ଜାତ ହୋଇ ବଙ୍ଗଳାର ଜଳବାୟୁରେ ବର୍ଦ୍ଧିତ ହୋଇଅଛି । ଓଡ଼ିଶାର natural growth ନୁହେଁ । xx ଓଡ଼ିଶା ସତେ ଯେପରି ଅନ୍ୟର ଓଳିତଳେ ଠିଆହୋଇଛି ।[୨୬]

ସେ ଯେପରି ଅନୁଭବ କରିଛନ୍ତି, ଯେଉଁ ଜାତିର ମୌଳିକ ଚିନ୍ତା ଓ ଜ୍ଞାନ ଅଛି, ସେହି ଜାତିର ମାତୃଭାଷା ଜାତୀୟ ସାହିତ୍ୟରେ ସ୍ଥାନ ପାଏ ।

ନନ୍ଦକିଶୋର ଭାଷା ଭିତରେ ଜାତିର ଆତ୍ମାକୁ ଖୋଜିଛନ୍ତି । ସେଥିପାଇଁ ଆମେ ତାଙ୍କ ବିଚାରକୁ ଆଧୁନିକ କହିପାରିବା । ସାହିତ୍ୟର ଭାଷା ସମ୍ପର୍କରେ ନନ୍ଦକିଶୋରଙ୍କଦ୍ୱାରା ଉତ୍ଥାପିତ ଗରୁତମ ପ୍ରଶ୍ନକୁ ଅଧିକ ସ୍ୱଷ୍ଟ ଓ ସହଜ କରି ଦେଇଛନ୍ତି ଗୋପାଳ ଚନ୍ଦ୍ର ପ୍ରହରାଜ । ପ୍ରହରାଜଙ୍କର ସଂଗୃହୀତ କଥାଗ୍ରନ୍ଥ ଉତ୍କଳର କାହାଣୀ ୧୯୦୧ ମସିହାରେ ପ୍ରକାଶ ପାଇଛି । ସଂଗୃହୀତ ଲୋକକଥାର ସଂରଚନା କାଳରେ ସେ ଲୋକମୁଖର କଥିତ ଭାଷା ପ୍ରୟୋଗ ଉପରେ ଗୁରୁତ୍ୱ ଦେଇଛନ୍ତି । ଏହି କାହାଣୀ ପୁସ୍ତକର ସମୀକ୍ଷା କରିଛନ୍ତି ଗୌରୀ ଶଙ୍କର । ତାଙ୍କ ଭାଷାରେ

> ଏହି ପୁସ୍ତକର ଭାଷା ସରଳ ଓ ହାଟବାଟରର ବାଳକମାନେ ସହଜରେ ପଢ଼ି ବୁଝି ପାରିବାରେ କୌଣସି କଷ୍ଟ ନାହିଁ । ମାତ୍ର ଲେଖକ ଭାଷାକୁ ସମସ୍ତଙ୍କର ସହଜବୋଧ୍ୟ କରିବାକୁ ଯାଇ ପୁସ୍ତକର ଭାଷାର ଆକାର ଛାଡ଼ି ଯେ ଛୋଟଲୋକଙ୍କର ପ୍ରଚଳିତ କଥାବାର୍ତ୍ତାର ଭାଷା ପ୍ରଚାର କରି ଅଛନ୍ତି, ତାହା ଆମ୍ଭମାନଙ୍କୁ ଭଲ ଲାଗିଲା ନାହିଁ । xx ଲେଖକ ହେଉକୁ ହଉ, ମୋତେକୁ ମତେ, ଘେନିକୁ ଘିନି, ଏମନ୍ତକୁ ଏମିତି, ଅର୍କକୁ ଅର୍ଖ, ଶୁଦ୍ଧକୁ ଶୁଧ, ତେଲାଉଣିକୁ ତେଲଉଣି, ରାଜାକୁ ରଜା, ରୁଣ୍ଡାଇକୁ ରେଣ୍ଡେଇ, ଅପ୍ସରାକୁ ଅପସରୀ, ଉଲଘୁଣାକୁ ଉଲୁଗୁଣା ଇତ୍ୟାଦି ପୁସ୍ତକର ଆଦ୍ୟପ୍ରାନ୍ତ ବ୍ୟବହାର କରି ତାହାର ଅବୟବକୁ ଦୂଷିତ କରି ଅଛନ୍ତି । xx ଏସବୁ ଦୋଷ ନ ଥିଲେ ପୁସ୍ତକଟି ଅତୀବ ଉପାଦେୟ ହୋଇଥାଆନ୍ତା । ଆମ୍ଭେମାନେ ଭରସା କରୁ, ଲେଖକ ଭବିଷ୍ୟତ ସଂସ୍କରଣରେ ଏ ସବୁ ଦୋଷ ପରିହାର କରିବାକୁ ଯତ୍ନ କରିବେ ।[୨୨]

ପ୍ରହରାଜ ତାଙ୍କ ପରାମର୍ଶ ଗ୍ରହଣ କରିନାହାନ୍ତି । ପରିଣୀତ ଭାବ ସହିତ ସେ ସମଗ୍ର ଜୀବନ ବଞ୍ଚିଛନ୍ତି । ଏପରିକି ବ୍ରାହ୍ମ-ଦୀକ୍ଷିତ ବିଶ୍ୱନାଥ କର ମଧ ତାଙ୍କୁ ଆପଣା ଆଦର୍ଶାନୁବଦ୍ଧ କରିପାରିନାହାନ୍ତି । ଆତ୍ମାର ଅଭିବ୍ୟକ୍ତିପାଇଁ କେଉଁ ଭାଷା ସମର୍ଥ, ବିଶୁଦ୍ଧ ଭାଷା (ଉତ୍କଳ ସାହିତ୍ୟ/ ଅଏ.ମ ଭାଗ/ ପଞ୍ଚମ ସଂଖ୍ୟା/ ୧୩୧୧ ସାଲ-ପୃ. ୧୬୧-୬୪) ଦୁଇ ଖଣ୍ଡି ଓଡ଼ିଆ ପୁସ୍ତକ ଆଲୋଚନା, ବାଇମହାନ୍ତି ପାଞ୍ଜି, ଭାଗବତ ଟୁଙ୍ଗୀରେ ସନ୍ଧ୍ୟା, ଦୁନିଆର ହାଲ୍‌ଚାଲ୍, ଆମଘରର ହାଲ୍‌ଚାଲ୍ ଆଦି ପୁସ୍ତକରେ କେତେକ ଅଧ୍ୟାୟରେ ସେ ସ୍ପଷ୍ଟ ଘୋଷଣା କରିଛନ୍ତି । ଫକୀରମୋହନଙ୍କ ଛ' ମାଣ ଆଠଗୁଣ୍ଠ ଓ ରାମ ଶଙ୍କରଙ୍କର ଯୁଗଧର୍ମ ବହି ଦୁଇଟିର ଆଲୋଚନା କାଳରେ ସେ ଲେଖିଛନ୍ତି-

> ଆମ୍ଭେମାନେ ସର୍ବଦା ମାର୍ଜିତ ଓ ଶିକ୍ଷିତ ସମାଜର ଦର୍ପଣର ରହି ତତ୍‌ପ୍ରଚଳିତ ଭାଷା (ବିଶେଷ ହେଉ କି ଅଳ୍ପ ହେଉ) ବ୍ୟବହାର କରିବାରେ ଅଭ୍ୟସ୍ତ ହୋଇଅଛୁ । ଏଭଳି ଘର୍ଷଣ ଯେତିକି ବୃଦ୍ଧି ପାଉଥିବ, ତେତିକି ତେତିକି ବିଶୁଦ୍ଧ ଘରୋଇ ଭାଷା କ୍ରମଶଃ ଲୋପ ପାଇ ଉଚ୍ଚ ସ୍ଥାନ ପ୍ରଚଳିତ ମାର୍ଜିତ ଭାଷାକୁ ସ୍ଥାନ ଦେବ । ଆମ୍ଭେମାନେ ଏହି ଭାଷା ପ୍ରଚଳନ ବିରୁଦ୍ଧରେ ଲେଖୁନାହୁଁ । ଆମ୍ଭମାନଙ୍କର ମନ୍ତବ୍ୟ ଏହି ଯେ, ଯେତେ ଦୂର ପର୍ଯ୍ୟନ୍ତ ବିଶୁଦ୍ଧ ଭାଷା ବ୍ୟବହାର କରି ଆମ୍ଭମାନଙ୍କ ଭାବ ବ୍ୟକ୍ତ କରିବା, ତେତିକି ଉତ୍ତମ । xx ବିଶୁଦ୍ଧ ଘରୋଇ ଓଡିଆ ଭାଷା କେତକ ଲୋକଙ୍କ ନିକଟରେ ହେୟ, ଅପରିହାର୍ଯ୍ୟ ଓ ଇତର ପ୍ରଚଳିତ, ଯେ ସଂକ୍ରାମକ ବ୍ୟାଧି ଦ୍ୱାରା ଅନେକ ଉଚ୍ଚାସନ ମଧ ପ୍ରଭାବିତ । ଘରୋଇ ଭାଷାକୁ ସାହିତ୍ୟଗତ ଭାଷାରେ ପରିଣତ କରିବାକୁ ସବିଶେଷ ଚେଷ୍ଟା, ଯତ୍ନ ଓ ପରିଶ୍ରମ କରାଯାଇଛି । xx ଯେପରି କଥା କୁହ, ସେପରି ଲେଖ-

ପ୍ରହରାଜଙ୍କ ଭାବ ଅଭିବ୍ୟକ୍ତିର ଆଦର୍ଶ ହୋଇଛି ।[୨୮]

ସମକାଳରେ ସାହିତ୍ୟ, ଭାଷାକୁ କେନ୍ଦ୍ରକରି ଓଡିଶାର ସାହିତ୍ୟ ଗବେଷକମାନେ ଦୁଇଭାଗ ହୋଇଯାଇଛନ୍ତି । ଗୋଟିଏ ଗୋଷ୍ଠୀ ଗୀର୍ବାଣ ଓ ଅନ୍ୟ ଗୋଷ୍ଠୀ ଲୋକ/ ଗ୍ରାମ୍ୟମନସ୍କ । ଗୀର୍ବାଣମନସ୍କମାନଙ୍କ ମଧ୍ୟରେ ରହିଛନ୍ତି ଭୋଳାନାଥ ସାମନ୍ତରାୟ, ନୀଳମଣି ବିଦ୍ୟାରତ୍ନ, ପଣ୍ଡିତ ମୃତ୍ୟୁଞ୍ଜୟ ରଥ, ପୁରୁଷୋତ୍ତମ ତର୍କାଳଙ୍କାର ଆଦି ସମୀକ୍ଷକ । ସେମାନେ ଲୋକମନସ୍କ ପ୍ରହରାଜ ଓ ତାଙ୍କ ସହଧର୍ମୀମାନଙ୍କ ବିଚାରକୁ ଗ୍ରହଣ କରିପାରିନାହାନ୍ତି । ସାହିତ୍ୟର ଲୋକାୟନକୁ ସେମାନେ ବିରୋଧ କରିଛନ୍ତି । ମୃତ୍ୟୁଞ୍ଜୟଙ୍କ ପରି ପଣ୍ଡିତ 'ସଂସ୍କୃତରୁ ପ୍ରାକୃତଭାଷା', ପ୍ରତ୍ୟେକ ଭାଷାରୁ ଏକ ଏକ ଅପଭାଷାର ସୃଷ୍ଟି ହେଲା ବୋଲି ଭ୍ରମାତ୍ମକ ମନ୍ତବ୍ୟ କେବଳ ଦେଇନାହାନ୍ତି, ସାହିତ୍ୟରେ ବ୍ରାହ୍ମଣ୍ୟବାଦର ଅନ୍ୟତମ ପ୍ରବକ୍ତା ରୂପରେ ଆତ୍ମପ୍ରତିଷ୍ଠାକୁ ଶ୍ରେୟ ମଣିଛନ୍ତି । ଭାଷା ସଂକ୍ରାନ୍ତ ବହୁ ଆଲୋଚନାରେ କବିଙ୍କର ଉପର୍ଯ୍ୟୁକ୍ତ ମାନସିକତା ପ୍ରତିଫଳିତ ।[୨୯]

ବସ୍ତୁତଃ, ଭାଷା ଯେ ସାହିତ୍ୟର ଅଳଙ୍କାର ନୁହେଁ, ଏହା ସଂସ୍କୃତିଜ; ତେଣୁ ଆତ୍ମପ୍ରକାଶର ମୌଳ ଉପାଦାନ, ଉପର୍ଯ୍ୟୁକ୍ତ ଆଦର୍ଶର ବିଶ୍ୱାସୀମାନଙ୍କ ମଧ୍ୟରେ ଆମେ ଫକୀରମୋହନ, ଗୋବିନ୍ଦରଥ, ବ୍ରଜ ସୁନ୍ଦରଙ୍କ ପରି ବୟସ୍କ ଏବଂ ଗୋପବନ୍ଧୁ, ନୀଳକଣ୍ଠ, ନନ୍ଦକିଶୋର ଓ ଗୋପାଳଚନ୍ଦ୍ରଙ୍କ ପରି ତରୁଣମାନଙ୍କୁ ଗ୍ରହଣ କରିପାରିବା । ଗୋପବନ୍ଧୁ ଓ ଗୋଦାବରୀଶ ସାହିତ୍ୟକୁ କେବଳ ଲୋକାଭିମୁଖକରି ନାହାନ୍ତି, ଓଡିଆ ଲିପି ସଂସ୍କାର ପରି ଏକ ସମ୍ବେଦନଶୀଳ ଓ ଗୁରୁତ୍ୱପୂର୍ଣ୍ଣ ଚର୍ଚ୍ଚାରେ ଅଭିନିବିଷ୍ଟ ହୋଇଛନ୍ତି । ଓଡିଆ ଲିପି ସଂସ୍କାର ପ୍ରସଙ୍ଗ ପ୍ରଥମେ ଉତ୍ଥାପନ କରିଛନ୍ତି ପଣ୍ଡିତ ଗୋପବନ୍ଧୁ ଦାସ । ଆଶା ପତ୍ରିକାରେ ବିଜ୍ଞାପନ ଶୀର୍ଷକ ଏକ ଲେଖାରେ ସେ ପ୍ରଥମେ ଯୁକ୍ତ ବର୍ଣ୍ଣକୁ ଭାଙ୍ଗି ଅନୁସ୍ୱାର ଓ ହଳନ୍ତ (ଡାଇରେକ୍‌ଟର, ଅଂତରଭୁକ୍‌ତ, ଟଂକା, ପର୍‌ଯ୍ୟତ, ସଂଗେ, ଷଷ୍‌ଠ, କିଂତୁ, ଇତ୍ୟାଦି) ଯୁକ୍ତ କରି ଉଲ୍ଲେଖ କରିଛନ୍ତି । (ଆଶା/ ପ୍ରଥମ ବର୍ଷ/ ୧୮ଶ ସଂଖ୍ୟା- ୧୨. ୧. ୧୯୧୪) ବାସ୍ତବତଃ, ଗୋଦାବରୀଶ ମହାପାତ୍ର ଏକ ପତ୍ରରେ ଲିପି ସଂସ୍କାରର ଆଭିମୁଖ୍ୟ ସମ୍ପର୍କରେ ସ୍ପଷ୍ଟ କରିଦେଇଛନ୍ତି ଏବଂ ସେହି ସଂଖ୍ୟାରେ ସମ୍ପାଦକ ମଧ୍ୟ ଯୁକ୍ତ ବର୍ଣ୍ଣ ଅଭାବ ଶୀର୍ଷକ ଆଲୋଚନାରେ ଏହି ସଂସ୍କାରର ଆବଶ୍ୟକତା ଯେ କେତେ ଗୁରୁତ୍ୱପୂର୍ଣ୍ଣ, ତାହାର ବିଶଦ ବ୍ୟାଖ୍ୟା କରିଛନ୍ତି ।[୩୦] ସେମାନେ କେବଳ ଆଲୋଚନାରେ ସୀମାବଦ୍ଧ ନ ହୋଇ, ଆପଣା ଲେଖାଗୁଡିକରେ ବିଚାରର ପ୍ରୟୋଗ କରିଛନ୍ତି । ମାତ୍ର କେନ୍ଦ୍ର ଓ ଉତ୍ତର ଓଡିଶା ସେମାନଙ୍କ ଦୁଃସାହସିକତାକୁ ଗ୍ରହଣ କରିନାହିଁ ।[୩୧] ଏପରିକି ପଣ୍ଡିତ ନୀଳକଣ୍ଠ ଏକ ପତ୍ରରେ

> ସତ୍ୟବାଦୀର ଶିକ୍ଷକମାନେ ଦଳଗତ ଭାବରେ ଲିପି ସଂସ୍କାର ଉଦ୍ୟମରେ ସଂପୃକ୍ତ ନୁହନ୍ତି । xx ବ୍ୟକ୍ତିଗତ ଭାବରେ ମୁଁ ଲିପି ସଂସ୍କାରର ପକ୍ଷପାତୀ ହେଲେ ହେଁ ଗୋଦାବରୀଶ ବାବୁ ଓ ଆଶାର ସମ୍ପାଦକ ଓ ଅନ୍ୟାନ୍ୟ କେତେକ ସଂସ୍କାର ପ୍ରତ୍ୟାଶୀଙ୍କ ସହିତ ମୋର କେତେକ ବିଷୟରେ ମତଭେଦ ଅଛି । xx ଗାଳି, କଳି, ବ୍ୟଙ୍ଗ୍ୟ, ବିଦ୍ରୁପ, କୁତ୍ସା, କଦର୍ଥ ଯୁକ୍ତି ନୁହେଁ; ଦୁଃଖର କଥା, ଓଡିଶାରେ ବର୍ତ୍ତମାନ ଏହି ଶ୍ରେଣୀର ଯୁକ୍ତିର ଆଧିକ୍ୟ ।[୩୨]

ଆପଣାର ଅସମ୍ପୃକ୍ତ କଥା ଉଲ୍ଲେଖ କରିଛନ୍ତି । ଏବଂ ପରବର୍ତ୍ତୀ କାଳରେ ସେ ହିଁ ଏହି ଆନ୍ଦୋଳନର ନେତୃତ୍ୱ ନେଇଛନ୍ତି ।

ସତ୍ୟବାଦୀ ସ୍କୁଲର ଶିକ୍ଷକମାନଙ୍କୁ କେବଳ ସମାଜ ଜୀବନ ନୁହେଁ, ସାହିତ୍ୟ- ରାଜନୀତିରେ ପ୍ରକୃତ ସଂସ୍କାରର ସମ୍ବାହକ ରୂପରେ ବିବେଚନା କରିପାରିବା । ସେମାନେ ହିଁ ପ୍ରଥମେ ଦୂରବର୍ତ୍ତୀମାନଙ୍କୁ କେନ୍ଦ୍ରର କର୍ତ୍ତୃତ୍ୱରୁ ମୁକ୍ତ କରିବାପାଇଁ ଆହ୍ୱାନ ଦେଇଛନ୍ତି । ଜାତିରେ ବ୍ରାହ୍ମଣ ହୋଇ ମଧ୍ୟ ବିଚାରରେ ବ୍ରାହ୍ମଣ୍ୟବାଦର ବିରୋଧ କରିଛନ୍ତି । ସେମାନେ ଛତିଶଗଡ, ଚକ୍ରଧରପୁର, ବସ୍ତର, ସିଂହଭୂମି, ପାରଳା, ଜୟପୁର, ଇଚ୍ଛାପୁର ଓ ସେଦିନୀପୁର ଆଦି ଉପାନ୍ତ ଅଂଚଳର ସ୍ୱାତନ୍ତ୍ର୍ୟକୁ ସ୍ୱୀକାରକରିବା ସହିତ ସଂପୃକ୍ତ ଅଂଚଳର ମଣିଷମାନଙ୍କୁ ଆପଣେଇ ନେବାପାଇଁ ପରିବ୍ରାଜକ ହୋଇଛନ୍ତି । ବିଦେଶକୁ ଘର କରିଛନ୍ତି । ମଣିଷ ତୁଣ୍ଡରେ ଭାଷା କେବଳ ଏକ ଜାତିର ସାହିତ୍ୟକୁ ସମୃଦ୍ଧ କରେନାହିଁ, ଜଣକୁ ଆଉ ଆନେକଙ୍କ ସହିତ ଯୋଡିଦିଏ, ସମଗ୍ର ଜାତି ଭାଷା ମାଧ୍ୟମରେ ନିଜର ଅସ୍ତିତ୍ୱକୁ ଅନୁଭବ କରେ; ରାଧାନାଥ, ମଧୁସୂଦନ, ଗୌରୀଶଙ୍କର, ବିଶ୍ୱନାଥ, ଦୟାନିଧି, ପଣ୍ଡିତ ମୃତ୍ୟୁଞ୍ଜୟ ଏବଂ କୃଷ୍ଣପ୍ରସାଦଙ୍କ ପରି କବି ଓ ପଣ୍ଡିତମାନେ ସମ୍ଭବତଃ ଏହା ଉପଲବଧି କରିପାରି ନାହାନ୍ତି । ସାହିତ୍ୟ ଓ ଭାଷା ମାଧ୍ୟମରେ ନିଜ ନିଜର ଅହଂକୁ ଯାହା ଜାହିର କରିଛନ୍ତି । କେନ୍ଦ୍ର ଉପାନ୍ତ ଯାତ୍ରୀ ହୋଇପାରିନାହିଁ । ପରିଧିକୁ ଶ୍ରଦ୍ଧା କରିନାହିଁ । ତେଣୁ ଲକ୍ଷ୍ୟଚ୍ୟୁତ ହୋଇଛି ।

ଏବଂ, ଶ୍ୟାମସୁନ୍ଦର ରାଜଗୁରୁଙ୍କ ଆଦେଶ ଅବଗାହୀ ପଣ୍ଡିତ ଗୋପୀନାଥ ନନ୍ଦଶର୍ମାଙ୍କ ଶବ୍ଦତତ୍ତ୍ୱବୋଧ ଅଭିଧାନର ଶବ୍ଦ ଚର୍ଚ୍ଚା ରୀତି ଆଧୁନିକ ଓଡିଶାର କର୍ତ୍ତୃତ୍ୱବିଳାସୀ ନବଅଭିଜାତମନସ୍କମାନଙ୍କପ୍ରତି ଯେ ପ୍ରତିବାଦ, ଅଭିଧାନ ପ୍ରକାଶୋତ୍ତର ପ୍ରତିକ୍ରିୟା ଓ କଲମ-କନ୍ଦଳ ତାହାର ଉଦାହରଣ ।

## ଚାରି

ଶବ୍ଦତତ୍ତ୍ୱବୋଧ ଅଭିଧାନର ଜନ୍ମକୁଣ୍ଡଳୀ ସମ୍ପର୍କରେ ମୁଁ ପ୍ରଥମରୁ ଉଲ୍ଲେଖ କରିଛି, କହିଛି- ଏହା ଏକ ବ୍ୟୁତ୍ପତ୍ତିମୂଳକ ଓଡିଆ ଶବ୍ଦକୋଷ । ଏକ ବିଶୁଦ୍ଧ ଓଡିଆ ଶବ୍ଦକୋଷ ସଂକଳନପାଇଁ ପଣ୍ଡିତ ନନ୍ଦଶର୍ମା ପ୍ରାୟ ୧୮୯୬ ମସିହା ବେଳକୁ ସିଦ୍ଧାନ୍ତ ନେଇଛନ୍ତି ଏବଂ ଶବ୍ଦ ସଂକଳନ କାର୍ଯ୍ୟ ଆରମ୍ଭ କରିଛନ୍ତି ୧୮୯୭ ମସିହାରେ । ୧୯୦୫ ମସିହାରେ ଏହି କାର୍ଯ୍ୟ ଶେଷ ହୋଇଛି ଏବଂ ସେହି ବର୍ଷ ଉତ୍କଳ ସାହିତ୍ୟ ସମାଜର କର୍ମକର୍ତ୍ତାମାନଙ୍କୁ ସେ ପାଣ୍ଡୁଲିପି ହସ୍ତାନ୍ତର କରିଛନ୍ତି ।

ପଣ୍ଡିତ ନନ୍ଦଶର୍ମା ସାହିତ୍ୟ ସମାଜର କର୍ମକର୍ତ୍ତାମାନଙ୍କ ହାତରେ ପାଣ୍ଡୁଲିପି ଟେକିଦେବା ପଶ୍ଚାତରେ ମୁଖ୍ୟତଃ ଦୁଇଗୋଟି କାରଣ ରହିଛି । ପ୍ରଥମତଃ, ଏହାର କର୍ମକର୍ତ୍ତାମାନେ ଓଡିଆ ଭାଷାରେ ଏକ ଅଭିଧାନ, ଓଡିଆ ସାହିତ୍ୟର ଇତିହାସ ଏବଂ ପ୍ରାଚୀନ ପୁସ୍ତକଗୁଡିକର ସଂଗ୍ରହ ଓ ସମ୍ପାଦନର ଅଭାବ ରହିଛି ବୋଲି ଅନୁଭବ କରିଛନ୍ତି ଏବଂ ୧୯୦୩ ମସିହାରେ ସମାଜର ଦୁଇଟି ଅଧିବେଶନରେ, ଏ ସଂକ୍ରାନ୍ତରେ ବିଶଦ ଚର୍ଚ୍ଚା ହୋଇଛି । ଦ୍ୱିତୀୟତଃ, ଏହି ଆବଶ୍ୟକତା ପୂରଣ କରିବାପାଇଁ ସଭ୍ୟମାନଙ୍କୁ ନେଇ ଦୁଇଟି ଶାଖା ସମିତିର ଗଠିତହୋଇଛି । ବିଶୁଦ୍ଧ ଓଡିଆ ଶବ୍ଦ ସଙ୍କଳନ ଉଦ୍ଦେଶ୍ୟରେ ଗଠିତ ଶାଖା ସମିତିର ସଭ୍ୟ ରହିଛନ୍ତି ମଧୁସୁଦନ ଦାସ, ବି. ଏ. (ସମ୍ପାଦକ), ବ୍ରଜ ସୁନ୍ଦର ଦାସ, ନନ୍ଦକିଶୋର ବଳ ଓ ଗୋପାଳ ଚନ୍ଦ୍ର ପ୍ରହରାଜ । ସେହି ବର୍ଷ ସେମାନେ

ସ୍ୱରବର୍ଣ୍ଣାଦ୍ୟ ଶବ୍ଦ ଶେଷକରି ବ୍ୟଞ୍ଜନବର୍ଣ୍ଣର 'ଛ-ଅ'ର ପର୍ଯ୍ୟନ୍ତ ଶବ୍ଦ ସଂଗ୍ରହ ଶେଷ କରିଛନ୍ତି । ଶବ୍ଦ ସଂକଳନ କ୍ଷେତ୍ରରେ ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ଅଗ୍ରଗତି ହେଉଛି- ପ୍ରଥମ ଥରପାଇଁ ଓଡିଶାର ବିଭିନ୍ନ ଅଞ୍ଚଳର ଲୋକ କଥିତ ଶବ୍ଦ ସଂଗ୍ରହ ଉପରେ ପ୍ରାଧାନ୍ୟ ଆରୋପଣ । ଶ୍ୟାମ ସୁନ୍ଦର ରାଜଗୁରୁ (ଗଂଜାମ), ଗଙ୍ଗାଧର ମେହେର (ସମ୍ବଲପୁର), ଫକୀର ମୋହନ ସେନାପତି (ବାଲେଶ୍ୱର), ମଧୁସୂଦନ ରାଓ (ମରାଠୀ) ଆଦି ବିଦ୍ୱାନମାନଙ୍କ ଉପରେ ଏହି କାର୍ଯ୍ୟଭାର ନ୍ୟସ୍ତ କରାଯାଇଛି । ଏବଂ, ସେହି ବର୍ଷ ସମାଜର ବିଭିନ୍ନ ଅଧିବେଶନରେ ମଧୁସୁଦନ ରାଓ *ଭାଷାଶାସ୍ତ୍ର*, ଗୋପାଳଚନ୍ଦ୍ର ପ୍ରହରାଜ *ବିଶୁଦ୍ଧ ଭାଷା*, ଏବଂ ଶ୍ୟାମ ସୁନ୍ଦର ରାଜଗୁରୁ *ଓଡ଼ିଆ ସର୍ବନାମ* - ପ୍ରବନ୍ଧମାନ ପାଠ କରିଛନ୍ତି ।[୩୩] ସମାଜର ଏହି ସିଦ୍ଧାନ୍ତ ସମ୍ପର୍କରେ ପଣ୍ଡିତ ନନ୍ଦ ଅବଗତ ହୋଇଛନ୍ତି ଏବଂ ଏହାର ସୁଯୋଗ ନେବା ଉଦ୍ଦେଶ୍ୟରେ ସମାଜର ସମ୍ପାଦକ ବିଶ୍ୱନାଥ କରଙ୍କୁ ଆପଣା ଅଭିଧାନର ମୁଦ୍ରଣଦାୟିତ୍ୱ ସମାଜ ଗ୍ରହଣକରିବାପାଇଁ ଲିଖିତ ଅନୁରୋଧ କରିଛନ୍ତି ।

୧୯୦୫ ମସିହାରେ ଫେବୃଆରି ୨୪ ତାରିଖରେ ଅନୁଷ୍ଠିତ ସମାଜର ତୃତୀୟ ବର୍ଷର କାର୍ଯ୍ୟକାରିଣୀ ସମିତିର ପ୍ରଥମ ବୈଠକରେ ସଭ୍ୟମାନେ ନନ୍ଦ ମହାଶୟଙ୍କର ଆବେଦନ ସମ୍ପର୍କରେ ଆଲୋଚନା କରିଛନ୍ତି ଏବଂ ନମୁନା ସ୍ୱରୁପ ଏହାର କେତେକ ଅଂଶ ପଠାଇବାକୁ ତାଙ୍କୁ ନିର୍ଦ୍ଦେଶ ଦିଆଯାଇଛି । ଏପରି ଏକ ସୁସମ୍ବାଦର ଅପେକ୍ଷାରେ ଥିବା ପଣ୍ଡିତ ନନ୍ଦ ତାହା ସ୍ୱୀକାର କରିଛନ୍ତି । ସେହି ବର୍ଷ ଏପ୍ରିଲ୍ ମାସ ୨୦ ତାରିଖରେ ଅନୁଷ୍ଠିତ ଦ୍ୱାତିୟ ବୈଠକରେ ଏକ ବିଶେଷଜ୍ଞ ସମିତିଦ୍ୱାରା ପାଣ୍ଡୁଲିପି ପରୀକ୍ଷିତ ଓ ଗୃହୀତ ହୋଇଛି । ସମାଜ ଯେଉଁ ପ୍ରଣାଳୀରେ ଅଭିଧାନ ଗ୍ରନ୍ଥ ପ୍ରଣୟନର ବ୍ୟବସ୍ଥା କରିଥିଲେ, ପଣ୍ଡିତ ମହାଶୟ ସେହି ପ୍ରଣାଳୀ ଅବଲମ୍ବନ କରିଥିବାରୁ ସମାଜ ସ୍ୱତନ୍ତ୍ର ଏକ ଶବ୍ଦକୋଷ ସଂକଳନରୁ ନିବୃତ୍ତ ରହିଛି । ଗ୍ରନ୍ଥର ମୁଦ୍ରଣପାଇଁ ପ୍ରାୟ ଦୁଇହଜାର ଟଙ୍କା ଅଟକଳ କରାଯାଇଛି ଏବଂ ପ୍ରଥମ ମୁଦ୍ରଣ ପୁସ୍ତକଗୁଡ଼ିକର ବିକ୍ରୟଲବ୍ଧ ଅର୍ଥର ଅର୍ଦ୍ଧାଂଶ ଗ୍ରନ୍ଥକର୍ତ୍ତା ପ୍ରାପ୍ତ ହେବେ ଓ ପୁସ୍ତକରେ ଗ୍ରନ୍ଥକର୍ତ୍ତାଙ୍କ ସ୍ୱତ୍ୱ ଅକ୍ଷୁଣ୍ଣ ରହିବ ବୋଲି ସଭ୍ୟମାନେ ମତବ୍ୟକ୍ତ କରିଛନ୍ତି । ଏଥିରେ ଆବଶ୍ୟକୀୟ ସମାର୍ଜ୍ଜନପାଇଁ ଏକ ସବ୍‌କମିଟି ଗଠିତ ହୋଇଛି । ମଧୁସୂଦନ,ବିଶ୍ୱନାଥ, ଗୋପାଳ ଚନ୍ଦ୍ର, ନନ୍ଦ କିଶୋର ଓ ମୃତ୍ୟୁଞ୍ଜୟ ଏହାର ସଭ୍ୟ ରହିଛନ୍ତି । ଜଣେ ଯୁବକର ଏହି ଉଦ୍ୟମ ଦେଖି ଅଭିଭୂତ ହୋଇଛନ୍ତି ଶ୍ରୀ ମଧୁସୁଦନ ଦାସ । ସମାଜ ପକ୍ଷରୁ ତାଙ୍କୁ କୃତଜ୍ଞତା ଓ ସମ୍ମାନ ପ୍ରଦର୍ଶନପାଇଁ ସେ ପ୍ରସ୍ତବ ଦେଇଛନ୍ତି ଏବଂ ତାହା କାର୍ଯ୍ୟକାରୀ ହୋଇଛି । ଗ୍ରନ୍ଥର ମୁଦ୍ରଣପାଇଁ ଉତ୍କଳ ସମ୍ମିଳନୀ ଏକ ଶହ ଟଙ୍କା, ରାଧାଚରଣ ଦାସ ପଚାଶ ଟଙ୍କା ଓ ଶ୍ୟାମସୁନ୍ଦର ନନ୍ଦ ଦୁଇ ଶହ ଟଙ୍କା ସାହାଯ୍ୟ କରିଛନ୍ତି ।[୩୪]

ଏହି ବୃହତ୍ ଅଭିଧାନର ମୁଦ୍ରଣପାଇଁ ଲୋଡା ଅର୍ଥ ସଂଗ୍ରହ ଉଦ୍ଦେଶ୍ୟରେ ସାହିତ୍ୟ ସମାଜ ରାଜା, ଜମିଦାର, ବଦାନ୍ୟ ବ୍ୟକ୍ତି ବିଶେଷ ଓ ଅନୁଷ୍ଠାନଗୁଡିକୁ ଅନୁରୋଧ କରିଛି । ମାତ୍ର ବାମଣ୍ଡା(୧୦୦.୦୦ଙ୍କା) ଓ ଖଡ଼ିଆଳ (୨୫.୦୦ଙ୍କା) ରାଜାଙ୍କ ବ୍ୟତୀତ ଅନ୍ୟ କେହି ଅର୍ଥ କି ଉତ୍ସାହ ପ୍ରଦାନ କରିନାହାନ୍ତି । ଶେଷକୁ ସଂକଳକଙ୍କୁ ଦୁଇଶହ ଗ୍ରାହକ ଯୋଗାଡ କରିବାକୁ କୁହାଯାଇଛି ଏବଂ ଆଶ୍ଚର୍ଯ୍ୟର କଥା, ସେ ପ୍ରାୟ ତିନି ଶହ ସଂଖ୍ୟକ ଗ୍ରାହକ ସଂଗ୍ରହରେ ସମର୍ଥ ହୋଇଛନ୍ତି । ଲେଖକଙ୍କର ଏତେ ଆଗ୍ରହ ସତ୍ତ୍ୱେ ଙ୍କା ଅକୁଳାଣ ହୋଇଛି । ଫଳତଃ, ଗ୍ରନ୍ଥ ଅମୁଦ୍ରିତ ରହିଛି ।

ଏହାର ପ୍ରକାଶନପାଇଁ ସମାଜର କେତେକ ପ୍ରଭାବଶାଳୀ ସଭ୍ୟ ଯେ ଆଗ୍ରହୀ ନ ଥିଲେ ଏବଂ ସଂକଳକଙ୍କ ସକଳ ଉଦ୍ୟମକୁ ଭଣ୍ଡୁର କରିବାଲାଗି ଚକ୍ରାନ୍ତ କରୁଥିଲେ-ଏପରି ଅନୁମାନକୁ ଅସ୍ୱୀକାର କରାଯାଇ ନ ପାରେ । ଭଗବାନ ମହାପାତ୍ର ଶର୍ମା ନାମକ ଜନୈକ ବ୍ୟକ୍ତି କେତେକ ବଦ୍ୟନଙ୍କ ଅର୍ଥରେ ପ୍ରତିଷ୍ଠିତ ଉତ୍କଳ ସାହିତ୍ୟ ପ୍ରେସ୍‌ରେ ଏହା ମୁଦ୍ରିତହେବା ଉଚିତ ବୋଲି ମତ ଦେଇଛନ୍ତି । ଏବଂ ତତ୍ ସହିତ ସ୍ୱୟଂ ବିଶ୍ୱନାଥ ଦାତାମାନଙ୍କ ସମ୍ପତ୍ତିକୁ ପୁରୁଷାନୁକ୍ରମେ ଭୋଗକରରିବାପାଇଁ ମସୁଧା କରୁଛନ୍ତି ବୋଲି ଅଭିଯୋଗ ଆଣିଛନ୍ତି ।[୩୫] ମାତ୍ର ତାଙ୍କ ଅଭିଯୋଗ ଅମଳ ଦେଇନି । ଶେଷକୁ ଗ୍ରନ୍ଥ ପ୍ରକାଶନର କୌଣସି ସମ୍ଭାବନା ନ ଦେଖି, ବିଚରା ସଙ୍କଳକ ୧୯୧୫ ମସିହାରେ ପାଣ୍ଡୁଲିପି ଫେରାଇ ନେଇଛନ୍ତି । ଏହା ସତ୍ତ୍ୱେ, ସାହିତ୍ୟ ସମାଜ ଓଡ଼ିଆ ଗ୍ରନ୍ଥମାନଙ୍କରେ ବ୍ୟବହୃତ ସେପରି ଆବଶ୍ୟକୀୟ ସାଧୁ ଶବ୍ଦମାନ ଯୋଗକଲେ ଏହା ଅପେକ୍ଷାକୃତ ଅଧିକ ଉପାଦେୟ ଓ ସମାଦୃତ ହେବ ଏବଂ ଯେକୌଣସି ପ୍ରକାରେ ସମାଜ ପକ୍ଷରୁ ଏହା ମୁଦ୍ରିତ କରାଯିବ ବୋଲି ଛଳନା କରିଛି । ଏବଂ, ଏତେ ଦିନ ପାଖରେ ରଖିଲା ପରେ ବିଶେଷଜ୍ଞମାନେ ଏଥିରେ ମାତ୍ର ଏକ ଶହ ସଂଯୋଜନ କରିଛନ୍ତି । ସବୁଠାରୁ ଗୁରୁତ୍ୱପୂର୍ଣ୍ଣ କଥା, ସମାଜର ପ୍ରତିଷ୍ଠାତା-ସଭାପତି ମଧୁସୂଦନ ରାଓକର୍ତ୍ତୃକ ସଂକଳିତ ସୁଖବୋଧ ଅଭିଧାନ ପ୍ରକାଶ ପାଇଛି ୧୯୧୨ ମସିହାରେ । (୩୬) ଛାତ୍ର ଓ ଜନସାଧାରଣଙ୍କ ଆବଶ୍ୟକତା ପୂରଣାର୍ଥେ ପ୍ରକାଶିତ ଏହି ସଂସ୍କୃତାୟିତ ଓଡ଼ିଆ ଶବ୍ଦକୋଷ ଦେଖି ନିଶ୍ଚିତ ଭାବରେ ପଣ୍ଡିତ ନନ୍ଦଶର୍ମାଙ୍କୁ ଅନ୍ୟମନସ୍କ ହୋଇଯାଇଥିବେ । ଏବଂ, ପାଣ୍ଡୁଲିପି ଫେରସ୍ତ ନେବାପରି ଏକ ଅପ୍ରୀତିକର ସିଦ୍ଧାନ୍ତ ସେ ଗ୍ରହଣ କରିଥିବେ ।

ସାହିତ୍ୟ ସମାଜର ଶବ୍ଦତତ୍ତ୍ୱବୋଧ ଅଭିଧାନ ପ୍ରକାଶନ-କୈନ୍ଦ୍ରିକ ରାଜନୀତିକୁ ଦକ୍ଷିଣୀ ଶାସକମାନେ ସମ୍ଭବତଃ ଏକ ମର୍ଯ୍ୟାଦାର ପ୍ରସଙ୍ଗ ଭାବରେ ଗ୍ରହଣକରିଛନ୍ତି । ନନ୍ଦ ମହାଶୟ ଏହାର ପ୍ରକାଶନ ନିମିତ୍ତ ଦାଣ୍ଡକୁ ଗୋଡ଼ କାଢ଼ିଛନ୍ତି । ରାଜା, ମହାରାଜା, ପାଠକ, ଜନସାଧାରଣ, ବଦାନ୍ୟ ବ୍ୟକ୍ତିବିଶେଷ ଏବଂ ସରକାରଙ୍କର ଦ୍ୱାରସ୍ଥ ହୋଇଛନ୍ତି । ଏହି ଦୁରୂହ କାର୍ଯ୍ୟରେ ତାଙ୍କୁ ସାହାଯ୍ୟ କରିଛନ୍ତି, ଧରାକୋଟର ରାଜା ମଦନ ମୋହନ ସିଂହଦେଓ ଓ ହରିହର ପଣ୍ଡା । ସେମାନେ ମାନ୍ଦ୍ରାଜ, ବିହାର ଓ ଓଡ଼ିଶା ସରକାରଙ୍କୁ ଅର୍ଥ ଅନୁଦାନ ନିମିତ୍ତ ଆବେଦନ କରିଛନ୍ତି । ବିହାର ଓ ଓଡ଼ିଶା ଗଭର୍ଣ୍ଣମେଣ୍ଟ ଏକ ଶହ ସାର ବହି କିଣିବାପାଇଁ, ଯଥାକ୍ରମେ ଦୁଇ ହଜାର ଓ ଏକ ହଜାର ଟଙ୍କା ମଞ୍ଜୁର କରିଛନ୍ତି । ମଦନ ମୋହନ ସିଂହଦେଓ ଦୁଇଶହ ଓ ପାରଳା ମହାରାଜା କୃଷ୍ଣଚନ୍ଦ୍ର ଗଜପତି ଦେବ ତିନି ହଜାର ଟଙ୍କା ସାହାଯ୍ୟ ଦେଇଛନ୍ତି । ଏହାର ମୁଦ୍ରଣ କାର୍ଯ୍ୟ ତଦାରଖପାଇଁ ପାରଳାଖେମୁଣ୍ଡିର ରାଜ କଲେଜର ଅଧ୍ୟାପନା କାର୍ଯ୍ୟରୁ ତାଙ୍କୁ ଛଅମାସ ଛୁଟି ମିଳିଛି । ଏଗାର ଶହ ପନ୍ଦର ପୃଷ୍ଠା ବିଶିଷ୍ଟ ଏହି ବିପୁଳକାୟ କୋଷଗ୍ରନ୍ଥ ପ୍ରକାଶପାଇଛି ୧୯୧୬ ମସିହାମାର୍ଚ୍ଚ ମାସରେ । ଉତ୍କଳ ସାହିତ୍ୟ ପ୍ରେସ୍‌ର ସର୍ବମୟ କର୍ତ୍ତା ବିଶ୍ୱନାଥ କର ଏହାର ମୁଦ୍ରଣ ଦାୟିତ୍ୱ ନେଇଛନ୍ତି । ଆପଣାର ଅକ୍ଳାନ୍ତ ଶ୍ରମର ସ୍ମାରକୀ କୋଷଗ୍ରନ୍ଥକୁ ଦେଖି ପଣ୍ଡିତ ନନ୍ଦ ଏହାର ବିଜ୍ଞାପନରେ ଉଲ୍ଲେଖ କରିଛନ୍ତି

> ମୁଁ ଯେତେବେଳ ସେହି ବିଦ୍ୱାନ ସମାଜର ସମଗ୍ର ଆଦେଶ ପାଳନରେ ଏକାନ୍ତ ନିଷ୍ଠାବାନ୍, ସେତେବେଳେ ସମାଜ ଯେ ମତ୍ ପ୍ରତି କୌଣସି ପ୍ରକାର ସଦୟ ନ

ହେବେ, ଏହା ମୁଁ ବିଶ୍ୱାସ କରେ ନାହିଁ ଏବଂ ମୁଁ ଏହି ଅଭିଧାନ ଖଣ୍ଡକର ଲେଖକ ମାତ୍ର । କିନ୍ତୁ ଶ୍ରୀମାନ ପାରଳାଧୀଶ୍ୱର ମହୋଦୟ ଏହାର ପରିପୋଷକ ଓ ଜୀବନ ଦାତା ଅଟନ୍ତି । (ବିଜ୍ଞାପନ: ଶବ୍ଦତତ୍ତ୍ୱବୋଧ ଅଭିଧାନ)[୩୭]

ଏବଂ, ପଣ୍ଡିତ ମହାଶୟଙ୍କ ଅନୁରୋଧ କ୍ରମେ ଗ୍ରନ୍ଥର ମୁଖବନ୍ଧ ଲେଖିଛନ୍ତି, ଏହାର ପ୍ରକାଶନର ଅନ୍ୟତମ ପୃଷ୍ଠପୋଷକ, ଧରାକୋଟର ରାଜା ମଦନ ମୋହନ ସିଂହଦେଓ । ଗ୍ରନ୍ଥର ପ୍ରକାଶନ ଓଡ଼ିଆର ଭାଷା, ସାହିତ୍ୟ, ସଂସ୍କୃତି ଓ ରାଜନୀତିର ନେତୃତ୍ୱ ନେଇଛି ବୋଲି ଦାବି କରୁଥିବା କଟକ ପ୍ରତି ଏହା କେବଳ ଏକ ଦୃଢ଼ ପ୍ରତିବାଦ ନୁହେଁ, ସତେ ଯେପରି ନବ ସାମନ୍ତମାନଙ୍କ ହୀନ ଚକ୍ରାନ୍ତର ବିବସ୍ତ୍ରାୟନ । ଏଥିପାଇଁ ଦକ୍ଷିଣକୁ ସତ୍ୟବାଦୀ ସ୍କୁଲର ପଣ୍ଡିତମାନେ ପ୍ରଚୋଦିତ କରିଛନ୍ତି ଏବଂ ଗୌରୀଶଙ୍କର, ବିଶ୍ୱନାଥ ଓ ମୃତ୍ୟୁଞ୍ଜୟ ପ୍ରମୁଖ ହସ୍ତୀମାନଙ୍କ କର୍ତ୍ତୃତ୍ୱକୁ ପଣ୍ଡିତଙ୍କ ଉଦ୍ୟମ ସତେ ଯେପରି ଆହତକରିଛି ।

ଅଭିଧାନର ମୁଦ୍ରଣ କାର୍ଯ୍ୟ ଶେଷ ହୋଇଆସୁଛି । ଫେବୃଆରିରେ ପ୍ରକାଶ ପାଇବ ।ଏବଂ ନନ୍ଦ ଓଡ଼ିଆ ଭାଷାର ଇତିହାସ ଖଣ୍ଡିଏ ଲେଖିବାକୁ ମନସ୍ଥ କରିଥିବା ସମ୍ବାଦ ପ୍ରକାଶ ପାଇଛି ଜାନୁଆରି ମାସ ଚବିଶ ତାରିଖରେ । ସେହି ବର୍ଷ ମାର୍ଚ୍ଚ ମାସ କୋଡ଼ିଏ ତାରିଖରେ ଅନ୍ୟ ଏକ ସମ୍ବାଦରେ- ଅଭିଧାନର ଛାପାକାର୍ଯ୍ୟ ଶେଷ ହୋଇଛି । ଉତ୍କଳ ସାହିତ୍ୟାକାଶରେ ଏହା ଏକ ଅଭିନବ ସମ୍ବାଦ । ନନ୍ଦ ମହାଶୟଙ୍କ ବିନା ଏ କାର୍ଯ୍ୟ ଏପରି କୃତିତ୍ୱର ସହ ଅନ୍ୟ କାହାରି ଦ୍ୱାରା ହୋଇ ପାରିଥାନ୍ତା କି ନାହିଁ ସନ୍ଦେହ । ଏବଂ, ୨୭ ତାରିଖର ଅଭିଧାନ ପ୍ରକାଶିତ ହେବାର ପ୍ରଥମ ସମ୍ବାଦ ପ୍ରକାଶ ପାଇଛି । ଏଥିରେ ଆଶା ପତ୍ରିକାର ସମ୍ପାଦକ ଉଲ୍ଲେଖ କରିଛନ୍ତି-

ପ୍ରିୟ ଗ୍ରାହକଗଣ, ଯେଉଁ ଅଭିଧାନର ମୁଦ୍ରଣ ଭାର ବହୁ ବର୍ଷ ପୂର୍ବେ ସମାଜ ଗହଣ କରିଥିଲେ, ଯାହାର ବ୍ୟୟ ନିର୍ବାହାର୍ଥେ ଆପଣାରମାନଙ୍କୁ ବହୁ ଅର୍ଥବ୍ୟୟ ଓ କଷ୍ଟ ସହକାରେ ଗ୍ରାହକ କରି ନେଇଅଛି, ସେହି ଗ୍ରନ୍ଥ ଖଣ୍ଡିକ ବର୍ତ୍ତମାନ ସମଗ୍ର ଉତ୍କଳ ସାହିତ୍ୟରେ ପ୍ରଚଳିତ ସଂସ୍କୃତ ଶବ୍ଦମାନଙ୍କର ବ୍ୟୁତ୍ପତ୍ତିକ୍ରମ ପ୍ରଭୃତିରେ ସମାଳଂକୃତ ଓ ବୃହଦାକାର ହୋଇ ବିହାର, ଓଡ଼ିଶା ଆଉ ମାନ୍ଦ୍ରାଜ ହତାରେ ଶ୍ରୀମାନ ଗଭର୍ଣ୍ଣମେଣ୍ଟ ମହୋଦୟଙ୍କଦ୍ୱାରା ଅନୁମୋଦିତ, ପୁରସ୍କୃତ ହୋଇ ପାରଳାର ଉଦୀୟମାନ ଅଭିନବ ମହାରାଜାଙ୍କ ସାହାଯ୍ୟରେ ମୁଦ୍ରିତ ହୋଇ ବାହାରିଛି ।"

ଏବଂ, ଏହି ଗ୍ରନ୍ଥ ପାଠକ, ଅଗ୍ରୀମ ଗ୍ରାହକ ଓ ଶିକ୍ଷା ଦପ୍ତରକୁ ଯିବା ପୂର୍ବରୁ, ମାର୍ଚ୍ଚ ପନ୍ଦର ତାରିଖରେ ଅନୁଷ୍ଠିତ ଉତ୍କଳ ସାହିତ୍ୟ ସମାଜର ଦ୍ୱାଦଶ ବର୍ଷର ଚତୁର୍ଥ ଅଧିବେଶନରେ ସଭ୍ୟମାନେ ସଂକଳକଙ୍କ ଉପରେ ସଣୁଆସୀ ଆକ୍ରମଣ ଆରମ୍ଭ କରିଦେଇଛନ୍ତି । ଅଭିଧାନ ମୁଦ୍ରଣରେ (୧) ସମାଜର ନକାରାତ୍ମକ ଆଭିମୁଖ୍ୟ, (୨) ଓଡ଼ିଆ ଭାଷାର ସର୍ବ ଶ୍ରେଷ୍ଠ କୋଷଗ୍ରନ୍ଥ ରୂପରେ ଏହାର ପ୍ରଚାର, (୩) ଅନ୍ୟ ପଣ୍ଡିତମାନଙ୍କ ବିଦ୍‌ବର୍ତ୍ତା ପ୍ରତି କଟାକ୍ଷ,(୪) ସ୍କୁଲ କଲେଜରେ ପାଠ୍ୟପୁସ୍ତକ ଭାବେ ସରକାରୀ ସ୍ୱୀକୃତି ଓ ଅର୍ଥ ଅନୁଦାନ, ସେମାନଙ୍କର ବିକ୍ଷୋଦ୍‌ଗାରର କାରଣ ହୋଇଛି । ଏକ ଅଭିଧାନର ପ୍ରକାଶନକୁ କେନ୍ଦ୍ର କରି ଓଡ଼ିଶାର ନେତୃସ୍ଥାନୀୟମାନେ ପରସ୍ପର ପ୍ରତି ଯେଉଁ ଶବ୍ଦ ଓ ବାକ୍ୟମାନ

ପ୍ରୟୋଗ କରିଛନ୍ତି, ତାହାକୁ ଓଡ଼ିଆ ଅସ୍ମିତାର ଅନ୍ୟତମ ହୃଦ୍ୟ ଉଦାହରଣ ଭାବରେ ଆମେ ଗ୍ରହଣ କରିପାରିବା କି, ତାହା ବିଚାର୍ଯ୍ୟ ।

### ପାଞ୍ଚ

ଶବ୍ଦତତ୍ତ୍ୱବୋଧ ଅଭିଧାନ ବଜାରକୁ ଆସୁଣୁ ନ ଆସୁଣୁ ଯେଉଁ ଦୁଇଖଣ୍ଡ ପତ୍ର ଉତ୍କଳ ଦୀପିକାରେ ପ୍ରକାଶ ପାଇଥିଲା, ଆଲୋଚନା ଆରମ୍ଭରେ ମୁଁ ତତ୍ ସଂକ୍ରାନ୍ତରେ ଉଲ୍ଲେଖ କରିଛି । ସମ୍ଭବତଃ ପଣ୍ଡିତ ମୃତ୍ୟୁଞ୍ଜୟ ରଥ, ଉତ୍କଳ ସାହିତ୍ୟ ପ୍ରେସ୍‌ରୁ ଅଭିଧାନ ସଂଗ୍ରହ କରିଛନ୍ତି ଏବଂ କାଳ ବିଳମ୍ବ ନକରି ଆଲୋଚନାଟିଏ ପ୍ରସ୍ତୁତ ମଧ୍ୟ କରିଛନ୍ତି । ଏପ୍ରିଲ ମାସ ଦଶ ତାରିଖରେ, ଉତ୍କଳ ସାହିତ୍ୟ ସମାଜ ଏହି ପ୍ରବନ୍ଧ ପାଠପାଇଁ ସଭାର ଆୟୋଜନ କରିଛି ଏବଂ ଠିକ୍ ସେହିଦିନ ହିଁ ଉତ୍କଳ ଦୀପିକାରେ ସଭା ସଂପର୍କରେ ସମ୍ବାଦ ପ୍ରକାଶପାଇଛି । ସନ୍ଧ୍ୟା ଛ' ଘଟିକା ତିରିଶ ମିନିଟ୍‌ରେ କଟକ ଟ୍ରେନିଂ ସ୍କୁଲର ସଭା କକ୍ଷରେ ପ୍ରାୟ ପଚାଶ ସରିକି ସଭ୍ୟ ଓ ଏକ ଶହ ଛାତ୍ର ଏକାଠି ହୋଇଛନ୍ତି । ସଭାରେ ଅଧକ୍ଷତା କରିଛନ୍ତି ରାୟବାହାଦୂର ସୁଦାମ ଚରଣ ନାୟକ । ପ୍ରବନ୍ଧ ପାଠ ଆରମ୍ଭ ହେବା ପୂର୍ବରୁ, ପାଠର ଉଚିତତା ଓ ଅନୁଚିତତା କେନ୍ଦ୍ର କରି ସଭା ଦୁଇ ଭାଗ ହୋଇଯାଇଛି । କେତେକ ସଭ୍ୟ- ଗ୍ରନ୍ଥ ପ୍ରାୟ ପନ୍ଦର ଜଣଙ୍କ ହାତକୁ ଆସିନାହିଁ । ସେଥିରେ ସାପ କି ବେଙ୍ଗ, କି ମାଛ ଆଉ କ'ଣ ଅଛି ତାହା କେହି ଜାଣି ନାହିଁ । ତେଣୁ ଏହାର ଆଲୋଚନା ଅନାବଶ୍ୟକ ବୋଲି ଚର୍ଚ୍ଚା କରିଛନ୍ତି । ଯୋଗେଶ ଚନ୍ଦ୍ର ରାୟ ଶ୍ରୋତାମାନଙ୍କୁ ବେଶ୍ ଚମତ୍କାର ପ୍ରଶ୍ନଟିଏ ପଚାରିଛନ୍ତି । ତାଙ୍କ ଭାଷାରେ

> ଯଦି ଗ୍ରନ୍ଥ ସମ୍ବନ୍ଧରେ ସାହିତ୍ୟ ସମାଜର କୌଣସି ସମ୍ବନ୍ଧ ନଥାଏ, ତେବେ ସମାଜର ଏଥିରେ ଏତେ ମୁଣ୍ଡବ୍ୟଥା କାହିଁକି ? ପ୍ରବନ୍ଧ ପାଠ ସମ୍ପର୍କରେ ବିଶ୍ୱନାଥ କରଙ୍କ ମନ୍ତବ୍ୟ ଖୁବ୍ ଗୁରୁତ୍ୱପୂର୍ଣ୍ଣ । ସେ କହିଛନ୍ତି- ଅଭିଧାନ ଖଣ୍ଡିକ ଯେପରି ତରବରିଆ ହୋଇ ଛପାଯାଇଛି, ଆଲୋଚନା ପ୍ରବନ୍ଧ ମଧ୍ୟ ତରବରିଆ ହୋଇ ବାହାରୁଛି । ଅଭିଧାନ ଖଣ୍ଡି ସାହିତ୍ୟ ସମାଜ ସହିତ ସଂଶ୍ଲିଷ୍ଟ ଥିବାରୁ ଜନସାଧାରଣ ସମାଜକୁ ଦାୟୀ କରିବାର ଥିବାରୁ ଏହି ଆଲୋଜନା ସମାଜରେ ପଠିତ ହେବ କି ନା ତତ୍‌ସମ୍ପର୍କରେ ଚର୍ଚ୍ଚା ହେବା ଉଚିତ୍ ।

ପ୍ରକାଶ ଥାଉ କି, ଅଭିଧାନରେ ଶବ୍ଦସଂକଳନ ପଦ୍ଧତିକୁ ବିଚାର କରିବାପାଇଁ ସମାଜ ଏକ ଉପ- ସମିତି ଗଠନ କରିଥିଲା । ସେମାନେ ତନ୍ନ ତନ୍ନ କରି ଏହାର ପରୀକ୍ଷା କରିଥିଲେ । ଏବଂ, ଅନୁକୂଳ ମନ୍ତବ୍ୟ ମଧ୍ୟ ଦେଇଥିଲେ । କର ଏହି ଉପସମିତିର ଅନ୍ୟତି ସଦସ୍ୟ ଥିଲେ ଏବଂ ଏକ ପତ୍ରରେ ପଣ୍ଡତ ନନ୍ଦଙ୍କର କାର୍ଯ୍ୟଧାରାର ଭୂୟସୀ ପ୍ରଶଂସା କରିଥିଲେ । ପୁନଶ୍ଚ ପଣ୍ଡିତ ନନ୍ଦଙ୍କ ଶବ୍ଦତତ୍ତ୍ୱବୋଧ ଅଭିଧାନ ସାହିତ୍ୟ ପେସ୍‌ରେ ହିଁ ଏହା ମୁଦ୍ରିତ ହୋଇଥିଲା । ଏସବୁ ଜାଣି ବି, କରଙ୍କ ପ୍ରବନ୍ଧ ପାଠ ସଂକ୍ରାନ୍ତ ମନ୍ତବ୍ୟ କେତେ ମାତ୍ରାରେ ଅଭିସନ୍ଧିମୂଳକ, ତାହା ଅନୁମେୟ ।

ମଧୁସୂଦନ ଦାସ ଗ୍ରନ୍ଥ ନଦେଖିଥିଲେ ମଧ୍ୟ ରସିକ, ତତ୍ତ୍ୱାଭିଜ୍ଞ ପଣ୍ଡିତମାନେ ସମାବେଶରୁ ସବୁ କିଛି ଜାଣି ପାରିବେ ବୋଲି ମନ୍ତବ୍ୟ ଦେବା ସହିତ ଏହାର ଦୋଷଗୁଣ ବାଛିବାପାଇଁ ଏକ

ସବ୍- କମିଟି ଗଠନର ପ୍ରସ୍ତାବ ଦେଇଛନ୍ତି ଏବଂ ପ୍ରବନ୍ଧ ପାଠକଙ୍କ ବ୍ୟତୀତ ମାତ୍ର ଛଅଜଣ ସଭ୍ୟ ହାତଟେକି ନିଜର ମନୋଭାବ ପ୍ରକାଶ କରିଛନ୍ତି । ଅଧିକ ସଂଖ୍ୟକ ସଭ୍ୟ ନିରବ ରହିଛନ୍ତି । ସଭାପତି କିନ୍ତୁ ବହୁମତକୁ ସମ୍ମାନ ନ ଜଣାଇ, ପଣ୍ଡିତ ରଥ ମହାଶୟଙ୍କୁ ଏହା ଉପସ୍ଥାପନ କରିବା ପାଇଁ ନିର୍ଦ୍ଦେଶ ଦେଇଛନ୍ତି । ରଥ ମହାଶୟ ପ୍ରାୟ ଦେଢଘଣ୍ଟାଧରି ପ୍ରବନ୍ଧ ପଢିଛନ୍ତି । ମାତ୍ର ସଭ୍ୟମାନେ ପ୍ରବନ୍ଧ ସଂପର୍କରେ ଆଲୋଚନାପାଇଁ ଆଗ୍ରହୀ ହୋଇନାହାନ୍ତି ।

ଉତ୍କଳ ଦୀପିକାର ସମ୍ପାଦକ କିନ୍ତୁ ଆଲୋଚନା ସଭା ସମ୍ବନ୍ଧରେ ଭିନ୍ନ ମତ ଦେଇଛନ୍ତି । ପତ୍ରିକାରେ ପ୍ରକାଶ ପାଇଛି

> ଗ୍ରନ୍ଥ ଖଣ୍ଡି, ବିଶେଷତଃ ଅଭିଧାନ ପ୍ରକାଶିତ ହେବା ମାତ୍ରେ ଏତେ ସରିତ ହୁରି ପଡିଯିବା ପ୍ରାଣ ସଞ୍ଚାରର ଅକାଟ୍ୟ ଚିହ୍ନ । କୌଣସି ଲେଖକ ଦୋଷଶୂନ୍ୟ ବୋଲି ଆପଣାକୁ କହି ନପାରନ୍ତି । ବଡ ବଡ ପୁସ୍ତକ ପ୍ରକାଶ କରିବାକୁ ଯାଇ ତହିଁରେ ଦୋଷନଥିବା କିଏ ସାହସ କରିପାରେ ? ଯେତେ ଆଲୋଚନା ହେବ, ତେତେ ଦୋଷଗୁଣ ବଛା ହୋଇ ସାହିତ୍ୟର ଅଙ୍ଗ ପରିପୁଷ୍ଟ ହେବ ।[୩୮]

ଉତ୍କଳ ସାହିତ୍ୟ ସମାଜର ଏହି ସିଦ୍ଧାନ୍ତ ଯେ କେତେ ମାତ୍ରାରେ ଅସୂୟା ପ୍ରଣୋଦିତ, ଏକଦେଶଦର୍ଶୀ ଥିଲା, ସଭାରେ ଉପସ୍ଥିତ ଜନୈକ ପ୍ରିୟନାଥ ମହାପାତ୍ର ଆଶା ପତ୍ରିକାକୁ ଲେଖିଥିବା ଏକ ପତ୍ର ତାହାର ଦୃଷ୍ଟାନ୍ତ । ମହାପାତ୍ରଙ୍କ ଲେଖିଛନ୍ତି

> ସଭା ଭଙ୍ଗ ହେଲା, ଯୁଦ୍ଧପରେ ବିଜେତା ପକ୍ଷର ସୈନିକ ବୃନ୍ଦ ସେନାପତିଙ୍କୁ ଚତୁଃପାର୍ଶ୍ୱରେ ବେଷ୍ଟନ କରି ଆନନ୍ଦ ପ୍ରକାଶ କଲାଭଳି କିମ୍ବା ଫୁଟ୍‌ବଲ ମ୍ୟାଚ୍‌ରେ କପ୍ ବା ସିଲଡ୍ ନେବା ଦଳ ସେମାନଙ୍କ ପ୍ରଧାନ ଶିକ୍ଷକଙ୍କୁ ବେଷ୍ଟନ କରି ଆନନ୍ଦରେ ନୃତ୍ୟ କଲାଭଳି, କରତାଳି ପ୍ରଦାନକାରୀ ଛାତ୍ରବୃନ୍ଦ ରଥ ମହାଶୟଙ୍କୁ ଘେରିଗଲେ । xx ଆଜିକାଲି ଉତ୍କଳ ସାହିତ୍ୟ ସମାଜର ମା' ବାପ ନାହିଁ । ଯାହା ମାତୃଭାଷା ଚର୍ଚ୍ଚାର ବାକ୍‌ଦେବୀ ରୂପେ ପ୍ରତିଷ୍ଠିତ ହୋଇଥିଲା, ତାହା ବର୍ତ୍ତମାନ ସ୍ୱେଚ୍ଛାଚାରୀ, ଛିଦ୍ରାନ୍ୱେଷୀ ଦଳରେ ପରିପୂର୍ଣ୍ଣ ।[୩୯]

ଏବଂ ଅଭିଧାନର ମୂଲ୍ୟାୟନ ଉଦ୍ଦେଶ୍ୟରେ ଏକ କମିଟି ଗଠନର ପ୍ରସ୍ତାବକୁ ସେ ରୁଷରେ ଜାର ଶାସନ ପ୍ରଣାଳୀ ସହିତ ତୁଳନା କରିଛନ୍ତି ।

ଉତ୍କଳ ସାହିତ୍ୟ ସମାଜର ସଭାପତି ରାୟବାହାଦୂର ସୁଦାମ ଚରଣ ନାୟକ, ପଣ୍ଡିତ ମୃତ୍ୟୁଞ୍ଜୟ ରଥ ଓ କେତେକ ସଭ୍ୟଙ୍କ ପ୍ରତି ଆଶାର ମନ୍ତବ୍ୟ ଥିଲା କେନ୍ଦ୍ରର କର୍ତ୍ତୃତ୍ୱ ପ୍ରତି ଏକ ଆହ୍ୱାନ । ଦୀପିକାର ସାମ୍ବାଦିକତାକୁ ଶଶିଭୂଷଣ ରଥ ବିଦ୍ରୂପ କରିଥିବାରୁ ଚିନ୍ତାମଣି ଆଚାର୍ଯ୍ୟ ତାହାର ପ୍ରତିବାଦ କରିଛନ୍ତି । ଏପରିକି, ମହାପାତ୍ରଙ୍କ ପ୍ରଦତ୍ତ ବିବରଣୀକୁ ମିଥ୍ୟା ଓ କପୋଳକଳ୍ପିତ କହିବାକୁ ପଛେଇ ନାହାନ୍ତି । ତାଙ୍କ ଭାଷାରେ, ଦୀପିକାର ସମ୍ବାଦ ଅଧିକ ବିଶ୍ୱାସ ଯୋଗ୍ୟ । xx ସୁଦାମ ବାବୁଙ୍କ ସଭାପତିତ୍ୱର ସାର୍ଟିଫିକେଟ୍ ଦେବା ଲେଖକଙ୍କ ମୁହଁରେ ଛୋଟ ମୁହଁରେ ବଡ କଥା ।

(ଉତ୍କଳ ଦୀପିକା: ୨୮ ଏପ୍ରିଲ୍, ୧୯୨୬) ମାତ୍ର ସବୁଠାରୁ ମଜାକଥା, ସୁନାମ ବାବୁ ଏବଂ ତାଙ୍କର ସାମ୍ପାଦିକତା ପକ୍ଷରେ ଲବି କରୁଥିବା ଆଚାର୍ଯ୍ୟ ସେଦିନ ସ୍ୱୟଂ ସଭାରେ ଉପସ୍ଥିତ ନଥିଲେ । (ଆଶା : ୮ମେ, ୧୯୧୬) ଆଶାର ସମ୍ବାଦ ଯେ ଅସତ୍ୟ ଓ କପୋଳକଳ୍ପିତ ନଥିଲା, ମେ ୧୬ତାରିଖର ସଂଖ୍ୟାରେ ପ୍ରକାଶିତ ଏବଂ ସେହି ସଭାରେ ଉପସ୍ଥିତ ଥିବା ମଦନ ମୋହନ ମିଶ୍ର ନାମକ ଜନୈକ ଶ୍ରୋତାଙ୍କ ପତ୍ରରୁ ତାହା ଜଣାଯାଏ । ମିଶ୍ର ଉଲ୍ଲେଖ କରିଛନ୍ତି :

> ସେଦିନର ଅଧିବେଶନ ପରେ ପ୍ରଥମେ ଉତ୍କଳ ଦୀପିକା ଅଧିବେଶନର ସ୍ଥୁଳ ବିବରଣୀ ପ୍ରକାଶ କରି ଉତ୍କଳ ଜନସାଧାରଣଙ୍କୁ ଏକ ପ୍ରକାର ସାନ୍ତ୍ୱନା ପ୍ରଦାନ କରିଥିଲେ । ସେଥିରେ ଗୂଢ଼ ରହସ୍ୟ ପ୍ରକାଶିତ ହୋଇ ନଥିଲା । ତେଣୁ ତାହା ସପୂର୍ଣ୍ଣ ସତ୍ୟବୋଲି କେତେକଙ୍କର ଧାରଣା ହେବା ସ୍ୱଭାବିକ । xx ଅପ୍ରିୟ ସତ୍ୟ କହିବା ଆଜିକାଲିର ରୀତି ନୁହେଁ । ଏହା ଜାଣି ସୁଦ୍ଧା ପ୍ରିୟନାଥବାବୁ ଅପ୍ରିୟ ସତ୍ୟ କହି ପୁଣି କେତେ ଲୋକଙ୍କୁ ଉତ୍ତେଜିତ କରିଛନ୍ତି । ଆମେ ମଧ୍ୟ ସେଠି ଥିଲୁ । ଏଥିରୁ ତାଙ୍କ ପତ୍ରଟି ସମ୍ପୂର୍ଣ୍ଣ ରୂପେ ସତ୍ୟ ବୋଲି ନିଃସନ୍ଦେହରେ କହିପାରୁ । xx ଚିନ୍ତାମଣି ବାବୁ ସେଦିନ ସଭାରେ ଉପସ୍ଥିତ ନଥିଲେ । ଧାରଣାର ବଶବର୍ତ୍ତୀ ହୋଇ ଏବଂ ଅନୁମାନରେ ନାନା କଥା ଭାବି ଯେ ଏପରି ଗୋଟାଏ ପ୍ରତିବାଦ ଲେଖିଛନ୍ତି- ସେଥିପାଇଁ ତାଙ୍କ ଉଚ୍ଚଶିକ୍ଷା ପ୍ରଶଂସ୍ୟ ।[୪୦]

ସୁଦାମ ବାବୁ, କି ଚିନ୍ତାମଣି ବାବୁ, ମଦନ ମୋହନଙ୍କ ପତ୍ରର ପ୍ରତିବାଦ କରି ନାହାନ୍ତି । ସତ୍ୟ ପ୍ରକାଶିତ ହୋଇଛି ।

ଅଭିଧାନକୁ କେନ୍ଦ୍ରକରି କେନ୍ଦ୍ର ଓ ଦକ୍ଷିଣର ବିଦ୍ୱାନମାନଙ୍କ ମଧ୍ୟରେ ପରସ୍ପର ଆକ୍ଷେପ ଓ ପ୍ରତି- ଆକ୍ଷେପର ସମାଧାନ ସୂତ୍ର ବାହାର କରିବାକୁ ସାହିତ୍ୟ ସମାଜର ସମ୍ପାଦକ ଶଶିଭୂଷଣ ରାୟ ପ୍ରୟାସ କରିଛନ୍ତି । ମେ ମାସ ତିନି ତାରିଖରେ ସମାଜର ଏକ ବୈଠକ ଆହୂତ ହୋଇଛି ଏବଂ ସେଥିରେ ସିଦ୍ଧାନ୍ତ ଗ୍ରହଣ କରାଯାଇଛି ଯେ- 'ପଣ୍ଡିତ ନନ୍ଦଙ୍କ ଅନୁରୋଧ ଅନୁସାରେ ତାଙ୍କ ନିକଟକୁ ପଣ୍ଡିତ ମୃତ୍ୟୁଞ୍ଜୟ ରଥ ବାଣୀଭୂଷଣ କାବ୍ୟତୀର୍ଥ ଲିଖିତ ଶବ୍ଦତତ୍ତ୍ୱବୋଧ ଅଭିଧାନର ସମାଲୋଚନା ପ୍ରବନ୍ଧର ପ୍ରତିଲିପି ପଠାଯାଇ ତିନି ସପ୍ତାହ ମଧ୍ୟରେ ତାହାର ସମାଧାନ ପଠାଇବାକୁ ଅନୁରୋଧ କରାଯାଉ । ଉକ୍ତ ପ୍ରବନ୍ଧ ହସ୍ତଗତ ହେଲେ, ଆଲୋଚନା ଓ ସମାଧାନ ଏକତ୍ର ଛପାଯାଇ ସଭ୍ୟମାନଙ୍କ ମଧ୍ୟରେ ବଣ୍ଟନ କରାଯାଉ । ନିର୍ଦ୍ଦିଷ୍ଟ ସମୟରେ ସେ ପ୍ରବନ୍ଧ ହସ୍ତଗତ ନହେଲେ କେବଳ ସମାଲୋଚନା ପ୍ରବନ୍ଧଟି ପ୍ରକାଶ କରି କେବଳ ସଭ୍ୟମାନଙ୍କ ମଧ୍ୟରେ ବଣ୍ଟନ କରାଯାଉ ।'

ଉଭୟ ଆଶା ଓ ଦୀପିକାରେ ଶଶୀ ବାବୁଙ୍କ ସନ୍ତକ ଥାଇ ଏହି ନିବେଦନ ପତ୍ର ପ୍ରକାଶ ପାଇଛି । (ଆଶା/ ୮ମେ / ଦୀପିକା ୬ମେ, ୧୯୧୬) ମାତ୍ର ଆଶ୍ଚର୍ଯ୍ୟର ପ୍ରସଙ୍ଗ ଯେ ଶଶୀ ବାବୁଙ୍କର ଏହି ଅନୁରୋଧକୁ କୌଣସି ପକ୍ଷ ଗ୍ରହଣ କରିନାହାନ୍ତି । ପଣ୍ଡିତ ନନ୍ଦ ଓ ପଣ୍ଡିତ ମୃତ୍ୟୁଞ୍ଜୟଙ୍କୁ ପରଦା ଆଢୁଆଳରେ ରଖି ଓଡିଶାର ଦିଗ୍‌ଗଜମାନେ ପରସ୍ପର ପ୍ରତି ବାଣ ମରାମରି ହୋଇଛନ୍ତି ।

ଏପରିକି ଫକୀର ମୋହନ ଓ ଗୌରୀ ଶଙ୍କରଙ୍କ ପରି ବୟସ୍କମାନେ ମଧ୍ୟ ସମର ଭୂମିକୁ ଆସିଛନ୍ତି । ବିଶେଷ କରି ଗୌରୀ ଶଙ୍କର, କୃଷ୍ଣ ପ୍ରସାଦ ଚୌଧୁରୀ ଆପଣା ଆପଣାର ବୟସ, ଅଭିଜ୍ଞତା, ପଦମର୍ଯ୍ୟାଦା ଓ ବିବେକକୁ ପାଣିକି ଫୋପାଡି ଦେଇଛନ୍ତି । ନିଜ ବିଚାର ଯେ ସର୍ବଜନ ଗ୍ରହୀତବ୍ୟ ଏବଂ ତାଙ୍କ ଆଦର୍ଶ ବିରୋଧୀମାନେ ଯେ ଜାତିଦୋହୀ, କର୍ତ୍ତୃତ୍ୱ- ଜାହିର ବିଳାସୀ, ଗୌରୀଶଙ୍କର ଏକ ଅଭିଧାନକୁ କେନ୍ଦ୍ରକରି ତାହା ପ୍ରତିଷ୍ଠାପାଇଁ ନିଜ ସହିତ ଯୁଝି ହୋଇଛନ୍ତି ।

ଅଭିଧାନ ସଂପର୍କରେ ଫକୀରମୋହନଙ୍କର ଏକ ଦୀର୍ଘ ପତ୍ର ପ୍ରକାଶ ପାଇଛି ଦୀପିକା ପୃଷ୍ଠାରେ । ନନ୍ଦଙ୍କ ଅନୁରୋଧ ଅଥବା ଅଭିଧାନ ସଂକ୍ରାନ୍ତ ଚର୍ଚ୍ଚାର ପରୀକ୍ଷଣ ମାନସିକତାରେ ହେଉ, ବୃଦ୍ଧ ଫକୀରମୋହନ, ବିଶ୍ୱନାଥ କରଙ୍କ ପ୍ରେସରୁ ବହିଖଣ୍ଡିଏ ଯୋଗାଡ କରିଛନ୍ତି, ପଢ଼ିଛନ୍ତି ଏବଂ ଲେଖିଛନ୍ତି --

> ମୋ କ୍ଷୁଦ୍ର ମତରେ ଏପରି ଖଣ୍ଡିଏ ଅଭିଧାନ ବର୍ତ୍ତମାନ ସକାଶେ ପ୍ରୟୋଜନ ଥିଲା । xx ପତ୍ର ପ୍ରେରକ ମହାଶୟ ଅଳ୍ପସମୟ ମଧ୍ୟରେ ଅନେକ ଗୁଡିଏ ଦୋଷ ଦେଖିବାକୁ ପାଇଲେ । ମାତ୍ର ବାର୍ଦ୍ଧକ୍ୟ ଜନିତ ସ୍ୱାଭାବିକ ଦୃଷ୍ଟିରୁ ଅପଟୁତା ତଥା ଭାଷା ଜ୍ଞାନର ଅପ୍ରାଚୁର୍ଯ୍ୟତା ହେତୁ ମୋ ଶକ୍ତିହୀନ ନେତ୍ରରେ ସେ ସମସ୍ତ ଦୋଷ କିନ୍ତୁ ପଡିଲା ନାହିଁ । xx ପତ୍ର ପ୍ରେରକ ମହାଶୟ କଣ ମନରେ କରନ୍ତି- ତାହାଙ୍କ ଅଶ୍ରୁତ ଶବ୍ଦ କ'ଣ ଓଡିଆ ଭାଷାରେ ନାହିଁ । ଅପ୍ରଚଳିତ ଶବ୍ଦମାନ ସଞ୍ଚିତ ରଖିବାର ସ୍ଥାନ ଯେ ଅଭିଧାନ, ପତ୍ରପ୍ରେରକ ମହାଶୟ ଏତେ ସହଜ କଥାଟା କ'ଣ ଭୁଲିଗଲେ ? ଅଥବା ବ୍ୟବହାର୍ଯ୍ୟ ଅନ୍ୟ ପଦାର୍ଥ ପରି ସେହି ସମସ୍ତ ଶବ୍ଦ ପରିତ୍ୟାଗ କରାଯାଉ, ଏହାକି ତାଙ୍କର ମତ ? ପ୍ରାଚୀନ ଗ୍ରନ୍ଥରେ ପ୍ରଯୁକ୍ତ ଅନେକ ଶବ୍ଦ ବର୍ତ୍ତମାନ ଅପ୍ରଚଳିତ, ସେ ସମସ୍ତ ପୁସ୍ତକ କ'ଣ ଅପାଠ୍ୟ ? xx ଅନେକ ସୁପ୍ରଚଳିତ ଶବ୍ଦ ଏଥିରେ ସ୍ଥାନ ପାଇ ନାହିଁ । ମାତ୍ର କଥାଟା ନିତାନ୍ତ ସମ୍ଭବ । ସବୁ ଶବ୍ଦ ମିଳିଯାଇପାରେ, ଏ ପ୍ରକାର ଅଭିଧାନ ସାଧାରଣତଃ ବିରଳ । xx ଆଶ୍ଚର୍ଯ୍ୟର କଥା ନୁହେଁ, ଅତି ସହଜ କଥା, କେବଳ ବଙ୍ଗଳା ନୁହେଁ, ଅନେକ ଇଂରାଜୀ, ଆରବୀ, ପାର୍ଶୀ ଓ ହିନ୍ଦୀ ଶବ୍ଦ ଉତ୍କଳ ଭାଷାରେ ପଶି ଅଙ୍ଗୀଭୂତ ହୋଇଗଲାଣି । xx କେବଳ ଏହି ଅଭିଧାନ ନୁହେଁ, ସମସ୍ତ ଭାଷାର ସମସ୍ତ ଅଭିଧାନରେ ଏହି ଦୋଷ ବା ବିଷୟ ଦେଖିବାକୁ ପାଇବେ । ଗ୍ରନ୍ଥାକାର ନନ୍ଦ ମହାଶୟଙ୍କ ପୁସ୍ତକର ପାଣ୍ଡୁଲେଖ୍ୟ ଖଣ୍ଡିକ ପରୀକ୍ଷା ବା ସଂଶୋଧନ କରିବା ନିମନ୍ତେ କଟକ ସାହିତ୍ୟ ସମାଜ ହସ୍ତରେ ଅର୍ପଣ କରିଥିଲେ । ସମାଜ ଛଅ ମାସ ବା ତଦତିରିକ୍ତ କାଳ ପାଖରେ ରଖି ଗ୍ରନ୍ଥାକାର ହସ୍ତରେ ପ୍ରତ୍ୟର୍ପଣ କରିଛନ୍ତି । ଆଉ କେଉଁ ସମାଜ ପୁସ୍ତକ ସଂଶୋଧନ କରିବେ ? xx ଗ୍ରନ୍ଥ ଖଣ୍ଡିକୁ ଅକାରଣ ଅପଦସ୍ତ କରାଇ ଦେବାକୁ ଚେଷ୍ଟା କରିବାଟା ପତ୍ର ପ୍ରେରକ ମହାଶୟଙ୍କ ପରି ଶିକ୍ଷିତ ଲୋକଙ୍କ ପକ୍ଷରେ ନିଶ୍ଚୟ ଉପଯୁକ୍ତ କାର୍ଯ୍ୟ ହୋଇନାହିଁ ।[୪୧]

ଫକୀରମୋହନଙ୍କ ପତ୍ରର ପ୍ରଥମ ପ୍ରତିକ୍ରିୟା କୃଷ୍ଣ ପ୍ରସାଦ ଚୌଧୁରୀଙ୍କ ଏକ ଲେଖାରେ ପ୍ରକାଶପାଇଛି । ବିଶେଷତଃ ପଣ୍ଡିତ ମୃତ୍ୟୁଞ୍ଜୟଙ୍କ ପ୍ରତି ଫକୀରମୋହନଙ୍କ ଆକ୍ଷେପ ତାଙ୍କୁ ଅସହ୍ୟ ବୋଧ ହୋଇଛି । ସେ ଅନୁଭବ କରିଛନ୍ତି, ବୃଦ୍ଧ ଫକୀରମୋହନ ସତେ ଯେପରି ନନ୍ଦ ମହାଶୟଙ୍କର ବିଜ୍ଞ ଓକିଲ । ଅଭିଧାନ ସଂପର୍କିତ ସମସ୍ତ କାଗଜ ପତ୍ର ହାତରେ ଧରି ସୁଦୂର ଗଞ୍ଜାମରୁ ପଣ୍ଡିତ ନନ୍ଦ ଦୀର୍ଘଶ୍ୱାସ ହୋଇ ଯେପରି କଟକି ମାଡରୁ ନିଜକୁ ରକ୍ଷା କରିବାପାଇଁ କଟକ ପର୍ଯ୍ୟନ୍ତ ଦୌଡ଼ି ଆସିଛନ୍ତି । ଚୌଧୁରୀ ଉଲ୍ଲେଖ କରିଛନ୍ତି, 'ପ୍ରତ୍ୟେକ ପୁସ୍ତକର ଆଲୋଚନା କରିବାର ଅଧିକାର ସମସ୍ତ ସଭ୍ୟଙ୍କର ଅଛି । ନନ୍ଦ ପଣ୍ଡିତଙ୍କ ପୁସ୍ତକର ସମାଲୋଚନା କରି ମୃତ୍ୟୁଞ୍ଜୟ ବାବୁ କି ଅପରାଧ କଲେ, ସେଥିପାଇଁ ଏତେ ପ୍ରାୟଶ୍ଚିତ ପ୍ରୟୋଜନ ପଡ଼ିଅଛି ।' (ଉତ୍କଳ ଦୀପିକା: ୧୩ମେ ୧୯୧୬) ଗୌରୀଶଙ୍କର ଏହି ଅଭିଧାନର ଆଲୋଚନା ପ୍ରସଙ୍ଗର ପଣ୍ଡିତ ନନ୍ଦ ଓ ଫକୀରମୋହନଙ୍କ ଉଦ୍ଦେଶ୍ୟରେ ଯେଉଁ ଶବ୍ଦମାନ ପ୍ରୟୋଗ କରିଛନ୍ତି, ତାହା ଏଠାରେ ଲକ୍ଷଣୀୟ-

> ଯାହା ମନରେ ଆସିଲା, ସଦିଚ୍ଛା ଓ ସଦ୍‌ଭାବାପନ୍ନ ହୋଇ ପ୍ରକାଶ କଲେ ଭାବ ସବୁ ମହତ ଥିଲେ ହେଲା । ଭାଷା କଟୁ ହେଲେ ହୋଇପାରେ । ଆମ୍ଭେମାନେ ତାହା ଘେନା କରୁନାହୁଁ, କି କରିବୁ ନାହିଁ । xx କେଉଁ ପାଷାଣ୍ଡ ଏପରି ଇଚ୍ଛା କରିବ ଯେ ନନ୍ଦଙ୍କ ଅଭିଧାନ ଖଣ୍ଡିକ ମାଟିରେ ମାଟି ପରି ମିଶିଯାଉ । xx ଏ ଭାବ ଶଇତାନ ମନରେ ସୁଦ୍ଧା ଉଦୟ ହେବ ନାହିଁ । xx ସାହିତ୍ୟ ସମାଜର ସ୍ୱେଚ୍ଛାଚାରିତା ଏକ ପାର୍ଶ୍ୱରେ, ସଭାପତିଙ୍କ ମେରୀ ରାୟ, ଅନ୍ୟ ପକ୍ଷରେ ପଣ୍ଡିତ ମୃତ୍ୟୁଞ୍ଜୟଙ୍କର ପ୍ରବନ୍ଧଲିପି ବଟକରା ପେଣ୍ଡୁଲମ୍ (Pendulum) ପରି ଦୋଦୁଲ୍ୟମାନ । ଆକ୍ଷେପରେ ଏପରି ଅଭୂତପୂର୍ବ ଦୃଶ୍ୟର ନିଆ ଯାଇ ପାରିଲା ନାହିଁ । xx ଆରମ୍ଭରେ କହିଛି, ସମସ୍ତେ ସଦ୍‌ଭାବରେ ଚାଳିତ ହେଲେ, ସଦଭାବ କରିପାରିଲେ ନାହିଁ । ବ୍ୟକ୍ତିଗତ ପ୍ରଜ୍ୟାରେ ଘୋଷି ହୋଇ ଈର୍ଷା ପରିଚ୍ଛେଦରେ ଭଣିତା କରିଦେଲେ । xx କହିବା ବାହୁଲ୍ୟ ଯେ, ଫକୀରମୋହନଙ୍କ ଗାଳି ସାହିତ୍ୟିକ ଶବ୍ଦରେ ରଞ୍ଜିତ ଓ ସୁବାସିତ । ତେଣୁ ଆମ୍ଭମାନଙ୍କୁ ତାଙ୍କ ଗାଳି ଫୁଲ ଚନ୍ଦନ । ତାଙ୍କୁଇ କୃତାଞ୍ଜଳି ପୁଟରେ ପଚାରୁ, ଆମ୍ଭମାନଙ୍କ ପ୍ରଶ୍ନର ଉତ୍ତର ଦେଇ ଆଉ ଥରେ ଗାଳି ଦେବେ । ବିଶେଷ ଅନୁରୋଧ ସତ୍ତ୍ୱେ ସେ ଆପଣେ କଟକ ଅବସ୍ଥାନ ସମୟରେ ସାହିତ୍ୟ ପଠିତ କାବ୍ୟତୀର୍ଥଙ୍କ ସମାଲୋଚନା ପଢ଼ିଲେ ନାହିଁ- ଏକଥା ଆମ୍ଭମାନଙ୍କ ମନକୁ ବାଧିଲା ନାହିଁକି ? ସ୍ୱର୍ଗକୁ ମାର୍ଗ ନାହିଁ, ବଡଲୋକଙ୍କୁ ଉତ୍ତର ନାହିଁ । xx ଦୋଷଗୁଡ଼ିକ ଫକୀର ମୋହନଙ୍କ ଦୃଷ୍ଟିରେ ପଡ଼ିଲା ନାହିଁ । ନ ପଡ଼ିଲେ ଦୋଷ କାହାର ? ଅବଶ୍ୟ ଦୃଷ୍ଟିର ଦୋଷ । ଆମ୍ଭେମାନେ କହୁ- ସେ ଚଷମା ଦିଅନ୍ତି ନାହିଁ । ନିଜ ପାଇଁ ସିନା ଦିଅନ୍ତି ନାହିଁ, କିନ୍ତୁ ପରକାର୍ଯ୍ୟ ପର୍ଯ୍ୟବେକ୍ଷଣ କରିବାକୁ ହେଲେ ପରଚକ୍ଷୁ ଅତ୍ୟାବଶ୍ୟକ । ଅଳମତି ବିସ୍ତରେଣ ।

ପୁନଶ୍ଚ ନନ୍ଦଙ୍କ ଶବ୍ଦଚୟନ ଓ ଲିଖନ ରୀତି କେତେ ମାତ୍ରାରେ ପ୍ରମାଦପୂର୍ଣ୍ଣ ତାହା ଦେଖାଇବାକୁ ଯାଇ ଗୌରୀ ଶଙ୍କର କଷା- କଷି/ କଶା- କଶି/ କସା- କସି, ଦିଶ/ ଦିସ, ଶରୁ ସରଦ, ପାରୁଶ/ ପାରୁସ, ହାତୀ/ ହାତି, ଯମ/ ଜମ, ଯନ୍ତା/ ଜନ୍ତା, କଜିଆ/ କଜିଆ ଇତ୍ୟାଦି ପନ୍ଦର ଗୋଟି ଶବ୍ଦ ଉଲ୍ଲେଖ କରିଛନ୍ତି ।[୪୨]

ଓଡ଼ିଆ ଓ ନବସମ୍ବାଦ ମଧ୍ୟ ଗୌରୀଶଙ୍କରଙ୍କର ମନ୍ତବ୍ୟକୁ ସମର୍ଥନ କରିଛି । ସମ୍ପାଦକୀୟରେ ପ୍ରକାଶ ପାଇଛି

> ଏଭଳି ଗୋଟିଏ ଶବ୍ଦକୋଷର ଦାୟିତ୍ୱ ଅଳ୍ପ ନୁହେଁ । ଭବିଷ୍ୟତରେ ଏହି ଅଭିଧାନକାରଙ୍କ ମତ ଉପରେ ଜାତିର ସାହିତ୍ୟ ଭିତ୍ତି ଅବସ୍ଥାନ କରିବ । ଆହୁରି ମଧ୍ୟ ମାନ୍ଦ୍ରାଜ, ବିହାର- ଉତ୍କଳ ଗବର୍ଣ୍ଣମେଣ୍ଟ ଏହାର ମୁଦ୍ରଣ ନିମିତ୍ତ ତିନି ହଜାର ଟଙ୍କା ପ୍ରଦାନ କରିଥିବାରୁ ଓଡିଶାର ପ୍ରତ୍ୟେକ ସ୍କୁଲ କଲେଜରେ ଏ ଅଭିଧାନ ପ୍ରକାଶ ପାଇବ । ଏପରି ସ୍ଥଳେ ଏହା ପ୍ରକୃଷ୍ଟ ରୂପେ ସମାଲୋଚିତ ହେବା ଆବଶ୍ୟକ । xx ପ୍ରୋକ୍ତ ଅଭିଧାନରେ ଯେଉଁ ଆଲୋଚନା ହେଉଛି, ତହିଁରୁ ବୁଝୁଅଛୁ ଯେ, ଭବିଷ୍ୟତରେ ଆଉ ବର୍ଣ୍ଣାଶୁଦ୍ଧି ଦୋଷ ରହିବ ନାହିଁ । ବଙ୍ଗୀୟ, ଉତ୍କଳୀୟ, ତଥା ଯାବନିକ ଶବ୍ଦମାନଙ୍କର ଓଡିଆ ଭାଷା ସାହିତ୍ୟରେ ବ୍ୟବହାରର ପାର୍ଥକ୍ୟ ରହିବ ନାହିଁ । ପୁନଶ୍ଚ ସମ୍ପାଦକ ଗ୍ରନ୍ଥର ନିରପେକ୍ଷ ମୂଲ୍ୟାୟନ ଉଦ୍ଦେଶ୍ୟରେ ଚନ୍ଦ୍ର ମୋହନ ମହାରଣା, ବିଶ୍ୱନାଥ କର ଏବଂ ନନ୍ଦ କିଶୋର ବଳ ପ୍ରମୁଖଙ୍କୁ ନେଇ ଏକ କମିଟି ଗଠନର ପ୍ରସ୍ତାବ ଦେଇଛନ୍ତି ।[୪୩]

ମଦନମୋହନ ଦାସ ଆଶା ପତ୍ରିକାରେ ନବସମ୍ବାଦ ସମ୍ପାଦକଙ୍କ ପରାମର୍ଶର ପ୍ରତିବାଦ କରିଛନ୍ତି । ସେ ଲେଖିଛନ୍ତି

> ଆପଣ ଯଦି ବିଦେଶୀମାନଙ୍କର ଖୁସାମତିରେ ପ୍ରବର୍ତ୍ତିଥା'ନ୍ତି, ସେମାନଙ୍କର ବିଷୟ ଉକ୍ତିରେ ଆଶା ରଖିଥାଆନ୍ତି, ତାହାହେଲେ ଆମ୍ଭେମାନେ ନାଚାର । ବର୍ତ୍ତମାନ ଓଡିଆ ଭାଷା ରାଜ୍ୟରେ ଅଜ୍ଞ ଓ ଅଳ୍ପଜ୍ଞ ଲେଖକମାନେ ଯେଝା ଇଚ୍ଛାମତେ ଯେଉଁ ପରିମାଣରେ ବର୍ଣ୍ଣାଶୁଦ୍ଧି ସହ ଲେଖିଯାଉଛନ୍ତି, ମୁଖରେ ଭିନ୍ନ ପ୍ରକାର, ଲେଖାରେ ଭିନ୍ନ ପ୍ରକାର କହୁ ଅଛନ୍ତି, ସେହି ଅଯଥା ଭ୍ରମ ଅବଶ୍ୟ ରହିବ ନାହିଁ । ଅଳ୍ପଜ୍ଞ ପ୍ରଚଳିତ ବର୍ଣ୍ଣାଶୁଦ୍ଧିର ସମୁଚିତ ଶାସନ କ୍ରମ ଶବ୍ଦତତ୍ତ୍ୱବୋଧ ଅଭିଧାନରେ ପ୍ରତିପାଦିତ ହୋଇଛି ଏବଂ ସାହିତ୍ୟ ସମାଜର ଶୁଦ୍ଧି ରଥୀମାନେ ଦଶ ଏଗାର ବର୍ଷ ପର୍ଯ୍ୟନ୍ତ ପର୍ଯ୍ୟାଲୋଚନା କି ତାହା ଅନୁମୋଦିତ କରିଛନ୍ତି ।[୪୪]

ପଣ୍ଡିତ ନନ୍ଦଙ୍କ ଶବ୍ଦ ସଂକଳନ ପଦ୍ଧତି ନୁହେଁ, କଟକର କର୍ତ୍ତୃତ୍ୱ କ୍ଷୁଣ୍ଣ ଏବଂ ସରକାର ଓ ରାଜା ମହାରାଜାମାନଙ୍କ ଆର୍ଥିକ ଅନୁଦାନ ଯେ କ୍ଷମତାବିଳାସୀମାନଙ୍କ ଗାତ୍ରଦାହର କାରଣ, ଆଶାର ସମ୍ପାଦକ ଶଶୀ ବାବୁ ପତ୍ରିକାର ସମ୍ପାଦକୀୟ ସ୍ତମ୍ଭରେ ସ୍ୱଷ୍ଟ ଭାବେ ତାହା ଉଲ୍ଲେଖ କରିଛନ୍ତି । ଭାଷା ସୂତ୍ରରେ ଓଡିଆମାନଙ୍କର ରାଜନୀତିକ ଆୟତନର ଆବଶ୍ୟକତା ବାସ୍ତବତଃ ଅନ୍ତରର ଆହ୍ୱାନ ନୁହେଁ, ଏକ କୋଳାହଳ । ତୁଣ୍ଡରେ ଓଡିଆ ଆନ୍ଦୋଳନର ନାରା ଦେଉଥିବା ବିଶିଷ୍ଟମାନେ ଯେ ଉପାନ୍ତ

ଅନୁରକ୍ତ ନୁହଁନ୍ତି, ଜଣେ ଜଣେ ଛଳ- ଜାତୀୟତାବାଦୀ; ଏହି ଗୁମର ଫିଟିଯାଇଛି । ଯେଉଁ କେତେକ କଟକ- ବିହାରୀ ନନ୍ଦ ମହାଶୟଙ୍କ ପକ୍ଷ ସମର୍ଥନ କରିଛନ୍ତି, ତାହା ଯେ ସେମାନଙ୍କ ଅନ୍ତରର ସ୍ୱର ନୁହେଁ, ଛଳ- ପ୍ରଶସ୍ତି, ଶଶୀ ବାବୁଙ୍କ ବକ୍ତବ୍ୟ ହିଁ ତାହାର ଉଦାହରଣ । ତାଙ୍କ ଭାଷାରେ

> ଯେ କେତୋଟି ପ୍ରଶଂସା ପତ୍ର ବାହାରିଛି, ତାହା କେବଳ ନିନ୍ଦୁକମାନଙ୍କ ଦାଉରୁ ରକ୍ଷା କରିବା ନିମନ୍ତେ । xx ନନ୍ଦେ ଓଡିଆ ସୀମାବର୍ତ୍ତୀ ପାରଳାର ନିଭୃତରେ ପଡି ରହିଛନ୍ତି । ସମାଲୋଚକ ଏବଂ ତାଙ୍କ ପାଳିଆମାନେ ରାଜଧାନୀ କଟକ ନଗରରେ ଉତ୍କଳ ସାହିତ୍ୟର ଧ୍ୱଜା ଧରି ଯେ ବାହାଦୂରି କରନ୍ତୁ ପଛକେ, ଓଡିଆ ଭାଷାର ପ୍ରାଣ ଓ ପ୍ରକୃତି, ଓଡିଆ ଭାଷାର ଇତିହାସ ଓ ଭବିଷ୍ୟତ ସମ୍ବନ୍ଧେ ନନ୍ଦ ମହାଶୟଙ୍କର ଯେ ଅଭିଜ୍ଞତା ଓ ଆଲୋଚନା ଅଛି, ତାହା ଓଡିଶାରେ ଅନ୍ୟ କାହାରି ଅଛି କି ? xx ପରୀକ୍ଷା କରି ତଳେଇ ଦେଖିଲେ, ନିନ୍ଦାସ୍ୱର ଧରିବା ଲୋକତ ଜଣେ । ଆଉ ଦୁଇ ଚାରି ଜଣେ ହେଲେ ଦୁଆ ଧରା ପାଳିଆ । ଅନୁରୋଧ, ଉପରୋଧରେ ପଡି ଯେତେବେଳେ ଯେପରି, ସେତେବେଳେ ସେମାନଙ୍କର ପ୍ରବୃତ୍ତି ଓ ପ୍ରକୃତି ସେହିପରି ହୁଏ । ଅଭିଧାନ ଦ୍ୱାରା କ'ଣ ବାସ୍ତବିକ ଉତ୍କଳ ସାହିତ୍ୟର ବିପ୍ଳବ ଘଟିବ, ଓଡିଆ ଚରିତ୍ର ନଷ୍ଟ ହୋଇଯିବ, ଓଡିଆ ଭାଷା ଲୋପ ପାଇବ, ମୋଟରେ ଓଡିଆ ରସାତଳକୁ ଯିବ ? । ଏହି ଭାବନାରେ ଆତଙ୍କତି ହେଇ ନିନ୍ଦୁକମାନେ କଣ ସ୍ୱର ଉଠେଇଛନ୍ତି ।[୪୫]

ପୁନଶ୍ଚ ରଥ ସାହିତ୍ୟ କ୍ଷେତ୍ରରେ ରାୟବାହାଦୂର ସୁଦାମ ବାବୁଙ୍କର କୃତିତ୍ୱ ସମ୍ପର୍କରେ ପ୍ରଶ୍ନ କରିଛନ୍ତି । ତାଙ୍କ ପ୍ରବୀଣ ବୟସ ପ୍ରତି ଅଙ୍ଗୁଳି ଦେଖେଇଛନ୍ତି । ଏହି ଦୁଇ ସମ୍ପାଦକଙ୍କ ମନ୍ତବ୍ୟ ପଢ଼ିଲେ ସ୍ପଷ୍ଟ ହୋଇଯାଏ ଯେ, ସେମାନଂକ ଆଲୋଚନାରେ ବ୍ୟକ୍ତିକ ଜୀବନଚର୍ଯ୍ୟା ପ୍ରତି ଅନୁଦାରତା ପ୍ରକାଶ ପାଇଛି । ରଥ ଅନ୍ୟତ୍ର ଉଲ୍ଲେଖ କରିଛନ୍ତି, 'ସୁଦାମ ବାବୁ ରାୟବାହାଦୂର ହୋଇପାରନ୍ତି, କିନ୍ତୁ ସାହିତ୍ୟ ରାଜ୍ୟରେ ତାଙ୍କର ସ୍ଥାନ ଲୋକେ ତ ନୂଆ ବୁଝିବେ ନାହିଁ । ଏଥିରେ ଲୋକଙ୍କୁ ଧରି ମାରି ବ୍ୟକ୍ତିତ୍ୱ ଭେକ, ବ୍ୟକ୍ତିତ୍ୱ ବିଷୟରେ ଭଡାଟିଆ ପ୍ରବନ୍ଧ ଶୁଣାଇଲେ ସେ ବୁଝିବେ କିପରି ?' ସୁଦାମ ବାବୁଙ୍କୁ ଶବ୍ଦ ବାଣରେ ଆହତ କଲାବେଳେ, କଟକ ବାବୁମାନଙ୍କ ପରି କ୍ରୋଧାନ୍ଧ ରଥ ମହାଶୟ ପାସୋରି ପକାଇଛନ୍ତି- ଏକ ଜାତିର ଭାଷା ବାବୁ, ସାମନ୍ତ, ସାହିତ୍ୟିକ କି ସରକାରଙ୍କର ନୁହେଁ; ତାହା ଜନ ସମୁଦାୟର । ଭାଷା ଯେ ଏକ ବୃହତ୍ତର ସମାଜରେ ବଞ୍ଚୁଥିବା ଭିନ୍ନ ଭିନ୍ନ ସମ୍ପ୍ରଦାୟର ମଣିଷ ମଧ୍ୟରେ ଜୈବିକ ଯୋଡଣର ଅଣୁଘଟକ ଏବଂ ଏକ ଜାତିକୁ ଗତିଶୀଳ କରିବାପାଇଁ ଶକ୍ତିଶାଳୀ ମାଧ୍ୟମ- ଏହି ଆଦର୍ଶକୁ ସେମାନେ ଭେଦିପାରି ନାହାନ୍ତି । ତେଣୁ ପରସ୍ପରକୁ ମଳ ଫିଙ୍ଗି, ନିଜନିଜ ପୌରୁଷ ପ୍ରତିଷ୍ଠାରେ ପ୍ରମତ୍ତ ରହିଛନ୍ତି । ଆଜି ମଧ୍ୟ ଓଡିଆମାନେ ଉପର୍ଯ୍ୟୁକ୍ତ ମହାବ୍ୟାଧିରୁ ମୁକ୍ତ ହୋଇପାରିନାହାନ୍ତି ।

ସବୁଠାରୁ କୌତୂହଳର ପ୍ରସଙ୍ଗ, ଏକ ପ୍ରବନ୍ଧ ପାଠରେ ଆଲୋଚନା ସୁରୁ କରିଥିବା ପଣ୍ଡିତ ମୃତ୍ୟୁଞ୍ଜୟ ସମ୍ବାଦପତ୍ର, ସାହିତ୍ୟ ପତ୍ରିକା କି ବିତର୍କ ସଭାରେ ତୁଣ୍ଡ ଖୋଲିନାହାନ୍ତି । ତାଙ୍କ

ପ୍ରବନ୍ଧ ପ୍ରକାଶ ପାଇନାହିଁ । ନନ୍ଦ ମହାଶୟ ମଧ୍ୟ ଥରକପାଇଁ ସାମ୍ନାକୁ ଆସି ନାହାନ୍ତି । ଏମାନେ ପ୍ରତ୍ୟେକ ନିଜ ନିଜ ବିଚାରକୁ ଅନ୍ୟମାନଙ୍କ କଲମରେ ଫଉଲେଇଛନ୍ତି । ରଥଙ୍କ ପ୍ରଧାନ ମୁଖପାତ୍ର ହୋଇଛନ୍ତି ପଣ୍ଡିତ ପୁରୁଷୋତ୍ତମ ତର୍କାଳଙ୍କାର । ଦୀପିକା ପୃଷ୍ଠାରେ ଧାରାବାହିକ ଭାବରେ ସେ ଅଭିଧାନରେ ଶବ୍ଦଚର୍ଚ୍ଚା ପଦ୍ଧତି ସଂକ୍ରାନ୍ତରେ ଆଲୋଚନା କରିଛନ୍ତି । ସଂକଳକଙ୍କ ନିନ୍ଦାଗାନ ଓ ଦୋଷଦର୍ଶନ ତାଙ୍କ ଆଦର୍ଶ ହୋଇଛି । ଅନ୍ୟ ପକ୍ଷରେ ତର୍କାଳଙ୍କାରଙ୍କ ପାଣ୍ଡିତ୍ୟକୁ ଚ୍ୟାଲେଞ୍ଜ କରିଛନ୍ତି ସୋମନାଥ ଶାସ୍ତ୍ରୀ, ମଦନ ମୋହନ ଦାସ, ଦୀନବନ୍ଧୁ ରାଜଗୁରୁ ଓ ମଦନ ମୋହନ ସିଂହଦେବ । ଆଶା ପତ୍ରିକା ସେମାନଙ୍କ ବକ୍ତବ୍ୟର ପ୍ରଚାରକ ହୋଇଛି । ବହୁ ଛଦ୍ମନାମୀ ଇଂରାଜୀ ଭାଷାରେ ପତ୍ରିକାଗୁଡ଼ିକରେ ଚିଠିମାନ ଲେଖିଛନ୍ତି ଏବଂ ଏହାର ଦୋଷଗୁଣ ସମ୍ବନ୍ଧରେ ସରକାରଙ୍କୁ ଅବଗତ କରାଇଛନ୍ତି । ଅନ୍‌ଲୁକର ଛଦ୍ମ ନାମରେ ପ୍ରକାଶିତ ଏକ ଇଂରାଜୀ ପତ୍ରରେ ଗ୍ରନ୍ଥକୁ 'ଇନ୍‌ଆକ୍ୟୁରେଟ୍' କହିବା ସହିତ ଏକ ସବ୍‌କମିଟି ଗଠନ ମାଧ୍ୟମରେ ସମସ୍ୟାପାଇଁ ସମାଧାନ ସରକାରଙ୍କୁ ପରାମର୍ଶ ଦିଆଯାଇଛି । ତାଙ୍କ ଭାଷାରେ, 'ଆଇ ପର୍ପସ୍‌ଲି ରିଫ୍ରେନ ଫ୍ରମ୍ ମେନ୍‌ସନିଙ୍ଗ ଇଟ୍ ଆଜ୍ ଇଟ୍ ଉଡ୍ ବି ବେଟର ଟୁ ଟ୍ରିଟ୍ ୱିଥ୍ କଣ୍ଟେମ୍ପଟ୍ । xx ଆଇ ଅର୍ଜ ଦ୍ୟାଟ୍ ଦି ଗଭର୍ଣ୍ଣମେଣ୍ଟ ସୁଡ୍ ଆପଏଣ୍ଟ ଏ କମିଟି ଟୁ କନ୍‌ସିଡର ଦି ମେରିଟ୍ ଅବ୍ ଦି ୱାର୍କ ଇଟ୍ ହାଜ୍ ସବ୍‌ସିଡାଇଜଡ୍ ।' ପୁନଶ୍ଚ ଜୁଲାଇ ୨୯ ତାରିଖରେ ପାଠ୍ୟପୁସ୍ତକ ନିର୍ବାଚନ କମିଟିର ଏକ ବୈଠକ ଆହୂତ ହୋଇଛି । ଏଥିରେ 'ଅଭିଧାନ ଉପଯୁକ୍ତ ସମିତି ଦ୍ୱାରା ସଂଶୋଧିତ ହୋଇ ପ୍ରଚାରିତ ହେବା ଉଚିତ । xx ଅନ୍ୟଥା ଗୋଟିଏ ଯଥେଚ୍ଛାଚାର କରି ଜାତୀୟ ପନ୍ଥା ଆବିଷ୍କାର କରିବା ହିଁ ଚରମ ପରିଣତି ହେବ' ବୋଲି ଏକ ପ୍ରକାରର ଚରମ ବାଣୀ ଉପସ୍ଥାପନ କରାଯାଇଛି । ପ୍ରଥମ ଥରପାଇଁ ଅଭିଧାନ ସହିତ ଗୋପବନ୍ଧୁ ଓ ନୀଳକଣ୍ଠଙ୍କ ପ୍ରତ୍ୟକ୍ଷ ସଂପୃକ୍ତି ସମ୍ପର୍କରେ ଆଲୋଚନା କରାଯାଇଛି ଏବଂ କେହି ଜଣେ ସଭ୍ୟ ଅଭିଧାନ ସହିତ ଉତ୍କଳ ସାହିତ୍ୟ ସମାଜ ସମ୍ପର୍କ ସମ୍ବନ୍ଧରେ ପ୍ରଶ୍ନ କରିଛନ୍ତି । ତାଙ୍କ ଭାଷାରେ

> ସମାଜର କି ଅଧିକାର ଅଛି ଅଭିଧାନ ସଂଶୋଧନ କରିବେ ? ଗଭର୍ଣ୍ଣମେଣ୍ଟ ଟଙ୍କା ଦେଲାବେଳେ ଆମ୍ଭମାନଙ୍କୁ ସଂଶୋଧନ କରିବାକୁ କହିନାହାନ୍ତି । ଏବେ ମଧ୍ୟ କହୁନାହାନ୍ତି, ଗ୍ରନ୍ଥାକାର ମଧ୍ୟ ପଚାରିନାହାନ୍ତି । କିନ୍ତୁ ସମାଲୋଚକ କୁହନ୍ତି- ଏପରି ଗ୍ରନ୍ଥ ପ୍ରଚାରିତ ହେଲେ ଅନିଷ୍ଟ ହେବ । ମୂର୍ଚ୍ଛା, ଅନ୍ଧକାର ପ୍ରଭୃତି ପରିବର୍ତ୍ତେ ମୁଚ୍ଛା, ଅନ୍ଧତ୍‌କାର କଣ ସାହିତ୍ୟରେ ରହିବ ? ଏପରି ଶବ୍ଦଗୁଡ଼ିକୁ ସାହିତ୍ୟରେ ସ୍ଥାନ ଦେବାକୁ ହେଲେ ଶିଶୁ ମୁଖରେ ପ୍ରଚାରିତ ବିକୃତ ଶବ୍ଦାବଳୀକୁ ମଧ୍ୟ ସ୍ଥାନ ଦେବାକୁ ହେବ । xx ଭାଷାର ଶିଷ୍ଟତା ରକ୍ଷା ବିଷୟରେ ସମସ୍ତଙ୍କର ମନଯୋଗୀ ହେବା ଉଚିତ୍ ।[୪୬]

ଉତ୍କଳ ସାହିତ୍ୟ ସମାଜର ସମ୍ପାଦକ ଶଶିଭୂଷଣ ରାୟ ଏକ ପତ୍ରରେ ଅବଶ୍ୟ ନନ୍ଦଙ୍କ ଅଧ୍ୟବସାୟକୁ ପ୍ରଶଂସା କରିଛନ୍ତି। କେବଳ ଏକ ଶହ ପଚାଶ ଟଙ୍କା ସାହାଯ୍ୟ ଦେବା ବ୍ୟତୀତ ସମାଜ ସହିତ ଅଭିଧାନର କୌଣସି ସଂପର୍କ ନାହିଁ ବୋଲି ମଧ୍ୟ ଲେଖିଛନ୍ତି । ବରଂ ୧୯୦୫ ଓ ୦୬ ମସିହାରେ ସମାଜଦ୍ୱାରା ଗୃହୀତ ପ୍ରସ୍ତାବ 'ଏହା ମୁଦ୍ରିତ ହେବା ନିମିତ୍ତ ପ୍ରେସ୍‌କୁ ଯିବା ପୂର୍ବରୁ

ପ୍ରଥମେ ମଧୁସୂଦନ ଦାସ, ତତ୍ପରେ ରାଶଙ୍କର ରାୟ ଏବଂ ଶେଷରେ ବିଶ୍ୱନାଥ କରଙ୍କୁ ଉକ୍ତ ଅଭିଧାନ ଦେଖି ସଂଶୋଧନ କରାଯିବାର ଭାର ପ୍ରଦାନ କରାଯାଉ। ସିଦ୍ଧାନ୍ତଙ୍କୁ ନନ୍ଦ ମହାଶୟ ଗ୍ରହଣ କରିନାହାନ୍ତି' ବୋଲି ଅଭିଯୋଗ ଆଣିଛନ୍ତି। ଅଭିଧାନ ପାଣ୍ଡୁଲିପି ଆକାରରେ କେତେ ବର୍ଷ ସମାଜର ସିନ୍ଧୁକରେ ରହିଥିଲା, ପଣ୍ଡିତ ନନ୍ଦ ଉଦ୍ୟମ କରିନଥିଲେ ଏହା ଆଲୋକ ଦେଖିପାରିଥା'ନ୍ତା କି ନା ଏବଂ ଗ୍ରନ୍ଥ ସ୍ୱୟଂ ବିଶ୍ୱନାଥଙ୍କ ପ୍ରେସରେ ଯେ ମୁଦ୍ରିତ ହୋଇଛି,ଶଶିଭୂଷଣ ଏକଥା ପ୍ରାୟ ପାସୋରୀ ପକାଇଛନ୍ତି।

ଅଭିଧାନ ସମ୍ପର୍କରେ ଦୀପିକା ପୃଷ୍ଠାରେ ସର୍ବଶେଷ ସମ୍ବାଦ ପ୍ରକାଶ ପାଇଛି ୧୯୧୬ ମସିହା ଅଗଷ୍ଟ ୧୨ ତାରିଖରେ। ରାୟବାହାଦୁର ସୁଦାମ ବାବୁ ଅତ୍ୟନ୍ତ କ୍ଷୋଭର ସହିତ ଏ ଅନର୍ଥର ମୂଳ କିଏ ବୋଲି ପ୍ରଶ୍ନ କରିଛନ୍ତି

> ସେ ଆଲୋଚନାରେ ପ୍ରକାଶିତ ଶବ୍ଦଗୁଡ଼ିକ ଆପତ୍ତିଜନକ। XX ଗ୍ରନ୍ଥକର୍ତ୍ତାଙ୍କ ଠାରୁ ଆରମ୍ଭ କରି ତାଙ୍କର ସମର୍ଥନକାରୀ ପର୍ଯ୍ୟନ୍ତ ସମସ୍ତେ ମନଇଚ୍ଛା ସମାଲୋଚକ। XX ଏହା ସାପ ମାରି ପର ଗଳାରେ ପକାଇବା କଥା । ପୁଣି କହିଛନ୍ତି, ଗୋପବନ୍ଧୁ,ନୀଳକଣ୍ଠଙ୍କ ଉପରେ ପ୍ରତ୍ୟେକ୍ଷ ଦୋଷାରୋପ ସହିତ ଯେଉଁମାନେ ଅଣ୍ଟାଭିଡ଼ି ନନ୍ଦଙ୍କ ପକ୍ଷ ସମର୍ଥନ କରିବାକୁ ବସିଛନ୍ତି, ସେମାନେ ସରକାର ପ୍ରଦତ୍ତ ଅର୍ଥରୁ କିଛି କିଛି ଭାଗ ପାଇଥିବେ ତେବେ କିଛି ଦୋଷ ଘଟିବ କି ? ଆଲୋଚନା କ୍ଷେତ୍ରକୁ ଯେଉଁମାନେ ଏହି ପରି କଥା ସବୁ ଆଣୁଛନ୍ତି, ସେହିମାନେ କି ଏ ଅନର୍ଥର ମୂଳ ନୁହଁନ୍ତି ?

ସମ୍ପାଦକଙ୍କ ବେକରେ କେଉଁମାନେ ମଲା ସାପ ମାଳକରି ପକାଇଛନ୍ତି, ତଥାପି ସେ ତାହା ବୁଝିପାରି ନାହାନ୍ତି। ସୁଦାମ ବାବୁଙ୍କ ଜୀବନୀକୁ ପଢ଼ିଲେ ଜଣାଯାଏ,ସେ ସେତେ ଚତୁର ନଥିଲେ। ଏଣ୍ଟ୍ରାନ୍‌ସ୍ ପାସ୍ କରି ସେ ବାଲେଶ୍ୱରରେ ଲବଣ ବିଭାଗ ରେ ଚାକିରୀ କରିଛନ୍ତି। ଢେଙ୍କାନାଳ ଆସିଛନ୍ତି,ଏବଂ ଏହି ଗଡ଼ଜାତି ରାଜ୍ୟର ମ୍ୟାନେଜର ବନମାଳୀ ସିଂହଙ୍କ ପାଖରେ ଆସିଷ୍ଟାଣ୍ଟ ଭାବରେ କାମ କରିଛନ୍ତି। ପରବର୍ତ୍ତୀ କାଳରେ ଆଇ.ଏ ପରୀକ୍ଷା ଦେଇ ଗଡ଼ଜାତ ମାହାଲର ସୁପରିଣ୍ଟେଣ୍ଡେଣ୍ଟ ପାଦ୍ୟାକୁ ଉନ୍ନୀତ ହୋଇଛନ୍ତି ଏବଂ କାର୍ଯ୍ୟଦକ୍ଷତାଯୋଗୁଁ ଇଂରେଜ ସରକାରଙ୍କ ଠାରୁ ରାୟବାହାଦୂର ଉପାଧି  ମଧ ପାଇଛନ୍ତି। ଜୀବନର ଶେଷ ପାହାଚରେ ସେ ଉତ୍କଳ ଦୀପିକାର ସମ୍ପାଦକ ଓ ଉତ୍କଳ ସାହିତ୍ୟ ସମାଜର ସଭାପତି ହେବାର ସୁଯୋଗ ଲାଭକରିଛନ୍ତି। ଏବଂ ସବୁଠାରୁ ମଜାର କଥା,କଟକ ପ୍ରିଣ୍ଟିଂ କମ୍ପାନିର ମ୍ୟାନେଜର ଥିବା କାଳରେ କମ୍ପାନିର କ୍ଷତି ହେବାଯୋଗୁଁ ଏହା ଭରଣା କରିବାପାଇଁ ଆପଣା ସଞ୍ଚୟରୁ କମ୍ପାନୀ ତହବିଲରେ ପାଞ୍ଚ ହଜାର ଟଙ୍କା ପଇଠ କରିଛନ୍ତି । ଟଙ୍କାକୁ ଖାତିର ନକରି ମନ ଇଚ୍ଛା ଖର୍ଚ୍ଚକରି ଅନ୍ତିମ ଜୀବନରେ ଋଣଗ୍ରସ୍ତ ହୋଇଛନ୍ତି।[୪୭] ଏକ କିମ୍ଭୂତ ନିଶାଗ୍ରସ୍ତ ଖଟୁଳି-ମନସ୍କ ମଣିଷ ଜଣକ ଏତେ ଅପଦସ୍ତ ହେଲାପରେ ମଧ ସତ୍ୟର ହେତୁ ଭେଦିପାରିନାହାନ୍ତି।

ଓଡ଼ିଶାର ମୁଦ୍ରାଯନ୍ତ ପ୍ରତିଷ୍ଠା,ପତ୍ରିକା ପ୍ରକାଶନ,ପାଠ୍ୟପୁସ୍ତକ ଲିଖନ ଓ ପ୍ରଚଳନ କାଳରୁ ନବଶିକ୍ଷିତମାନଙ୍କୁ ଅର୍ଥଲାଭ ଓ କ୍ଷମତା ବିସ୍ତାରଣ ମାନସିକତା କେତେ ମାତ୍ରାରେ କବଳିତ କରିଛି, ସମ୍ବାଦ ପତ୍ରର ପୃଷ୍ଠାଗୁଡିକ ଓଲଟାଇଲେ ପ୍ରତ୍ୟେକ ସଚେତନ ପାଠକ ତାହା ଅନୁଭବ କରିବ।

ଏପରିକି ଉତ୍କଳୀୟ ସାହିତ୍ୟକୁ ପୁରସ୍କୃତ କରିବାପାଇଁ ଉତ୍କଳ ପ୍ରଭା ମାଧ୍ୟମରେ ମୟୂରଭଞ୍ଜ ଅଧିଶ୍ୱରଙ୍କଦ୍ୱାରା ଯେଉଁ ଉଦ୍ୟମ ଆରମ୍ଭ ହୋଇଛି,ମାତ୍ର ଦୁଇଟି ବର୍ଷ (୧୯୯୦-୯୧) ମଧ୍ୟରେ ତାହାର ବିକଟ ପରିଣତିକୁ ଏ ଜାତି ଅଙ୍ଗେ ନିଭେଇଛି। ସାହିତ୍ୟିକ ପରିବେଶ ପ୍ରଦୂଷଣର ତାହା ଅନ୍ୟତମ କାରଣ ହୋଇଛି। ରାଧାନାଥ,ମଧୁସୂଦନ,ସୀତାନାଥ,ଚତୁର୍ଭୁଜ, ବିଶ୍ୱନାଥ, ନୀଳମଣି ବିଦ୍ୟାରତ୍ନ, ନନ୍ଦକିଶୋରଙ୍କ ଭଳି ବହୁ ସମକାଳୀନ ସମ୍ମାନାସ୍ପଦ ଅର୍ଥ ଓ କ୍ଷମତାର ମଳକୁ ପରିମଳ ଜ୍ଞାନ କରିଛନ୍ତି । ଏହା ଅବଶ୍ୟ ଏକ ସ୍ୱତନ୍ତ୍ର ଆଲୋଚନାର ଅପେକ୍ଷା ରଖେ।ଏଠାରେ ମୁଁ ଏହି ପ୍ରସଙ୍ଗ ଉତ୍‌ଥାପନ କରିବାର କାରଣ,ଅଭିଧାନ ସଂକ୍ରାନ୍ତ ଆଲୋଚନା ମଧ୍ୟ ସମମାନସିକତାର ଅନ୍ୟ ଏକ ନଗ୍ନ ଉଦାହରଣ । ମାତ୍ର ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ପ୍ରସଙ୍ଗ ହେଉଛି-ଅଗଷ୍ଟ ମାସ ବା'ର ତାରିଖରେ ଦୀପିକା ଅଭିଧାନ ବିଷୟକ ଚର୍ଚ୍ଚାରୁ ନିବୃତ୍ତ ରହିଛି।ଏପରିକି ଶଶିଭୂଷଣ ରାୟ ଉତ୍କଳ ସାହିତ୍ୟ ସମାଜରେ ଉପସ୍ଥାପନ କରିଥିବା 'ଜାତୀୟ ଭାଷା' ଶୀର୍ଷକ ପ୍ରବନ୍ଧର ଆଲୋଚନା କାଳରେ ଉପସ୍ଥିତ ପଣ୍ଡିତ ମୃତ୍ୟୁଞ୍ଜୟ ଓ ବିଶ୍ୱନାଥ ପ୍ରମୁଖ ବିଦ୍ୱାନ ନନ୍ଦଙ୍କ ଅଭିଧାନ ସମ୍ପର୍କରେ ତୁଣ୍ଡ ଖୋଲି ନାହାନ୍ତି।(ଉତ୍କଳ ଦୀପିକା/ ୨ ସେପ୍ଟେମ୍ବର,୧୯୧୬)

ଅଭିଧାନ ସଂକ୍ରାନ୍ତରେ ଶେଷ ଚିଠି ଲେଖିଛନ୍ତି ଧରାକୋଟର ରାଜା ମଦନ ମୋହନ ସିଂଦେବ। ସିଂହଦେବ କୋଷଗ୍ରନ୍ଥ ପ୍ରକାଶନର ଅନ୍ୟତମ ସୂତ୍ରଧାର ଭାବେ ପରିଚିତ। କୌଣସି ପ୍ରକାରର ଭାବପ୍ରବଣତା ଓ ସଂକୀର୍ଣ୍ଣତାରୁ ଆପଣାକୁ ମୁକ୍ତ ରଖି ସେ ଉଲ୍ଲେଖ କରିଛନ୍ତି-

> ଆଲୋଚକମାନେ ଅଭିଧାନର ଯେଉଁ ଶବ୍ଦ ଭ୍ରମ ଦେଖାଇଅଛନ୍ତି,ତାହା ଯଦି ଉତ୍କଳୀୟ ପ୍ରଧାନ ସାହିତ୍ୟସେବୀମାନଙ୍କ ମତରେ ଦୋଷ ବୋଲି ନିଶ୍ଚିତ ହୁଏ, ତାହା ହେଲେ ଦ୍ୱିତୀୟ ସଂସ୍କରଣରେ ତାହା ସଂଶୋଧନ ହେବା ବିଧେୟ। XX ଓଥିପାଇଁ ନନ୍ଦ ମହାଶୟ ମସ୍ତିଷ୍କ ବ୍ୟୟ କରି ପୁଣି ଅନେକାନେକ ସଂସ୍କୃତ ଓ ଓଡ଼ିଆ ଗ୍ରନ୍ଥମାନଙ୍କର ପରିଶୀଳନ ପୂର୍ବକ ଶବ୍ଦ ସଂଗ୍ରହ କରିଥିବା ପରିଶ୍ରମ ଯେ ପଣ୍ଡ ହେବ, ତାହା ନୁହେଁ । ମାତ୍ର ସେ ମୃତ୍ୟୁଞ୍ଜୟ ରଥଙ୍କ ଅଭିଯୋଗ- 'ନନ୍ଦେ ଉତ୍କଳ ସାହିତ୍ୟ ସମାଜର ଉପଦେଶ ଅନୁସାରେ କାର୍ଯ୍ୟ କରିଥିଲେ,ଆଜି ଆମ୍ଭମାନଙ୍କୁ କର୍ତ୍ତବ୍ୟ ପାଳନ କରିବାକୁ ପଡ଼ନଥା'ନ୍ତା ଏବଂ ଏ ଗ୍ରନ୍ଥର ପ୍ରଥମ ପାଣ୍ଡୁଲିପି ଯାହା ଉତ୍କଳ ସାହିତ୍ୟ ସମାଜରେ ବହୁ କାଳ ଥିଲା ତାହା ସଂପୂର୍ଣ୍ଣ ପୃଥକ୍‌କୁ ଗ୍ରହଣ କରିପାରି ନାହାନ୍ତି। ତାଙ୍କ ପରି ଜଣେ ସାହିତ୍ୟ ପ୍ରେମୀଙ୍କୁ ହତୋତ୍ସାହିତ କରିବା ଉଚିତ୍ ନୁହେଁ' ବୋଲି ମତ ବ୍ୟକ୍ତ କରିଛନ୍ତି ।[୪୮]

ଏବଂ ଅନ୍ୟ ଜଣେ ନାମହୀନ ପତ୍ର ପ୍ରେରକ 'ଏହି ବୃଥା ଗଣ୍ଡଗୋଳରେ ପ୍ରୟୋଜନ କିଛି ନାହିଁ,ବରଂ ଅନ୍ୟ ଜାତି ସମକ୍ଷରେ କଳଙ୍କର ଆବିଷ୍କାର କେବଳ ହେଉଅଛି' ପରି ବାକ୍ୟ ଭାବପ୍ରବଣ ହୋଇ ଉଲ୍ଲେଖ କରିଛନ୍ତି । ପୁନଶ୍ଚ ଆନ୍ ଅବଜର୍‌ଭର୍ ଛଦ୍ମ ନାମରେ ଜନୈକ ପତ୍ରପ୍ରେରକ ଅଭିଧାନ ସମ୍ପର୍କରେ ଯେଉଁ ମନ୍ତବ୍ୟ ଦେଇଛନ୍ତି, ତାହା ସାହିତ୍ୟ ସମାଜର କର୍ମକର୍ତ୍ତାମାନଙ୍କ ପ୍ରତି ଏକ ଆହ୍ୱାନ ହୋଇଛି। ତାଙ୍କ ଭାଷାରେ

But one is at a loss make out why some of the members quite unmindful of their responsibility of members of the Samaj have been so vehement in supporting not only their individual capacity as members-Pt.Mrutyunjay's personal view on dictionary formed in hot haste as he himself says,just on a cursory perusal of the whole book in a day or two and the special feature of the fact is that they are supportng their views in the very teeth of opposition from most of their fellow members and even from the permanent president of the **Samaj**, not but he subjected to the usual ordeal of some public criticism .It is high time for the Samaj to make up its mind for a similar endeavour instead of thinking with this small production.

(ଆଶା/ ୧୧ ସେପ୍‌ଟେମ୍ବର ୧୯୧୬)

ପ୍ରକାଶ ଥାଉ କି,ସାହିତ୍ୟ ସମାଜ ଏଯାବତ୍ ସଂଗଠିତ ଭାବରେ ଅପବାଦମୁକ୍ତ ଅଭିଧାନ ସଙ୍କଳନ ଓ ପ୍ରକାଶନରେ ସମର୍ଥ ହୋଇପାରିନି।

ନନ୍ଦ ମହାଶୟଙ୍କ ଅଭିଧାନର ମୂଲ୍ୟାୟନକୁ ଆଧାର କରି ସମକାଳରେ ଓଡ଼ିଆ ଭାଷା ଓ ସାହିତ୍ୟ ଆଲୋଚନା ଶୈଳୀ ଏବଂ ସମୀକ୍ଷକମାନଙ୍କ ମାନସିକତାକୁ ମଧ୍ୟ ଅନୁଶୀଳନ କରାଯାଇପାରିବ । ସେମାନେ ପ୍ରାୟ ପ୍ରତ୍ୟେକ ନିଜ ନିଜ ଗୁଣରେ, ଶବ୍ଦ ଅଧ୍ୟୟନ କ୍ଷେତ୍ରରେ ନନ୍ଦଙ୍କ ପ୍ରମାଦ ଓ ବୈଶିଷ୍ଟ୍ୟର ଆଲୋକନପାଇଁ ଚେଷ୍ଟା କରିଛନ୍ତି; ମାତ୍ର ବହୁ ସମୟରେ ମୂଳ ପ୍ରସଙ୍ଗ ଠାରୁ ଦୂରେଇଯାଇ ଅନ୍ୟର ବ୍ୟକ୍ତିକ ଜୀବନଚର୍ଯ୍ୟା ଓ ପାଣ୍ଡିତ୍ୟ ପ୍ରତି ଯେଉଁ ଶବ୍ଦମାନ ପ୍ରୟୋଗ କରିଛନ୍ତି, ତାହା କେତେ ଅଶାଳୀନ ଓ ମହାପାଣ୍ଡିତ୍ୟ ବ୍ୟାଧିରେ ପର୍ଯ୍ୟୁଷିତ,ତାହା ନିମ୍ନୋକ୍ତ ଉଦାହରଣଗୁଡ଼ିକରୁ ଧାରଣା କରାଯାଇପାରେ।ପଣ୍ଡିତ ପୁରୁଷୋତ୍ତମ ତକ୍ରାଳଙ୍କର ନନ୍ଦଙ୍କ ଶବ୍ଦବ୍ୟୁତ୍ପତ୍ତିଗତ ଭ୍ରମଗୁଡ଼ିକର ବ୍ୟାଖା କାଳରେ ଉଲ୍ଲେଖ କରିଛନ୍ତି

ଏହିପରି ଯଥେଚ୍ଛାଚାରିତା,ଭାଷାର ଗ୍ରାମୀଣଭୂତରୂପ ଅଭିଧାନ ଗ୍ରନ୍ଥରେ ରହିଲେ, ଶିକ୍ଷାର୍ଥୀଙ୍କ ଅଶୁଦ୍ଧ ଶିକ୍ଷା ଛଡ଼ା ଆଉ କେଉଁ ଶିକ୍ଷାଟା ବଡ଼ ହେବ ? xx ଅଭିଧାନ ପ୍ରଣେତା ଯଥେଚ୍ଛାଚାରିତାର ଅନୁବର୍ତ୍ତୀ ହେଲେ,ବଡ଼ ବିସ୍ମୟ କଥା। xx

ହେହେ ନନ୍ଦ ଆପଣେ,

ଆପଣ ଆପଣାକୁ ଓଡ଼ିଆ ଭାଷାର ଏକମାତ୍ର ତତ୍ତ୍ୱଜ୍ଞ ଏବଂ ବଙ୍ଗ, ହିନ୍ଦୀ ପ୍ରଭୃତି ପ୍ରାଦେଶିକ ଭାଷାର ଧୀରେ ଧୀରେ ଚିନ୍ତାଶୀଳ ବୋଲି ମନେ କରନ୍ତୁ। ପୁଣି ସଂସ୍କୃତ ବ୍ୟାକରଣ, ସାହିତ୍ୟ, ଅଳଙ୍କାର, ଦର୍ଶନ, ପୁରାଣାଦିରେ ଆପଣଙ୍କର ବିଶାଳ ପାଣ୍ଡିତ୍ୟ ରହୁ,ସେଥିରେ କାହାର ହିଁ ଆପତ୍ତି ହେବ ନାହିଁ। କିନ୍ତୁ ଓଡ଼ିଆ ଭାଷାର ଏକମାତ୍ର ବ୍ରହ୍ମା,ଯାହା ବିଲିବିଳେଇବେ ତାହାହିଁ ଭାଷା,ତେଣୁ ଆଉ କେହି ଓଡ଼ିଆ ଭାଷାର ତତ୍ତ୍ୱ ଜାଣନ୍ତି ନାହିଁ,ଏହିପରି ବିସମ୍ବାଦିନୀ ଇଚ୍ଛା ଆପଣଙ୍କର ମନରେ କାହିଁକି ଜନ୍ମିଅଛି ?

ପୁଣି ଯାହା ହିଁ ଉଚ୍ଚାରିବା ତାହା ହିଁ ସାହିତ୍ୟିକ ଭାଷା, ଏହି(ଅପରିପକ୍ୱ ମତି ଯୁବକଙ୍କର)ଅଯଥା ସଂକଳ୍ପର ଅନୁଗାମୀ ହୋଇ ଆପଣ ଅଭିଧାନ ସଂକଳନ କରିଛନ୍ତି। ଏହି ଅଭିଧାନରେ ଶିକ୍ଷା ସାଙ୍ଗରେ ବାଳକମାନଙ୍କର ଅଶୁଦ୍ଧ ଶବ୍ଦର ଶିକ୍ଷା ସମ୍ପନ୍ନ ହେବ। ଏମନ୍ତ ସ୍ଥଳେ ଆପଣଙ୍କୁ କିଏ ଛାଡ଼ିବ ?[୪୯]

ପଣ୍ଡିତ ପୁରୁଷୋତ୍ତମଙ୍କ ଶବ୍ଦ-ବିଚାର ଜ୍ଞାନ ପ୍ରତି ଆକ୍ଷେପ କରି ସୋମନାଥ ଶାସ୍ତ୍ରୀ ଉଲ୍ଲେଖ କରିଛନ୍ତି-

ଏପରି ବୃଥା ଦୋଷାରୋପ ଓ ରଚନାରେ ପ୍ରବନ୍ଧଗୁଡ଼ିକ ନିଜ ପତ୍ରିକାରେ ସ୍ଥାନ ଦେଇ ଗୌରବ ନଷ୍ଟ କରିବେ ନାହିଁ । କିନ୍ତୁ ବୁଝିଲୁ ଯେ ଏତିକିରେ ବିରୋଧୀଦଳ ଆହୁରି ଥଣ୍ଡା ହୋଇନାହାନ୍ତି।ଯାହାକୁ ଅନ୍ତର୍ନିହିତ ବିଦ୍ୱେଷାନଳ ଦଗ୍ଧ କରି ପକାଉଥାଏ, ତାଙ୍କୁ ଆନୁଲେପ, ପ୍ରଲେପର କୌଣସି ପ୍ରୟୋଜନ ହୋଇ ନ ପାରେ। XX ଦୀପିକାର ସମ୍ପାଦକ ସୁଦାମ ବାବୁ ରାୟ ବାହାଦୂର ହୋଇ ପାରନ୍ତି,ତାଙ୍କର ବିଭବ ଓ କ୍ଷମତା ଯଥେଷ୍ଟ ଥାଇପାରେ ଚ଼ିନ୍ତୁ ସାହିତ୍ୟ ରାଜ୍ୟରେ ଲୋକେତ ସ୍ଥାନ ନୂଆ କରି ବୁଝିବେ ନାହିଁ।ଏଥିରେ ଲୋକଙ୍କୁ ମାରି ଧରି ବ୍ୟକ୍ତିତ୍ୱଭେଦ ବିଷୟରେ ଭଡ଼ାଟିଆ ପ୍ରବନ୍ଧ ଶୁଣାଇଲେ ସେ ବୁଝିବେ କିପରି।[୫୦] ଏବଂ, ଯେଉଁମାନଙ୍କର ପ୍ରାକୃତ ଭାଷାମାନଙ୍କରେ, ଅଥଚ ସଂସ୍କୃତ ସାହିତ୍ୟର ନାନା ବିଭାଗରେ ଅଧ୍ୟବସାୟ ଓ ଧୀର ଗବେଷଣା ନାହିଁ, ତତ୍ତ୍ୱ ବିଚାର ନାହିଁ, ଯେଉଁମାନେ କେବଳ ଶୃଙ୍ଗାରବ୍ୟଞ୍ଜକ ଓ ସ୍ତୁତିଦ୍ୟୋତକ ଶ୍ଳୋକ ପଢ଼ାକୁ ଯଥାର୍ଥ ପାଣ୍ଡିତ୍ୟ ମନେ କରନ୍ତି, ସେଭଳି ଲୋକେ ଓଡ଼ିଆ ଶବ୍ଦ ନିର୍ବାଚନରେ ସିଦ୍ଧାନ୍ତ ନେବାକୁ ବସିବା, ଗୁଣବହୁଳକୁ ଦୋଷଯୁକ୍ତ ବ୍ୟର୍ଥ ବୋଲି ଚିତ୍କାର କରିବାକୁ ଯିବାଟା 'ଏକାଂ ଲଜ୍ଜାଂ ପରିଯୁଜ୍ୟାଂ ତୈଲୋକ୍ୟ ବିଷୟୀ ଭବେତ୍' ପରି।[୫୧]

ଗ୍ରନ୍ଥ ଆଲୋଚନା କାଳରେ ଗୌରୀ ଶଙ୍କର ରାୟ ବୟସ୍କ ଫକୀର ମୋହନଙ୍କ ପ୍ରତି ଯେଉଁ ଶବ୍ଦମାନ ପ୍ରୟୋଗ କରିଛନ୍ତି,ଏହି ପ୍ରବନ୍ଧରେ ପୂର୍ବରୁ ମୁଁ ତାହା ଉଲ୍ଲେଖ କରିଛି। ପ୍ରତ୍ୟେକ ଓଡ଼ିଆ ଆଲୋଚକ ନିଜ ନିଜର ଗୁମାନ ଓ ଆଦର୍ଶକୁ ଅନ୍ୟ ଉପରେ ଲଦି ଦେବାକୁ ଗଳଦ୍‌ଘର୍ମ ପ୍ରୟାସ କରିଛନ୍ତି। ଆପଣା ଅହଂର ମଳଭାଣ୍ଡକୁ ଲବଣିବତ୍ ଜ୍ଞାନ କରିଛନ୍ତି। କେତେବେଳେ ବିଚାର ଜନିତ ସୀମାବଦ୍ଧତା ତ, ଆଉ କେତେବେଳେ ଜାତୀୟତାବାଦର ଛଦ୍ମ ଆଟୋପ ଓ କର୍ତ୍ତୃତ୍ୱ-ବିସ୍ତାରୀ ମାନସିକତା ସେମାନଙ୍କ ଅସହିଷ୍ଣୁତାର କାରଣ ହୋଇଛି। ସାହିତ୍ୟ ସମାଲୋଚନା କହିଲେ ସେମାନେ କେବଳ ପ୍ରଶସ୍ତି ଅଥବା କୁତ୍ସାରଟନା ଅର୍ଥରେ ଗ୍ରହଣ କରିଛନ୍ତି। ଏବଂ ଆପଣାକୁ ସୂର୍ଯ୍ୟ ମନେକରି ଏକ ଅନୁଗତ ଗୋଷ୍ଠୀ ମାଧ୍ୟମରେ ସାହିତ୍ୟିକ ଭାବାଦର୍ଶ ବା 'କ୍ୟାନନ୍' ପ୍ରତିଷ୍ଠାରେ ପ୍ରମତ୍ତ ହୋଇଅଛି । ମାତ୍ର ପ୍ରମତ୍ତତା କେତେ କ୍ଷତିକାରକ, ଏବଂ ସହୃଦୟତା ବାସ୍ତବତଃ ଯେ ଆଦର୍ଶ ପ୍ରତିଷ୍ଠାର ଭବ୍ୟ ମାର୍ଗ, ତାହା ସେମାନେ ସମୁଝି ପାରି ନାହାନ୍ତି। ରାଧାନାଥ, ଫକୀରମୋହନ, ଗୌରୀଶଙ୍କର ବିଶ୍ୱନାଥ ଆଦି ସମକାଳୀନ ଦିଗ୍‌ଗଜମାନଙ୍କ ବିଚାର ଯେ ଅହଂ ବ୍ୟାଧି ସଂକ୍ରମିତ, ଊନବିଂଶ ଶତାବ୍ଦୀରେ ପ୍ରକାଶିତ ପତ୍ର ପତ୍ରିକାଗୁଡ଼ିକର ପୃଷ୍ଠା ଖେଳେଇଲେ ତାହା ସ୍ପଷ୍ଟ ହୋଇଥାଏ।

ସବୁଠାରୁ ଆଶ୍ଚର୍ଯ୍ୟ ପ୍ରସଙ୍ଗ ଏହି କି ଯେ, ଓଡ଼ିଶାରେ ଆପଣା ଆପଣାକୁ ପଣ୍ଡିମ ଜ୍ଞାନପୁଷ୍ଟ ଦାବୀ କରୁଥିବା ଆଧୁନିକମାନେ ମଧ୍ୟଯୁଗୀୟ ସାମନ୍ତବାଦୀ ମାନସିକତାଠାରୁ ଆଦୌ ମୁକ୍ତ ହୋଇପାରି ନାହାନ୍ତି। ଏହା ଅବଶ୍ୟ ସତ୍ୟ,ପଣ୍ଡିମ ସେମାନଙ୍କ ଆଖି ଓ ମସ୍ତିଷ୍କରେ ପୁଞ୍ଜୀଭୂତ ମଳକୁ ପରିମାର୍ଜିତ ହେବାର ସୁଯୋଗ ଦେଇଛି; ମାତ୍ର ସେମାନଙ୍କ ଦୃଷ୍ଟି ବିଶ୍ୱମୁଖୀ ହେବା ପରିବର୍ତ୍ତେ ଗୁମୁଟାୟିତ ହୋଇଛି। ସାହିତ୍ୟ ସବୁ ମଣିଷଙ୍କପାଇଁ ନୁହେଁ, ଅଳ୍ପଙ୍କପାଇଁ ଏବଂ ସେହି ଅଳ୍ପମାନେ ସେତିକି ଯୋଗ୍ୟ, ସେତିକ ଗହନ ବିଦ୍ୟାର ଅଧିକାରୀ ନ ହେଲେ, ସାହିତ୍ୟକୁ ସମ୍ଭୁଝିବାପାଇଁ ତଥାପି ଅସମର୍ଥ, ଅନୁରୂପ ଧାରଣାକୁ ସ୍ୱୟଂ ରାଧାନାଥ ଓ ଗୌରୀ ଶଙ୍କର ମଧ ଗଳାମାଳୀ କରିଛନ୍ତି।[୮୨] ଆତ୍ମ-ପ୍ରତିଷ୍ଠା ଉଦ୍ଦେଶ୍ୟରେ ପ୍ରକାଶ୍ୟରେ ଦଳେ ସମୀକ୍ଷକ ପ୍ରାଚୀନ ସାହିତ୍ୟକୁ ମଳମୟ ଓ ଅଧୁନିକକୁ ସୁବାସିତ ଏବଂଅନ୍ୟ ସଂସ୍କୃତି ଓ ଜାତିପ୍ରେମୀମାନେ ପ୍ରାଚୀନକୁ ମଣି ଜ୍ଞାନ କରିଛନ୍ତି। ୧୮୯୦ମସିହାରୁ୧୮୯୬ ମସିହା ମଧରେ ପ୍ରକାଶିତ ଉତ୍କଳ ପ୍ରଭା, ଓଡ଼ିଆ ଓ ନବ ସମ୍ବାଦ, ବାଲେଶ୍ୱର ସମ୍ବାଦ ବାହିକା, ସମ୍ବଲପୁର ହିତୈଷିଣୀ, ଉତ୍କଳ ଦୀପିକା, ବିଜୁଳି ଓ ଇନ୍ଦ୍ରଧନୁ ପତ୍ରିକା ପୃଷ୍ଠାଗୁଡ଼ିକରେ ଆଲୋଚନା ଓ ପତ୍ରଗୁଡ଼ିକୁ ଆମେ ଅସହିଷ୍ଣୁତା ଓ ଆତ୍ମପ୍ରତିଷ୍ଠାଜନିତ ମହାବ୍ୟାଧି ଭାବରେ ଗ୍ରହଣ କରିପାରିବା। ସମ୍ବାଦ ପତ୍ରଗୁଡ଼ିକରେ ପ୍ରକାଶିତ ପୁସ୍ତକ ସମୀକ୍ଷାଗୁଡ଼ିକୁ ଲକ୍ଷ୍ୟକରି ଜନୈକ ପତ୍ର ପ୍ରେରକଙ୍କ ଅନୁରୋଧ,- "ବ୍ୟକ୍ତିଗତ ଈର୍ଷ୍ୟା ଉତ୍କଳର ପ୍ରତି ଶିରାରେ ଦେଖା ଦେଇଅଛି; ମାତ୍ର ବର୍ତ୍ତମାନ ସ୍ଥଳରେ ଯେହ୍ନେ ସାଧାରଣ ଶିକ୍ଷିତମଣ୍ଡଳୀରେ ସହାନୁଭୂତି ଲକ୍ଷିତ ହୁଏ,ତାହା ମଧ ଆମ୍ଭମାନଙ୍କର ସାନୁନୟ ନିବେଦନ" କୁ କେହି ଶୁଣି ପାରି ନାହାନ୍ତି।[୮୩]

ଆଧୁନିକ ଓଡ଼ିଆ ଭାଷା ଓ ସାହିତ୍ୟ ସମାଲୋଚନାର ଆଦର୍ଶ କିପରି ଥିଲା ତତ୍‌ସଂପର୍କରେ ଏକ ସ୍ୱଚ୍ଛ ଧାରଣାପାଇଁ, ଚୁମ୍ବକରେ, ଉନବିଂଶ ଶତାବ୍ଦୀର ଶେଷ ଦଶକକୁ ମନେପକାଯାଇପାରେ । ଏହି ସାହିତ୍ୟ ବିତର୍କର କେନ୍ଦ୍ରରେ ରହିଛନ୍ତି ମଧ୍ୟଯୁଗୀୟ କବି ଉପେନ୍ଦ୍ର ଓ ଆଧୁନିକ କବି ରାଧାନାଥ । ଜଣେ ମୃତ, ମାତ୍ର ସାଧାରଣ ଜନତାର ପ୍ରିୟ । ଅନ୍ୟ ଜଣେ ଜୀବନ୍ତ, କ୍ଷମତାସୀନ ଓ ଅଳ୍ପ ସଂଖ୍ୟକ ଆଧୁନିକଙ୍କର ନିକଟତମ । ଏ ଦୁହିଁଙ୍କ ମଧରେ କିଏ ଓଡ଼ିଆ ଅସ୍ମିତାର ପ୍ରତୀକ ତାହା ବିତର୍କର ଭୂମି ହୋଇଛି ଏବଂ ବିତର୍କ ଆରମ୍ଭ ହୋଇଛି ରାମନାରାୟଣ ଲାଲା ଙ୍କ 'କବି ଉପେନ୍ଦ୍ର ଭଞ୍ଜ' ଶୀର୍ଷକ ଆଲୋଚନାରୁ । ସେ ଉପେନ୍ଦ୍ରଭଞ୍ଜଙ୍କ ସୃଷ୍ଟି ସଂପର୍କରେ କହିଛନ୍ତି 'କବି ଏଠାରେ ଅନୁପ୍ରାସମାନ ସଂଯୋଗ କରିବାକୁ ଯାଇ ରଚନାଟି ଶ୍ରୁତି କଟୁ ଓ କ୍ଲିଷ୍ଟାର୍ଥଯୁକ୍ତ କରି ଅଛନ୍ତି। ବିକଟ ଅଙ୍ଗଭଙ୍ଗୀ ପ୍ରିୟ, ବ୍ୟାକରଣ ଜ୍ଞାନଶୂନ୍ୟ ଆର୍ଥିକ ସଂପ୍ରଦାୟର ଦୁଷ୍ଟା ସରସ୍ୱତୀଙ୍କ ସାହାଯ୍ୟ ବ୍ୟତୀତ ଏପରି ଅସ୍ୱାଭାବିକ ରଚନାର ଅର୍ଥବୋଧ କଦାଚ ସମ୍ଭବ ନୁହେଁ। xx କବି ଅଶ୍ଳୀଳତାରେ ବଙ୍ଗୀୟ କବି ଭାରତ ଚନ୍ଦ୍ରରାୟଙ୍କ ଗୁଣାକାରଙ୍କୁ ପରାଜୟ କରିଅଛନ୍ତି। xx ଭଞ୍ଜ କବି ସେହି ସୀମା ବହୁଦୂର ଅତିକ୍ରମ କରି ପ୍ରାୟ ବୀଭତ୍ସ ସଂସାରରେ ପ୍ରବେଶ କରିଛନ୍ତି।'[୮୪] ପୁନଶ୍ଚ ଉପେନ୍ଦ୍ର ଭଞ୍ଜଙ୍କ ରାମଚନ୍ଦ୍ରଙ୍କ ସଂକ୍ରାନ୍ତରେ ଲାଲ ଉଲ୍ଲେଖ କରିଛନ୍ତି, 'ବାଣିଜ୍ୟ ବିହୁନେ କେହ୍ନେ, ରୂପେ ରୋମାଞ୍ଚିତା ସାମାନ୍ୟ ପାଣ କଣ୍ଡରା ଜାତିର ଲୋକମାନେ ସୁଦ୍ଧା କନିଷ୍ଠ ସମ୍ମୁଖରେ ଏପରି କଥା କହନ୍ତି କି ନାହିଁ ସନ୍ଦେହ। (ପ୍ରଭା:୧୨୯୯ ସାଲ-ପୃ ୧୪୧)ଏହାର ପ୍ରତିବାଦ କରିଛନ୍ତି ଗୋଲକ ଧନ୍ଦା (ଗୋପାଳବଲ୍ଲଭ ଦାସ) ଓ ଗୌରୀ ଶଙ୍କର ରାୟ। ଜଣେ ହିତବାଦୀ.ଛଦ୍ମ ନାମରେ ଜନୈକ ପତ୍ରପ୍ରେରକଙ୍କ ମନ୍ତବ୍ୟ ଏ ପ୍ରସଙ୍ଗରେ ଉଲ୍ଲେଖ ଯୋଗ୍ୟ।

ଯାହାର ଦୁଇ ଚାରି ଧାଡ଼ି କବିତା ମୁଦ୍ରିତ ହୋଇ ଜନସାଧାରଣଙ୍କ ନୟନ ଗୋଚର ହେଲା,ସେ ଏକ କବିଚୂଡ଼ାମଣି,ଗୋପାଳ ଓ ଲଙ୍ଗୁଳୀମାନେ ପଢ଼ିଆରେ ଗୀତ ରଚନା କରି ଗୁଣୁ ଗୁଣୁ ସ୍ୱରରେ ଗୀତ ଗାଆନ୍ତି, ସେମାନେ କବି, ଏ ସମାଜର ସମସ୍ତେ କବି।

ଧନ୍ୟ ଧନ୍ୟ ଉତ୍କଳ ଭୂମି ତୋ ମହିମା

ଧନ୍ୟ ଧନ୍ୟ ଆଧୁନିକ କବିଙ୍କ ମହିମା।

ପାଣ୍ଡିତ୍ୟ ଚାତୁରୀ ତାଙ୍କ କିଏରେ କହିବ ?

ନିଜ ଘରେ ଥାଇ ପର କହୁଣୀ ଖାଇବ।(ଦୀପିକା: ୨୮ ମାର୍ଚ୍ଚ, ୧୮୯୨)

ରାମନାରାୟଣ ବାବୁଙ୍କ ଆଲୋଚନାର ଉତ୍ତର ଦେଇଛନ୍ତି ଗୋଲକଧନ୍ଦା ଓ ଅନ୍ୟମାନେ। ରାଧାନାଥ ଓ ଉପେନ୍ଦ୍ରକୈନ୍ଦ୍ରିକ କଳହ ଏତେ ଅପ୍ରୀତିକର ହୋଇଛି ଯେ, ସ୍ପଷ୍ଟବାଦୀ ଦାସ ନାମକ ଜନୈକ ପତ୍ରପ୍ରେରକ ଉଭୟ ପକ୍ଷଙ୍କୁ ଅନୁରୋଧ କରି ଲେଖିଛନ୍ତି-ଶିକ୍ଷିତ ସମାଜର ଏ ସବୁ ଅମୂଳକ ଲେଖାର ଭଲ-ମନ୍ଦ ବିଚାର ଦୂରେ ଥାଉ, ଭ୍ରୂକ୍ଷେପ କରା ଉଚିତ୍ ନୁହେଁ, ଓ ଖବର କାଗଜର ସମ୍ପାଦକମାନଙ୍କ ନିକଟରେ ବିନୀତ ନିବେଦନ ଏହି ଯେ ,ସେମାନଙ୍କ ଲେଖାରୁ ଏହି ସବୁ ଲେଖାକୁ ଉତ୍ସାହ ଓ ପ୍ରଶ୍ରୟ ଦେବା କେତେ ଦୂର ନ୍ୟାୟ ସଙ୍ଗତ ସେମାନେ ବିଚାର କରିବେ। (ଦୀପିକା:୫ ଅଗଷ୍ଟ,୧୮୯୩)ମାତ୍ର ପାଠକମାନଙ୍କ ଅନୁରୋଧକୁ କେହି ଶୁଣି ନାହାନ୍ତି। ଗୌରୀ ଶଙ୍କରଙ୍କ ପ୍ରେରଣାରେ ଇନ୍ଦ୍ରଧନୁ (୧୮୯୩ : ଅଗଷ୍ଟ) କଟକ ଏବଂ ରାଧାନାଥ-ସ୍ତାବକମାନଙ୍କର ଉଦ୍ୟମରେ ବିଜୁଳୀ (୧୮୯୩-ଅକ୍ଟୋବର) ବାମଣ୍ଡାରୁ ପ୍ରକାଶ ପାଇଛି। ଏଥିରେ ପ୍ରକାଶିତ ଇନ୍ଦ୍ରଧନୁ ଓ ଉପେନ୍ଦ୍ରଭଞ୍ଜ ଶୀର୍ଷକ ଦୁଇଗୋଟି ଆଲୋଚନାକୁ ଗୌରୀ ଶଙ୍କର 'ଚଟ୍‌ନୀ' କହିଛନ୍ତି ଏବଂ ଏହାକୁ କାଳେ 'ଇନ୍ଦ୍ରଦେବ ପଠାଇଛନ୍ତି- ଉତ୍କଳ ସାହିତ୍ୟରେ ଆଜିକାଲି ପ୍ରତିବାଦ ଲାଗିବାରୁ ଜାତୀୟ ଗୌରବ ରକ୍ଷା ନିମନ୍ତେ'[୫୫], ଏବଂ ଦାଶରଥି ରାଉତଙ୍କ ସମ୍ପାଦନାରେ ପ୍ରକାଶିତ ବିଜୁଳିର ବିଜ୍ଞାପନରେ ଉଲ୍ଲେଖ ରହିଛି- 'ଏହା ବିନା ମୂଲ୍ୟରେ ବିତରିତ ହେବ,ମାତ୍ର ମାଗିବା ଲୋକକୁ ଦିଆଯିବ ନାହିଁ। ବିଜୁଳିର କ୍ଷଣପ୍ରଭାରେ ଇନ୍ଦ୍ରଧନୁ ଅଦୃଶ୍ୟ ହେବାର ଆଶା ଶୀଘ୍ର ଆସିବ । ବିଜ୍ଞାପନ ହୋଇପାରେ। କେବଳ ଏହାର ଉଦ୍ଦେଶ୍ୟ ସାଧୁ ଓ ତହିଁର ବିପରୀତ,ଏହି ନ୍ୟାୟ ହେବ ଅଶ୍ଳୀଳନାଶନ।'

ଭଞ୍ଜ ଓ ରାଧାନାଥଙ୍କ କବିତ୍ୱକୁ କେନ୍ଦ୍ର କରି ଉଭୟ ପତ୍ରିକା ଏତେ କୋଳାହଳ କରିଛନ୍ତି ଯେ, ସମ୍ବାଦ ବାହିକାରେ 'ଭଞ୍ଜକଳି'ଶୀର୍ଷକ ଦୁଇଗୋଟି ଆଲୋଚନା ପ୍ରକାଶପାଇଛି। ବାହିକା ଅନୁରୋଧ କରିଛି-ଭଞ୍ଜ ରାୟଙ୍କୁ ନେଇ ଏତେ କଚଡ଼ା କଚଡ଼ି କରିବାର ଅଭିପ୍ରାୟ କ'ଣ ?ଯାହାର ଯାହାକୁ ମନ ରସେ, ସେ ତାହାକୁ ଆପଣାର ହୃଦୟରେ ବାନ୍ଧି ରଖୁ। ଦିବାରାତ୍ରି ବସି ଘୋଷୁ। ବର୍ତ୍ତମାନ କଳିର କଳିଆମାନେ କଳହ ରସର ପୁଷ୍ଟିସାଧନ କରିବାକୁ କମର ବାନ୍ଧି ଅଛନ୍ତି, ତେବେ ଅମ୍ଭେମାନେ କହୁ ତଥାସ୍ତୁ। ନିନ୍ଦୁକମାନଙ୍କୁ ବିନୀତ ଅନୁରୋଧ,ସେମାନେ ସତର୍କ ହୋଇ ଦୋଷ ସଂଶୋଧନ କରନ୍ତୁ।ସାରଗର୍ଭକ ଯୁକ୍ତି ଆଗତ କରନ୍ତୁ, ବୃଥାରେ ଗାଳି ଦେଲେ ଲାଭ ନାହିଁ। (ସମ୍ବାଦ ବାହିକା/୧୪ ଅକ୍ଟୋବର,୧୮୯୩) ଶେଷକୁ ନିଜେ ରାଧାନାଥ ରାୟ ଓଡ଼ିଆ ଓ ନବ ସମ୍ବାଦରେ ଏକ ପତ୍ର ମାଧ୍ୟମରେ ରାମନାରାୟଣବାବୁଙ୍କ ମତ ସହିତ ତାଙ୍କର କୌଣସି ସଂପର୍କ ନାହିଁ ବୋଲି

ଘୋଷଣା କରିଛନ୍ତି। (ଓଡ଼ିଆ ନବ ସମ୍ବାଦ:ଅକ୍ଟୋବର୧୮୯୪)ଦୀପିକାର ଜୁନ୍ ୨୩ ଓ ଅଗଷ୍ଟ ୧୮ ତାରିଖରେ ମହନ୍ତ ରଘୁନାଥ ପୁରୀ ଗୋସାଇଁ ଓ ଭୋଳାନାଥ ସାମନ୍ତରାୟଙ୍କ ପ୍ରକାଶିତ ପତ୍ର ଦୁଇଟି ବେଶ୍ ଗୁରୁତ୍ୱପୂର୍ଣ୍ଣ । ଗୋସାଇଁ

> ଆମ୍ଭମାନଙ୍କ ମୃତ କବିବର ଉପେନ୍ଦ୍ରଭଞ୍ଜ ଓ ଆମ୍ଭମାନଙ୍କର ବର୍ତ୍ତମାନର କବିବର ବାବୁ ରାଧାନାଥ ରାୟ-ଏ ଦୁଇଜଣଙ୍କ ମଧ୍ୟରେ କିଏ ବଡ଼ ଏହାହିଁ ଠକ୍ କରା- ଏଥିଯୋଗେ ରାଣ୍ଡ ଗୋସେଇଁ ଖାଇ ଠାରୁ ଠେଙ୍ଗାବାଡ଼ିଯାଏ, ଖଣ୍ଡାଂତଲୱାର ଧାରଣ ପର୍ଯ୍ୟନ୍ତ ହେଲା,ଏଣୁ କରି ରାୟ କମ୍ ନୁହଁନ୍ତି କି ଭଞ୍ଜ କମ୍ ନୁହନ୍ତି,ଏସବୁ ପ୍ରତି ଦୃଷ୍ଟି ରଖି ଆମ୍ଭମାନଙ୍କର ବୃଥାକଳହ ଅନୁଚିତ୍ । ଏହି ବକ୍ତବ୍ୟରେ ସାଲିସ୍ ମାନସିକତା ପ୍ରକାଶ ପାଇଥିଲା ବେଳେ, ସାମନ୍ତରାୟଙ୍କ ମନ୍ତବ୍ୟ- ଭାରତବର୍ଷର ପ୍ରତି ପ୍ରଦେଶରେ ଜ୍ଞାନର ପ୍ରଦୀପ ଜଳି ଉଠୁଛି, ଜାତୀୟତାର ଅଗ୍ନି ପ୍ରଜ୍ୱଳିତ ହୋଇଅଛି,ଏକତାର ବୈଦ୍ୟୁତିକ କ୍ରିୟା ଆରମ୍ଭ ହୋଇଅଛି, ଉତ୍କଳୀୟ ବିଜୁଳି ଓ ଇନ୍ଦ୍ରଧନୁ ଘେନି ବାଇ ଲୀଳା କରୁଅଛନ୍ତି,ଏ ହତଭାଗ୍ୟ ଦେଶର କି ଭାବି ଆଶା ନାହିଁ ?'

ଓଡ଼ିଆ ମାନଙ୍କୁ ସେମାନଙ୍କ ବର୍ତ୍ତମାନ ଓ ଭବିଷ୍ୟତ ସମ୍ପର୍କରେ ସଚେତନ କରିଦେଇଛନ୍ତି। ପ୍ରକାଶନର ଠିକ୍ ବର୍ଷକ ପରେ ସନ୍ତପ୍ତ, ଅନୁତପ୍ତ ଓ ଦୁଃଖିତ ଦାଶରଥି ରାଉତ ବିଜୁଳିର ସମ୍ପାଦକ ପଦ ଛାଡ଼ିଛନ୍ତି। (ଦୀପିକା: ୨୧ଅକ୍ଟୋବର)ଗୌରୀ ଶଙ୍କର ଆପଣା ପତ୍ରିକାରେ 'ଇନ୍ଦ୍ରଧନୁର ଜୟ କି ପରାଜୟ' ଶୀର୍ଷକରେ ଏକ ଆଲେଚନା ପ୍ରକାଶ କରିଛନ୍ତି। ଇନ୍ଦ୍ରଧନୁର ରୂପରେ ମଧ୍ୟ ପରିବର୍ତ୍ତନ ଆଣିଛନ୍ତି । ମାତ୍ର ଏକ ଭାବାଦର୍ଶ ପ୍ରତିଷ୍ଠାପାଇଁ ଆପଣା ସହିତ ଝଗଡ଼ି ହେଇଥିବା ଏବଂ ଆପଣା ସୃଷ୍ଟ ଗୋଠ ଭିତରେ ସଙ୍ଗୀମାନଙ୍କ ଗହଣରେ ଅତ୍ୟନ୍ତ ଚତୁରତାର ସହିତ ବିହାର କରୁଥିବା ଜାଗ୍ରତମାନଙ୍କ ମଗଜ ତଥାପି ଯେ ବିଂଶ ଶତାବ୍ଦୀର ଦ୍ୱିତୀୟ ଦଶକରେ ସାମନ୍ତବାଦ ଓ ଆଞ୍ଚଳିକତାବାଦ ଭୂତାଣୁ ସଂକ୍ରମିତ ଥିଲା, ନନ୍ଦ ଶର୍ମାଙ୍କ ଅଭିଧାନକୈନ୍ଦ୍ରିକ ଆଲୋଚନାରୁ ତାହା ସୁସ୍ପଷ୍ଟ ହୋଇଯାଏ ।

ଶବ୍ଦତତ୍ତ୍ୱବୋଧ ଅଭିଧାନର ଆଦି ସମୀକ୍ଷକ ପଣ୍ଡିତ ମୃତ୍ୟୁଞ୍ଜୟ ରଥଙ୍କ ପ୍ରବନ୍ଧ, ଯାହା ଉତ୍କଳ ସାହିତ୍ୟ ସମାଜରେ ତା ୧୦/୦୪/୧୯୧୬ ମସିହାରେ ପଠିତ ହୋଇଥିଲା,କୌଣସି କାରଣରୁ ତାହା ପ୍ରକାଶିତ ହୋଇନାହିଁ ଏବଂ ୧୯୧୬ ମସିହାର ବିବରଣୀରେ ଏବେ ଉପଲବ୍ଧ ନୁହେଁ। ତେବେ ଉତ୍କଳ ଦୀପିକାର ଏପ୍ରିଲ୍ ଏକ ତାରିଖ ସନ୍ଧ୍ୟାରେ ପ୍ରକାଶିତ ସମ୍ବାଦର ଲେଖକ ଭାବରେ ଯଦି ପଣ୍ଡିତ ରଥଙ୍କୁ ଗ୍ରହଣ କରାଯାଏ, ତାଙ୍କ ଉକ୍ତିରେ ସେପରି କୌଣସି ନୂତନତା ଅଛି ବୋଲି କୌଣସି ଶବ୍ଦରସିକ ଗ୍ରହଣକରିବ ନାହିଁ। ପୃଥିବୀରେ ଏମିତି ଜଣେ ଶବ୍ଦପ୍ରେମିକ ନାହାନ୍ତି, ଯାହାଙ୍କୁ ଅକଥାଗୁଡ଼ିକ କଥା ଭାବରେ ଗ୍ରହଣ କରିବାକୁ ନପଡ଼ିଛି । ବଙ୍ଗଳା ଭାଷାକୁ ନିଜର ଭାଷା ଏବଂ ବଙ୍ଗଳାକୁ ଆପଣାର ଭୂମି ଜ୍ଞାନକରିଥିବା ରେଭରେଣ୍ଡ କେରୀ ବଙ୍ଗଳା ଭାଷାରେ ଯେଉଁ ଶବ୍ଦକୋଷ ପ୍ରକାଶ କରିଥିଲେ, ସେକାଳର ବଙ୍ଗାଳୀମାନେ କେରୀଙ୍କୁ କମ୍ ସମାଲୋଚନା କରିନାହାନ୍ତି । ତାଙ୍କ ଅପରାଧ ଥିଲା-ଲୋକମୁଖର କଥିତ ଶବ୍ଦଗୁଡ଼ିକର ଗ୍ରନ୍ଥାୟନ। ମାତ୍ର ଆଜି ତାଙ୍କ ଶବ୍ଦକୋଷକୁ ବଙ୍ଗାଳୀମାନେ କୋଟିନିଧି କରୁଛନ୍ତି। କେରୀଙ୍କ ଯୋଗୁଁ ହିଁ ସେମାନେ ସମର୍ଥ ହୋଇଛନ୍ତି-

ସେମାନଙ୍କ ଭାଷାର ସ୍ୱରୂପ ଅଧ୍ୟୟନରେ। ଆମେ ଓଡ଼ିଆ ଭାଷାର ଅଭିଧାନକାର ଆମସ୍ ସଟନ୍‌ଙ୍କୁ ବଙ୍ଗଳାର କେରୀ ଭାବେ ଗ୍ରହଣ କରିପାରିବା । ସଟନ୍ ଆପଣାର ଅଭିଧାନର ମୁଖବନ୍ଧରେ ଲେଖିଛନ୍ତି

> A compiler of a dictionary is a kind of pioneer of literature whose usual reward is hard words.If ,indeed he so accomplishes his task to leave no impediment to the Traveller's Progress,he may just hope to be forgotten,but whatever may have been his labour and skill is what he has done and stand and obstacle yet remain,or any direction , he omitted that might per chance secure the travellers from going wrong ,the wheel prebably be remembered with any thing,but benediction.[56]

ସେହି ନ୍ୟାୟରେ ପଣ୍ଡିତ ନନ୍ଦଙ୍କ ପ୍ରତି ତାଙ୍କର ସହଧର୍ମୀମାନଙ୍କ ଆକ୍ରମଣକୁ ଅସ୍ୱାଭାବିକ, ଈର୍ଷାପ୍ରଣୋଦିତ ଓ ଅପ୍ରତ୍ୟାଶିତ ଅପେକ୍ଷା ସଶ୍ରଦ୍ଧ ପୁରସ୍କାର କୁହାଯାଇପାରେ। ପଣ୍ଡିତଙ୍କ ପରି ବିଦ୍ୱାନ ଅନ୍ୟଙ୍କ ବୋଲୁଅ ମାଡ଼ ଓ ଠେଙ୍ଗା ପାହାରରେ ଯେ ଅପେକ୍ଷା ରଖି ନ ଥିବେ, ତାହା ମଧ୍ୟ ନୁହେଁ। ସମ୍ଭବତଃ ସେଥିପ୍ରତି ସେ ଆପଣାକୁ ପ୍ରସ୍ତୁତକରି ରଖିଥିବେ। ଆପଣା ବିଚାର ଓ ବିଶ୍ୱାସ ସହ ପରିଣୀତ ମଣିଷ ସବୁ କାଳରେ ବେସାଲିସ୍ ଜୀବନ ବଞ୍ଚେ, ତେଣୁ ଅନ୍ୟମାନଙ୍କ ଅଶେଷ ଗଞ୍ଜଣାର ଶିକାର ହୁଏ, ଏଇ ଚରମ ସତ୍ୟ କୁ ସେ ବରଣ କରି ନେଇଥିବେ।

## ଛଅ

ଏବେ ଶବ୍ଦତତ୍ତ୍ୱବୋଧ ଅଭିଧାନର ତତ୍ତ୍ୱ ପ୍ରସଙ୍ଗକୁ ଫେରିବା । ଅଳ୍ପରେ କହିଲେ- ଓଡ଼ିଆ ଭାଷାରେ ପଣ୍ଡିତ ନନ୍ଦଙ୍କ ଏକ ଅଭିଧାନ ସଂକଳନର ଉଦ୍ଦେଶ୍ୟ-ଏକ କୋଷଗ୍ରନ୍ଥ ଅଭାବ ଜନିତ ଅନୁଭବ। ତେଣୁ ସେ ଏପରି ଏକ ଶବ୍ଦକୋଷର ପରିକଳ୍ପନା କରିଛନ୍ତି- ଯାହାକୁ ଆଧାର କରି ନିଜ ଭାଷାର ଶବ୍ଦଗୁଡ଼ିକର ଉତ୍ପତ୍ତି,ସେଗୁଡ଼ିକର ଐତିହାସିକ ବିବର୍ତ୍ତନ ଓ ବ୍ୟବହାର ବୈଚିତ୍ର୍ୟକୁ ଠାବ କରାଯାଇପାରିବ। ଅର୍ଥାତ୍ ଓଡ଼ିଆ ଭାଷାର ବିପୁଳ ଶବ୍ଦଭଣ୍ଡାର ଓ ବୈଶିଷ୍ଟ୍ୟକୁ ଚିହ୍ନିହେବ। ସେଥିପାଇଁ ସେ ଭାଷାତତ୍ତ୍ୱ ଅବଗ୍ରାହୀ ହୋଇଛନ୍ତି। ତତ୍ତ୍ୱ ଆଧାରରେ ଓଡ଼ିଆ ଭାଷାରେ ଲିଖିତ ଶବ୍ଦଗୁଡ଼ିକର ଉତ୍ସ ଖୋଜିଛନ୍ତି। ଲୋକମୁଖରେ ଶବ୍ଦଗୁଡ଼ିକ ଯେଉଁ ବିଚିତ୍ର ରୀତିରେ ଉଚ୍ଚାରିତ ହୋଇଥାଏ ଏବଂ ବ୍ୟୁତ୍ପତ୍ତିଗତ ଅର୍ଥଭିନ୍ନ ଅନ୍ୟ କେଉଁ ଭାବ ବହନ କରୁଥାଏ, ସେସମସ୍ତ ପ୍ରତିପାଦନ ତାଙ୍କ ଉଦ୍ଦେଶ୍ୟ ହୋଇଛି। ବ୍ୟାକରଣ ଶାସ୍ତ୍ରର ବିଧି ଅନୁସାରେ ଶବ୍ଦଗୁଡ଼ିକ ଗଠନ ରୀତି ଓ ପ୍ରକାର ନିରୂପଣପାଇଁ ପ୍ରଗାଢ଼ ଶ୍ରମ କରିଛନ୍ତି। ଓଡ଼ିଆ ଶବ୍ଦ ଭଣ୍ଡାରକୁ ସେ ତିନି ଭାଗରେ ବିଭକ୍ତ କରିଛନ୍ତି-ତତ୍ସମ ଅର୍ଥାତ୍ ସଂସ୍କୃତ, ତଦ୍ଭବ ଅର୍ଥ ସଂସ୍କୃତଜ ଏବଂ ଦେଶଜ-ଅର୍ଥାତ୍ ଯେଉଁ ଶବ୍ଦଗୁଡ଼ିକର ମୂଳ ଅଜ୍ଞାତ ଅଥବା ସଂସ୍କୃତେତର ଭାଷାରୁ ଆଗତ। ସେ ଓଡ଼ିଆ ଶବ୍ଦଗୁଡ଼ିକ ସଂସ୍କୃତରୁ ପ୍ରାକୃତ ବାଟ ଦେଇ ଆସିଛନ୍ତି ଏକ ଧାରଣାର ବଶବର୍ତ୍ତୀ ହୋଇଛନ୍ତି ଏବଂ ଉପର୍ଯ୍ୟୁକ୍ତ ଆଦର୍ଶ ତାଙ୍କ ଅଧ୍ୟୟନର ମାନଦଣ୍ଡ ହୋଇଛି। ତାଙ୍କ ବିଚାରରେ

ତତ୍‌ସମ ଅନୁସ୍ୱାର, ବିସର୍ଗବିହୀନ ଓ ସଂସ୍କୃତ ଶବ୍ଦ, ତଦ୍‌ଭବ ଅର୍ଥାତ୍ ସଂସ୍କୃତ ଶବ୍ଦରୁ ବିକୃତ ଭାବେ ଉତ୍ପନ୍ନ, ଦେଶ୍ୟ ଅର୍ଥାତ୍ ତତ୍ ତତ୍ ଦେଶୀୟ ଲୋକମାନଙ୍କ ଭାବଭଙ୍ଗୀରୁ ସାଙ୍କେତିକ ରୂପେ ସଂଜାତ ଶବ୍ଦ ସମୂହ। ଏହା ପ୍ରାୟ ସମସ୍ତ ଶବ୍ଦ ରାଜ୍ୟରେ ପ୍ରଚଳିତ ଥାଏ। xx ଶବ୍ଦର ସୁସଂଗତ ମୂଳ ପ୍ରକୃତି ଯେ ପର୍ଯ୍ୟନ୍ତ ଅଜ୍ଞାତ, ସେ ପର୍ଯ୍ୟନ୍ତ ସେହିଟି ଦେଶଜ ଶବ୍ଦରୂପେ ପରିଗଣିତ ହୋଇପାରେ। xx ଭାଷା ରାଜ୍ୟରେ ଯେଉଁ ଶବ୍ଦଗୁଡ଼ିକର ପ୍ରକୃତି ନାହିଁ କିମ୍ବା ପରିଜ୍ଞାତ ହୋଇନାହିଁ, ଅଥଚ ସେଗୁଡ଼ିକ ତତ୍‌ଦେଶବାସୀଙ୍କ ଭାବଭଙ୍ଗୀ ସୂଚକ ରୂପେ ସୃଷ୍ଟ ଓ ବ୍ୟବହୃତ, ସେଗୁଡ଼ିକ ଦେଶୀୟ ଶବ୍ଦ। 'ତେଣୁ ଓଡ଼ିଆ, ଏହି ପ୍ରାକୃତ ଭାଷା ସମ୍ପର୍କରେ ଆପଣାର ମତବ୍ୟକ୍ତ କରିବାକୁ ଯାଇ ସେ ପ୍ରାକୃତମଞ୍ଜରୀକାରଙ୍କ ଉକ୍ତି ପ୍ରାକୃତଃ ସଂସ୍କୃତାସ୍ତୁ, ବିକୃତି ପ୍ରାକୃତି ମତାମତକୁ ଗ୍ରହଣ କରି ପ୍ରତ୍ୟେକ ପ୍ରାକୃତ ଶବ୍ଦର ମୂଳ ନ୍ୟୂନାଧିକ ଭାବରେ ସଂସ୍କୃତ ଭାଷାରୁ ବିକୃତିପ୍ରାପ୍ତ' ବୋଲି ଉଲ୍ଲେଖ କରିଛନ୍ତି।[୫୭]

ବରରୁଚି, କାତ୍ୟାୟନାଦି କୃତ ଶବ୍ଦାନୁଶାସନ ଏବଂ ଶବ୍ଦମାନଙ୍କର ଅର୍ଥ ଦ୍ୱିରୂପାଦିର ପ୍ରମାଣ ସ୍ୱରୂପ ଦ୍ୱିରୂପକୋଷ, ବିଶ୍ୱକୋଷ,- ବ୍ୟାଡ଼ି, ରଭସ, ହେମଚନ୍ଦ୍ର, ଧରଣୀ, ଅଜୟ ଓ ଅମରକୋଷାଦି କୋଷଗ୍ରନ୍ଥମାନଙ୍କରୁ ପର୍ଯ୍ୟାୟବାକ୍ୟ ଓ ସ୍ଥାନେସ୍ଥାନେ ମନୁସଂହିତା ଆଦି ଧର୍ମଶାସ୍ତ୍ର, ବାଲ୍ମୀକୀୟ ରାମାୟଣ, ବ୍ୟାସକୃତ ମହାଭାରତ, ଦେବୀପୁରାଣ, କୁମାରସମ୍ଭବ କାବ୍ୟ ଓ ନାଟକ ଏବଂ ଆୟୁର୍ବେଦ, ଜ୍ୟୋତିଷଶାସ୍ତ୍ର ଆଦିର ପ୍ରମାଣ ବାକ୍ୟମାନ ଉଦ୍ଧାର କରିଛନ୍ତି।[୫୮] ଶହ ଶହ ବର୍ଷଧରି କାଳର କରାଳରେ କବଳିତ ବା ଭୂତଳ ପ୍ରଦେଶରେ ସ୍ତର ସ୍ତର ମୃତ୍ତିକାବରଣରେ ଲୁକ୍କାୟିତ ଥିବା ରତ୍ନରେଣୁର ପୁନରୁଦ୍ଧାର କରି ତାହା ସବୁ ସୁଶୃଙ୍ଖଳିତ ଭାବରେ ଦର୍ଶାଇବା ତାଙ୍କର ଆଦର୍ଶ ହୋଇଛି।[୫୯] ତେଣୁ କୌଣସି ଶବ୍ଦର ମୂଳ ଖୋଜିଖୋଜି ନପାଇବାପରେ, ଏହାକୁ ଦେଶୀୟ କହିଛନ୍ତି । ଏବଂ, କେତେକ ସ୍ଥଳରେ ଆପଣା ମନରୁ ସଂସ୍କୃତ ଶବ୍ଦ ସୃଷ୍ଟିକରି ପାଠକକୁ ଚକିତ କରିଛନ୍ତି ।

ଶବ୍ଦର ଉଚ୍ଚାରଣ ପ୍ରସଂଗ ଉଠିଲା ବେଳେ, ସେ ଓଡ଼ିଆମାନଙ୍କର ଓଠ, ଦାନ୍ତ, ମୂର୍ଦ୍ଧା ଜିହ୍ୱା ଆଡ଼କୁ ଆଖି ଓ କାନ ଦେଇଛନ୍ତି। ସେ ଅନୁଭବ କରିଛନ୍ତି, ଓଡ଼ିଆ ମାନେ ଶବ୍ଦ ଲିଖନ କାଳରେ ହ୍ରସ୍ୱ 'ଇ', ଦୀର୍ଘ 'ଈ', ହ୍ରସ୍ୱ 'ଉ', ଦୀର୍ଘ'ଊ', ବର୍ଗ୍ୟ'ବ', ଅବର୍ଗ୍ୟ'ବ', ଦନ୍ତ୍ୟ 'ସ', ତାଲବ୍ୟ'ଶ' ଓ ମୂର୍ଦ୍ଧନ୍ୟ'ଷ' ବର୍ଣ୍ଣଗୁଡ଼ିକ ପ୍ରୟୋଗ କରନ୍ତି, ମାତ୍ର ଉଚ୍ଚାରଣ କାଳରେ ଲିଖନ ସହିତ କୌଣସି ସମ୍ବନ୍ଧ ନଥାଏ । ତେଣୁ ଲିଖନ ଓ ଉଚ୍ଚାରଣ ମଧ୍ୟରେ ଅମେଳ ବା ଅସଙ୍ଗତିକୁ ସେ ଆପଣାର ଅଭିଧାନରେ ଉଲ୍ଲେଖ କରିଛନ୍ତି। ଶବ୍ଦର ଶୁଦ୍ଧତା ବା ଅଶୁଦ୍ଧତା ସମ୍ପର୍କରେ ତୁଣ୍ଡ ଖୋଲିନାହାନ୍ତି।ଯଥା:- କୁତି/କୁତୀ, କୁଜି/କୁଜୀ, କୁଣ୍ଡି/କୁଣ୍ଡୀ, କଦଳି/କଦଳୀ, କୁଟିର/କୁଟୀର, ଜାତ/ଯାତ, ଯୋର/ଜୋର, ଯୁଥିକା/ଯୂଥିକା, ଯୁଟିବା/ଜୁଟିବା, କୁଅ/କୂଅ, ମତ୍ତକାଶିନୀ/ମତ୍ତକାସିନୀ, ଶାଶୁ/ସାସୁ, ଶାରି/ଶାରୀ/ଶାରିକା, ସୁନାଶିର/ଶୁନାଶୀର, ଶିରିପଞ୍ଚମି/ଶିରିପଞ୍ଚମୀ, ଶୁଖିଲା/ସୁଖିଲା, ଶୋଷ/ସୋସ/ସୋଷ, ଶୋଧିବା/ସୋଧିବା, ଶେଯାଇବା/ଶେଜାଇବା/ସେଜାଇବା, ଶୋହିବା/ସୋହିବା, ଶୈଳ/ସେଉଳ/ଶେଉଳ/ଶଉଳ/ଷୋହଳ ଇତ୍ୟାଦି ।

ପୁନଶ୍ଚ ଗୋଟିଏ ଶବ୍ଦ ଓଡ଼ିଶାର ବିଭିନ୍ନ ଅଞ୍ଚଳରେ ଭିନ୍ନ ଭିନ୍ନ ଜାତି, ଗୋଷ୍ଠୀ ଓ ମାନସିକତାର ମଣିଷମାନଙ୍କ ତୁଣ୍ଡରେ ଯେଉଁ ପରି କଥିତ ହୁଏ, ତାହାକୁ ଅବିକଳ ଉଲ୍ଲେଖ କରିଛନ୍ତି। ଯଥା :- ରାତ୍ରିଞ୍ଚର/ରାତ୍ରିଚର, ମଝଲି/ମଜଲି, ବହୁ/ବୋହୂ/ବୋହୁ, ବ୍ୟବସା/ବେବସା, ବିଭ୍ରା/ବିଭୋଳ/ବିଭେଳ, ଟେଙ୍ଗଡ଼ା/ତେଙ୍ଗଡ଼ା, ଚାଞ୍ଚ/ଚାଞ୍ଚରା/ଚାଞ୍ଚଡ଼ା/ଚାଟି, କୁରୁପ/କୁରୁପା, କୁନ୍ତୀ/କୋଇନ୍ତା, ଦ୍ରୌପଦୀ/ଦ୍ରୋପଦୀ, କରଚୁଲି/କର୍ଚୁଲି, ଖଣତା/ଖଣିତା/ଖଣତି/ଖଣନ୍ତି/ଖଣନ୍ତା, ଚିତଉ/ଚିତୋଉ/ଚିତାଉ, ଝିଟିପିଟି/ଝଣ୍ଟିପିଟି/ଝଣ୍ଟପାଟି, ଚିନି/ଚେନି, ଇତ୍ୟାଦି। କେଉଁ ଅଞ୍ଚଳର ଲୋକଙ୍କ ତୁଣ୍ଡର ଭାଷା ଶୁଦ୍ଧ, ତାହା ପ୍ରମାଣପାଇଁ ନିରାପଦ ମଣିନାହାନ୍ତି । ସେ ଲୋକମାନଙ୍କ ପାଖକୁ ଯାଇଛନ୍ତି । ଶବ୍ଦଗୁଡ଼ିକ ସେମାନଙ୍କ ତୁଣ୍ଡରୁ ସାଉଁଟି ଆଣିଛନ୍ତି ଏବଂ, ଏଥିପାଇଁ ଅନ୍ୟମାନଙ୍କର ସାହାଯ୍ୟ ମଧ୍ୟ ନେଇଛନ୍ତି । ଆପଣା ଶବ୍ଦକୋଷ ମାଧ୍ୟମରେ ଅଞ୍ଚଳ ଅଞ୍ଚଳ ମଧ୍ୟରେ ଜୈବିକ ଯୋଡ଼ଣପାଇଁ ପ୍ରୟାସ କରିଛନ୍ତି। ଏବଂ,ସ୍ଥଳ ବିଶେଷରେ ଶବ୍ଦଗୁଡ଼ିକର ପ୍ରୟୋଗ ବୈଚିତ୍ର୍ୟ ପ୍ରମାଣପାଇଁ ମହାଭାରତ, ରାମାୟଣ, ହରିବଂଶ ଓ ଲୋକୋକ୍ତିରୁ ଉଦାହରଣ ଦେଇଛନ୍ତି । ଶବ୍ଦ ଲିଖନରେ ଉପର୍ଯ୍ୟୁକ୍ତ ମାନସିକତା, ସମକାଳୀନ ପଣ୍ଡିତମାନଙ୍କର କ୍ରୋଧର ପ୍ରଧାନ କାରଣ ହୋଇଛି।

ଅଭିଧାନରେ ସଂଯୋଜିତ ଶେଉଳ ଶବ୍ଦକୁ ଉଦାହରଣ ଭାବରେ ଗ୍ରହଣ କରି ପଣ୍ଡିତ ପୁରୁଷୋତ୍ତମ ତର୍କାଳଙ୍କାର ନନ୍ଦଙ୍କ ଶବ୍ଦ ଅଧ୍ୟୟନର ପଦ୍ଧତିକୁ ସମାଲୋଚନା କରିଛନ୍ତି। ତାଙ୍କ ଭାଷାରେ

> ଉଷ୍ମ ବର୍ଣ୍ଣ ଘଟିତ ସଂସ୍କୃତ ଶବ୍ଦଗୁଡ଼ିକ ଶତକଡ଼ା ପଞ୍ଚାନବେ ଭାଗ ଅଶୁଦ୍ଧ। ପ୍ରତ୍ୟେକ ଭାଷାରେ ଉଚ୍ଚାରଣ ହିଁ ଭାଷାର ଶୁଦ୍ଧି ବା ଅଶୁଦ୍ଧିର ନିୟାମକ ନୁହେଁ। ତାହା ହେଲେ ଅଭିଧାନମାନଙ୍କରେ ଲିପିକରଣ ନତାନ୍ତ ଦୁର୍ଘଟ ହୋଇଉଠିବ। ଉଚ୍ଚାରଣ ଧରି ଶବ୍ଦଗୁଡ଼ିକର ବିକୃତି ଭାବରେ ଲିପି ମୁଦ୍ରଣ ନିତାନ୍ତ ଅସଙ୍ଗତ, ଅକର୍ତ୍ତବ୍ୟ। XX ନନ୍ଦେ ନିଜ ଉଚ୍ଚାରଣ ସ୍ରୋତରେ ଭାସିଗଲେ।

(ଉତ୍କଳ ଦୀପିକା: ୨ ୨ ଜୁଲାଇ,୫ ଅଗଷ୍ଟ ୧ ୯ ୧ ୬)ସମ୍ଭବତଃ ପଣ୍ଡିତ ନନ୍ଦ ସତ୍ୟବାଦୀ ଗୋଷ୍ଠୀର ଲିପି ସଂସ୍କାର ମାନସିକତାକୁ ପରୋକ୍ଷରେ ସ୍ୱୀକାର କରୁଥିବା କଥା ପଣ୍ଡିତ ତର୍କାଳଙ୍କାର ଅନୁଭବ କରିଛନ୍ତି।

ପୁନଶ୍ଚ ଓଡ଼ିଆ ଭାଷାର ବିକାଶ କ୍ରମରେ' ପ୍ରାକୃତ'ର ଗୁରୁତ୍ୱକୁ ପଣ୍ଡିତ ତର୍କାଳଙ୍କାର ଗ୍ରହଣ କରିପାରି ନାହାନ୍ତି। ତାଙ୍କ ଭାଷାରେ ଓଡ଼ିଆ ଭାଷା ସଂସ୍କୃତ ମୂଳକ ହେଲେହେଁ,ତାହା ପ୍ରାକୃତ ନୁହେଁ। ଦେଶୀୟ ଭାଷାମାନଙ୍କୁ ପ୍ରାକୃତ ବୋଲାଯାଇପାରେ ? ସଂସ୍କୃତମୂଳକ ପ୍ରାଦେଶିକ ଭାଷା ହିଁ ପ୍ରାକୃତ- ତାହା ନିତାନ୍ତ ଅସଙ୍ଗତ ଓ ସାହସିକତାର କଥା । ବସ୍ତୁତଃ ସଂସ୍କୃତମୂଳକ ଭାଷା ସବୁ ପ୍ରାକୃତ ନୁହେଁ। (ଉତ୍କଳ ଦୀପିକା : ୮ ଜୁଲାଇ,୧ ୯ ୧ ୬) ପ୍ରାକୃତ-ଭାଷାତତ୍ତ୍ୱ-ଅବଗ୍ରାହୀ ପଣ୍ଡିତ ନନ୍ଦ ଭରତର ବିଭିନ୍ନ ଅଞ୍ଚଳର ଜନ ସମୁଦାୟ ତାଲବ୍ୟ 'ଶ', ମୂର୍ଦ୍ଧନ୍ୟ'ଷ', ଦନ୍ତ 'ସ'; ହ୍ରସ୍ୱ 'ଇ', ଦୀର୍ଘ 'ଈ'; ବର୍ଗ୍ୟ 'ବ', ଅବର୍ଗ୍ୟ 'ବ'; ବର୍ଗ୍ୟ 'ଜ' ଓ ଅବର୍ଗ୍ୟ 'ଯ' ବର୍ଣ୍ଣ ଉଚ୍ଚାରଣ କାଳରେ କିପରି ସଂସ୍କୃତ ନିୟମାନୁବଦ୍ଧ ନ ଥିଲେ, ତତ୍ ସଂକ୍ରାନ୍ତରେ ସଚେତନ ଥିଲେ। ଓଡ଼ିଆମାନଙ୍କର ତୁଣ୍ଡ ଯେ ଉପର୍ଯ୍ୟୁକ୍ତ ଗତର ବ୍ୟତିକ୍ରମ ନୁହେଁ, ତାହା ସେ ଅନୁଭବ କରିଛନ୍ତି ଏବଂ ଆପଣା

ଅଭିଧାନରେ ପ୍ରୟୋଗ କରିଛନ୍ତି । ମାତ୍ର ପଣ୍ଡିତ ତର୍କାଳଙ୍କାର, ପଣ୍ଡିତ ମୃତ୍ୟୁଞ୍ଜୟ ଏବଂ ଅନ୍ୟମାନେ ଏହି ନୂତନତାକୁ ଆଦୌ ଗ୍ରହଣ କରି ପାରିନାହାନ୍ତି । ପଣ୍ଡିତ ନନ୍ଦଙ୍କ ଯୁକ୍ତିକୁ କିନ୍ତୁ ବିଜ୍ଞାନ ସମ୍ମତ ବୋଲି ପ୍ରମାଣ କରିଛନ୍ତି ବାଙ୍କୀର ପଣ୍ଡିତ ଦୟାନିଧି ରଥ କାବ୍ୟତୀର୍ଥ, ପୁରୀର ପଣ୍ଡିତ ସୋମନାଥ ଶାସ୍ତ୍ରୀ, ମଦନ ମୋହନ ଦାସ ଏବଂ  ଦୀନବନ୍ଧୁ ରାୟଗୁରୁ ।[୬୦]

> ସେ କେଉଁ ଶବ୍ଦର ଉଚ୍ଚାରଣ ଗ୍ରାମ୍ୟ,କେଉଁ ଶବ୍ଦର ଉଚ୍ଚାରଣ ପ୍ରାଦେଶିକ,କେଉଁ ଉଚ୍ଚାରଣ ଆଦର୍ଶ,ତାହା କହିବାକୁ ଯାଇନାହାନ୍ତି। ଅନ୍ୟାନ୍ୟ ଅଭିଧାନକାର ମାନଙ୍କପରି ଉଚ୍ଚାରଣର କେତେଗୁଡ଼ିଏ କୃତ୍ରିମ ରାଜମାର୍ଗରେ ସେ ପାଠକମାନଙ୍କୁ ଝିଙ୍କିବାର ଉଦ୍ୟମ କରି ନାହାନ୍ତି। ସେ ଖାଲି ଆଲୋଚନାର ସବୁ ଦ୍ୱାର ଫିଟାଇ ଦେଇଛନ୍ତି, କିନ୍ତୁ ଦୁଃଖର କଥା, ଓଡ଼ିଶାର ସାହିତ୍ୟପ୍ରେମୀମାନେ କୃତ୍ରିମ ଆଦର୍ଶର ବନ୍ଧନରେ ଚିରକାଳ ବଦ୍ଧ ଥିବାରୁ ସେତେବେଳେ ନନ୍ଦଙ୍କର ଏ ନୂତନତ୍ୱ,ଏ ପୁରୋଦୃଷ୍ଟି, ଏ ସତ୍ସାହସ,ଏ ସାଧୁ ଉଦ୍ୟମ ବୁଝିପାରିନାହାନ୍ତି ।[୬୧]

ଏକଥା ପ୍ରତ୍ୟେକ ସ୍ୱୀକାରକରିବେ- ପଣ୍ଡିତ ନନ୍ଦ ଜଣେ ବ୍ୟାକରଣାକାର, ଶବ୍ଦସାଧକ। ଆପଣା କୋଷଗ୍ରନ୍ଥରେ ସଂକଳିତ ଶବ୍ଦଗୁଡ଼ିକର ଉତ୍ସ ନିରୂପଣ କାଳରେ ସେଗୁଡ଼ିକର ବୈୟାକରଣିକ ବ୍ୟାଖ୍ୟା କରିଛନ୍ତି। ଅନ୍ୱୟ ମାଧ୍ୟମରେ ତତ୍‌ସମ ଶବ୍ଦଗୁଡ଼ିକର ମୂଳ ଅର୍ଥ ସମ୍ପର୍କରେ ସୂଚନା ଦେଇଛନ୍ତି। ମାତ୍ର ଏହାର ଅର୍ଥ ନୁହେଁ ଯେ, ପଣ୍ଡିତଙ୍କ ଶବ୍ଦ ବ୍ୟବଚ୍ଛେଦ ବିଚାର ସମ୍ପୂର୍ଣ୍ଣ ଅପବାଦମୁକ୍ତ ଶବ୍ଦଗୁଡ଼ିକର ପ୍ରକୃତି ପ୍ରତ୍ୟୟ ନିରୂପଣ ସହିତ ଆବଶ୍ୟକ ସ୍ଥଳେ ବାଚ୍ୟ ନିର୍ଦ୍ଦେଶର ଯେ ଆବଶ୍ୟକତା ରହିଛି, ତାହା ସେ ଭେଦି ପାରିନାହାନ୍ତି। (ପୁରୁଷୋତ୍ତମ ତର୍କାଳଙ୍କାର,ଦୀପିକା:୧ ଜୁଲାଇ, ୧୯୧୬)ଏବଂ ସର୍ବଦା ଜୀବନ୍ତ ସରସତା ଫୁଟାଇ ପାରିନାହାନ୍ତି।[୬୨] ପ୍ରାକୃତ ଓ ଦେଶଜ ଶବ୍ଦ ସଂସ୍କୃତ ଭାଷାକୁ ଯେ ପରିପୁଷ୍ଟ କରିଥିବ, ଅନୁରୂପ ବିଚାର ତାଙ୍କୁ ଛୁଇଁପାରିନି। କେବଳ ସଂସ୍କୃତ ନୁହେଁ, ଓଡ଼ିଆ ଭାଷାର ବହୁ ଶବ୍ଦ ଯେ କରଜ କରା, ଅର୍ଥାତ୍ ଦ୍ରାବିଡ଼ ଭାଷା ଗୋଷ୍ଠୀ ଓ ଅନ୍ୟ ଭାଷା ସମ୍ଭୂତ,ଏହା ସେ ନିରୂପଣ କରି ପାରି ନାହାନ୍ତି। ହଁ, ତଦ୍‌ଭବ ଶବ୍ଦକୁ ସେ ଦେଶଜ ମଣିଛନ୍ତି ଏବଂ ଓଡ଼ିଆ ଶବ୍ଦରେ ଉପସର୍ଗ ପ୍ରୟୋଗ ବୈଚିତ୍ର୍ୟ ଦେଖାଇ ପାରି ନାହାନ୍ତି।[୬୩] ଅନେକ ସମୟରେ ପ୍ରଶ୍ନ ଉଠେ,ଏକ ଦ୍ରାବିଡ଼ ଭାଷା ଓ ସଂସ୍କୃତି ପ୍ରଭାବିତ ଅଞ୍ଚଳରେ ଜନ୍ମିତ ଓ ଶିକ୍ଷିତ ପଣ୍ଡିତ ନନ୍ଦ କଣ ଓଡ଼ିଆ ଭାଷା ସହିତ ଦ୍ରାବିଡ଼ ଭାଷା ଗୋଷ୍ଠୀର ସମ୍ପର୍କକୁ ଭେଦି ପାରି ନଥିଲେ ?

ଯାହା ମନେହୁଏ ଇଚ୍ଛାକୃତ ଭାବେ ସେ ଏହି ସମ୍ପର୍କକୁ ଏଡ଼େଇ ଯାଇଛନ୍ତି। ଓଡ଼ିଶାର ତତ୍କାଳୀନ ବାୟୁମଣ୍ଡଳରେ ଯେତେବେଳେ ଓଡ଼ିଆ ଭାଷାଭାଷୀ ଅଞ୍ଚଳ ଖଣ୍ଡଖଣ୍ଡ ହୋଇ ଦକ୍ଷିଣ ଓ ଉତ୍ତରର ଏକାଧିକ ଭାଷା କବଳିତ ହୋଇଥିଲା, ସେ ଅବସ୍ଥା ଯେ ଓଡ଼ିଆଙ୍କ ପକ୍ଷେ କି ଦୟନୀୟ ହୋଇଥିବ, ତାହା ସହଜରେ ଅନୁମେୟ। ଏପରି ଏକ ଘଡ଼ସନ୍ଧିରେ ବୌଦ୍ଧିକ ବଦାନ୍ୟତାର ଦ୍ୱାହି ଦେଇ ଓଡ଼ିଆ ଭାଷା ଉପରେ ଅନ୍ୟ କୌଣସି ଭାଷାର ପ୍ରଭାବ ପ୍ରତିଷ୍ଠିତ କରିବା ଓଡ଼ିଆ ଭାଷାପାଇଁ ଆତ୍ମଘାତୀ ସାବ୍ୟସ୍ତ ହେବ ବୋଲି ସେ ଅନୁଭବ କରିଛନ୍ତି ଏବଂ ଓଡ଼ିଆ ଭାଷାକୁ ଶୁଦ୍ଧ ସଂସ୍କୃତ ଭାଷାର ପରିଚ୍ଛେଦରେ ଘୋଡ଼ାଇ ଦେଇଛନ୍ତି ।[୬୪]

ଏଥିପାଇଁ ସମାଲୋଚିତ ବି ହୋଇଛନ୍ତି। ମାତ୍ର ବଙ୍ଗଳା, ହିନ୍ଦୀ, ଯାବନିକ, ଇଂରାଜୀ ଭାଷା-ସୃଷ୍ଟ ଓଡ଼ିଆ ଶବ୍ଦ ସଂକଳନର ଗୁରୁତ୍ୱକୁ ଏଡ଼େଇ ଦେଇପାରିନାହାନ୍ତି।

ପ୍ରତିପକ୍ଷ ପଣ୍ଡିତ ନନ୍ଦଙ୍କୁ ଆକ୍ରମଣ କରିବାର ଅନ୍ୟତମ କାରଣ, ଅଭିଧାନରେ ବୈଦେଶିକ ଓ ଗ୍ରାମ୍ୟ ଶବ୍ଦର ସଂଯୋଜନ। ପଣ୍ଡିତ ପୁରୁଷୋତ୍ତମଙ୍କ ଭାଷାରେ କୌଣସି ପ୍ରାଦେଶିକ ଭାଷାର ଗୁଡ଼ିଏ ଶବ୍ଦ ବସାଇ ଦେଲେ ଚଳିବ କି ? ଏପରି ଶବ୍ଦ ବସାଇଲେ ଆବର୍ଜନା ବ୍ୟତୀତ ଅନ୍ୟ କିଛି ନୁହେଁ । ଏକ ଜୀବନ୍ତ ଭାଷା ଯେ ବିଶ୍ୱମୁଖୀ, ତେଣୁ, ବିବର୍ତ୍ତନଶୀଳ-ଅନୁରୂପ ଭାବାଦର୍ଶକୁ ପଣ୍ଡିତମନସ୍କ କଟକୀମାନେ ତଥାପି ସମୁଝି ପାରିନାହାନ୍ତି। ପୁନଶ୍ଚ ଆପଣା ଭାଷାରେ ଅନୁଭବର ଅଭିବ୍ୟକ୍ତି ଯେ ଅଧିକ ମାର୍ମିକ ହୋଇପାରେ, ସମୂହକୁ ଆପଣାର କରିବାରେ ମହୌଷଧି ପରି କାର୍ଯ୍ୟ କରିଥାଏ- ହାତ ପାଖରେ ତାହାର ହଜାର ଉଦାହରଣ ରହିଥିଲେ ମଧ, ସେମାନେ ଗ୍ରହଣ-ପରାଙ୍ମୁଖ ହୋଇଛନ୍ତି। ଏବଂ, ଆହୁରି ମଜାର କଥା, ଏଥିରେ ବହୁ ଅପ୍ରଚଳିତ ଶବ୍ଦ ସ୍ଥାନିତହେବା ସହିତ ପ୍ରଚଳିତ ଶବ୍ଦଗୁଡ଼ିକୁ ଉପେକ୍ଷା କରାଯାଇଛି ବୋଲି ସେମାନେ ଅଭିଯୋଗ ଆଣିଛନ୍ତି। ପଣ୍ଡିତ ନନ୍ଦ ଓଡ଼ିଶାର ପ୍ରଥମ ଅଭିଧାନକାର, ଯିଏ ଏକ ଜୀବନ୍ତ ଓ ଗତିଶୀଳ ଭାଷାର ପ୍ରକାଶ ପ୍ରକ୍ରିୟାକୁ ଅନୁଭବ କରିଛନ୍ତି, ଏବଂ ବ୍ୟକ୍ତିଗତ ଉଦ୍ୟମରେ ଓଡ଼ିଆ ଶବ୍ଦଭଣ୍ଡାରର ପ୍ରାଚୁର୍ଯ୍ୟକୁ ଆକଳନ କରିଛନ୍ତି। ଶବ୍ଦ ପ୍ରଚଳିତ ଅଥବା ଅପ୍ରଚଳିତ ହେଉ, ସମସ୍ତ ଯେ ଜାତିର ସଂସ୍କୃତିର ପ୍ରତୀକ, ତେଣୁ ସେଗୁଡ଼ିକ ଅଭିଧାନରେ ସ୍ଥାନପାଇବା ଉଚିତ୍ ଏବଂ ପ୍ରତ୍ୟେକ ଶବ୍ଦକୋଷ ଯେ ଅସଂପୂର୍ଣ୍ଣ-ଏହି ବିଶେଷ ଆଦର୍ଶକୁ ନିଜର କରିଛନ୍ତି। ତେଣୁ ଅମୁକ ଅଞ୍ଚଳର ଭାଷା ଯେ ପ୍ରକୃତ ଓଡ଼ିଆ, ଏହି ଗ୍ରୀଅରସନୀୟ ସିଦ୍ଧାନ୍ତକୁ ସ୍ୱୀକାର କରିପାରିନାହାନ୍ତି । ଅନ୍ୟ ଶବ୍ଦରେ କହିଲେ, ଭାଷାକୁ ଅସ୍ତ୍ର କରି ରାଜନୀତି କରିନାହାନ୍ତି । ଅଭିଧାନ ଯେ ଭାଷାର ବେଦ ବା ବାଇବେଲ୍, ଅଶୁଦ୍ଧିକୁ ସ୍ଥାନିତ କରିବା ଅପରାଧ, ଅଧ୍ୟଯୁଗୀୟ ଶୁଦ୍ଧିବାଦୀ ଅଭିଧାନକାରମାନଙ୍କର ଅନୁରୂପ ଗୁମାନ ତାଙ୍କୁ ଅପ୍ରୀତିକର ବୋଧହୋଇଛି । ସେ ଗ୍ରହଣ କରିପାରି ନାହାନ୍ତି। ସେ ନିଜର କୌଣସି ମତ ବ୍ୟକ୍ତକରି ତାହା ଦୃଢ଼ ଭାବରେ ପୋଷଣ ଓ ପ୍ରଚାର କରିବାର ଉଦ୍ୟମ କରିନାହାନ୍ତି।[୬୫] ଛିଦ୍ରାନ୍ୱେଷୀ ଦଳ ମତ ବିଶେଷର ପ୍ରତିବାଦ ପରିବର୍ତ୍ତେ ପରିବାଦ କରିଛନ୍ତି, ଜଣେ ଅଣଓଡ଼ିଆ ପାଦ୍ରୀ 1 ଆମସ୍ ସଟନ୍ ଓଡ଼ିଆ ଭାଷାର ଯେଉଁ ଭିତ୍ତିଭୂମି ପ୍ରଦାନ କରିଥିଲେ, ପ୍ରାୟ ସତୁରୀ ବର୍ଷ ପରେ ପଣ୍ଡିତ ନନ୍ଦ ତାହକୁ ସୁଦୃଢ଼ କରିଛନ୍ତି।

ମୋର ଯାହା ଅବବୋଧ, ସମକାଳର ସମୀକ୍ଷକମାନେ ନନ୍ଦମହାଶୟଙ୍କ ଅଭିଧାନର ପ୍ରକୃତ ଦୁର୍ବଳତାକୁ ଭେଦିପାରିନାହାନ୍ତି। ଜଣେ ଦକ୍ଷିଣୀ ପଣ୍ଡିତଙ୍କ ବିଦ୍‌ବତ୍ତା ପ୍ରତି ଅସହିଷ୍ଣୁତା, ଗ୍ରନ୍ଥମୁଦ୍ରଣନିମିତ୍ତ ରାଜା, ମହାରାଜା ଓ ସରକାରୀ ଅନୁଦାନ, ସ୍କୁଲ୍ ସମୂହରେ ବିକ୍ରିପାଇଁ ସରକାରଙ୍କ ଘୋଷଣା, କେନ୍ଦ୍ର(କଟକ)ର ସାମନ୍ତ (ନବ୍ୟ ଶିକ୍ଷିତ ଓ ଅଭିଜାତ)ମାନଙ୍କ ଗାତ୍ରଦାହର କାରଣ ହୋଇଛି ଗ୍ରନ୍ଥର ଦୋଷ ଦର୍ଶନ ମାଧ୍ୟମରେ ସେମାନେ ଶାନ୍ତିଲାଭପାଇଁ ବ୍ୟାକୁଳ ହେଇଛନ୍ତି। ଏବଂ, ଏହି ବ୍ୟାକୁଳତାର ଅଭିବ୍ୟକ୍ତି ସମ୍ବାଦପତ୍ର ମାଧ୍ୟମରେ ମହାଶୟଙ୍କ କୁତ୍ସାରଟନା । ଗ୍ରନ୍ଥର ସବୁଠାରୁ ବଡ଼ ଦୁର୍ବଳତା, ଏହାର ବିପୁଳ କଳେବରରେ ସଂଯୋଜିତ ଶବ୍ଦସଂଖ୍ୟା ପ୍ରାୟ କୋଡ଼ିଏ ହଜାର।ଏହି ସଂଖ୍ୟାକୁ 'ମାତ୍ର'

କୁହାଯାଇପାରେ । ବହୁସଂଖ୍ୟକ ଲୋକମୁଖ କଥିତ ଓ ସାହିତ୍ୟରେ ବ୍ୟବହୃତ ଶବ୍ଦ ଏଥିରେ ଖୋଜିଲେ ମିଳେନାହିଁ। ପୁନଶ୍ଚ ଗ୍ରନ୍ଥକୁ ଯଥାଶୀଘ୍ର ଶେଷ କରିବା ଅଥବା ଅନ୍ୟ କୌଣସି କାରଣରୁ ହେଉ, ସେ ଅତ୍ୟନ୍ତ ତରବରିଆ ଭାବରେ ଏହାର ମୁଣ୍ଡି ମାରିଛନ୍ତି। ଓଡ଼ିଆ ବର୍ଣ୍ଣମାଳାର ଶେଷ ଛଅ /ସାତ ଗୋଟି ବର୍ଣ୍ଣାଦ୍ୟ ଶବ୍ଦର ସଂଖ୍ୟାକୁ ଲକ୍ଷ୍ୟକଲେ,ଯେ କୌଣସି ଶବ୍ଦପ୍ରେମୀ ତାହା ଅନୁଭବ କରିପାରିବ। ବୈୟାକରଣିକ ନନ୍ଦ ଅବଶ୍ୟ ଅଭିଧାନକାର ହୋଇଛନ୍ତି, ଶବ୍ଦର ବ୍ୟୁତ୍ପତ୍ତି ଓ ବ୍ୟବହାର ବିଧି ନିରୂପଣପାଇଁ ସାଧନା କରିଛନ୍ତି । ମାତ୍ର ଓଡ଼ିଆମାନଙ୍କ ପାଖରେ ସମାନଙ୍କ ଜାତୀୟ- ବିଭବ ବିପୁଳ ଶବ୍ଦଭଣ୍ଡାରକୁ ବିପଣୀସ୍ଥ କରିବାରେ କ୍ଷମ ହୋଇନାହାନ୍ତି ।

ଶବ୍ଦ ସାଧନ ବିଦ୍ୟାର ତାତ୍ତ୍ୱିକ ଆଲୋଚନା କାଳରେ ପଣ୍ଡିତ ନନ୍ଦଶର୍ମାଙ୍କୁ ବିଖ୍ୟାତ ଆମେରିକୀୟ ଅଭିଧାନକାର ନୋଆ ଓ୍ୱେବ୍‌ଷ୍ଟାରଙ୍କ ସହିତ ତୁଳନା ପ୍ରାସଙ୍ଗିକ ମନେହୁଏ । ଆମେ ଜାଣୁ - ଓ୍ୱେବ୍‌ଷ୍ଟର ଇଂରାଜୀ ଶବ୍ଦର ଉଚ୍ଚାରଣ ଓ ଲିଖନ ମଧ୍ୟରେ ଥିବା ଅସଂଗତିର କାରଣ ଅଧ୍ୟୟନ ଓ ସେ ସମସ୍ତ ଦୂରୀକରଣ ଉଦ୍ଦେଶ୍ୟରେ A Grammatical Institute of English Language ନାମକ ଅନୁଷ୍ଠାନ ଗଢ଼ିଥିଲେ । ସଂସ୍ଥା ଆନୁକୂଲ୍ୟରେ The American Speling (1783) ଏବଂ Dissertation on the English Language with Notes : Historical and Critical ଗ୍ରନ୍ଥ ପ୍ରକାଶ କରିଥିଲେ । ଏବଂ, ତାଙ୍କର ଅଭିଧାନ ଥିଲା ଧ୍ୱନିତତ୍ତ୍ୱ ଓ ବ୍ୟାକରଣତତ୍ତ୍ୱ ଆଧାରିତ ଏକ ଭିନ୍ନ ଆଦର୍ଶପୁଷ୍ଟ କୋଷଗ୍ରନ୍ଥ । ଇଂରେଜମାନେ ତାଙ୍କ ଅଭିଧାନ (୧୮୨୮)କୁ ଇଂରେଜ ଭାଷାର ଆମେରିକୀକରଣ ବୋଲି କହିଛନ୍ତି । ଆଜି ମଧ୍ୟ ସେହି ବିବାଦର ଅନ୍ତ ଘଟି ନାହିଁ ।୨୨ ମୁଁ ଜାଣିନି, ପଣ୍ଡିତ ନନ୍ଦ ଓ୍ୱେବ୍‌ଷ୍ଟରଙ୍କ ଅଭିଧାନ ଦେଖିଥିଲେ କି ନାହିଁ । ମାତ୍ର ଓ୍ୱେବ୍‌ଷ୍ଟରଙ୍କ ପରି, ନନ୍ଦ ମହାଶୟଙ୍କ ବିଚାର ଆଜି ମଧ୍ୟ ଓଡ଼ିଆମାନଙ୍କ ବିଚାରରେ ପ୍ରଶ୍ନବାଚୀ ହୋଇ ରହିଛି ।

ପଣ୍ଡିତ ଗୋପୀନାଥ ନନ୍ଦଙ୍କ ବ୍ୟକ୍ତିତ୍ୱ ଓ ପାଣ୍ଡିତ୍ୟର ମୂଲ୍ୟାୟନ କାଳରେ ସମକାଳୀନ ଜାତୀୟତାବାଦୀମାନେ ଓଡ଼ିଶାର ବାସ୍ତବ ଆହ୍ୱାନଗୁଡ଼ିକୁ ଭେଦିଛନ୍ତି ବୋଲି ସହଜରେ ଗ୍ରହଣ କରିହୁଏ ନାହିଁ । ତେଣୁ ଅଭିଧାନକୈନ୍ଦ୍ରିକ ସେମାନଙ୍କ ବିଚାରକୁ ଏକ କର୍ତ୍ତୃତ୍ୱବିସ୍ତାରୀ, ଅସହିଷ୍ଣୁ, ଅର୍ଥଲିପ୍ସୁ ଓ ଅବରୁଦ୍ଧ ମାନସିକତାର କୋଳାହଳ କହିପାରିବା । ଯେଉଁମାନେ ଏହି କୋଳାହଳ ଭିତରେ ସତ୍ୟକୁ ଅନୁଭବି ଥିଲେ ସେମାନଙ୍କ ମଧ୍ୟରେ ଗୋପୀନାଥ ଅନ୍ୟତମ ସହୃଦୟ । ପଣ୍ଡିତ ଗୋପବନ୍ଧୁ ଦାସଙ୍କ ଭାଷାରେ,-ସେମାନେ ନାମ, ଅର୍ଥ, ସ୍ତୁତି, ନିନ୍ଦା ପ୍ରତି ଅନାସକ୍ତ ଏବଂ ପୁରୋଦୃଷ୍ଟିସମ୍ପନ୍ନ । ଅନେକଙ୍କ ସ୍ୱାର୍ଥ ଯଜ୍ଞରେ କେବଳ ମେଧ ହେବାପାଇଁ ହିଁ ସେମାନଙ୍କ ଜନ୍ମ ।୨୭



## ନୋଟ୍ ଆକର ସୂଚୀ

୧. ଉତ୍କଳ ଦୀପିକା : ତା ୧ ଏପ୍ରିଲ୍ /୧୯୧୬ ।

୨. ଉତ୍କଳ ଦୀପିକା : ତା ୮ ଏପ୍ରିଲ୍ /୧୯୧୬ ।

୩. ଉତ୍କଳ ଦୀପିକା : ତା ୩ ଏପ୍ରିଲ୍ /୧୯୧୬ ।

୪. ଉତ୍କଳ ଦୀପିକା : ତା ୯ ଏପ୍ରିଲ୍/ ୧୯୧୬ ।

୫. ନନ୍ଦ କେବଳ ଜଣେ ବ୍ୟାକରଣକାର, ଅଭିଧାନତତ୍ତ୍ୱବିତ୍ ଓ ଭାଷାବିଜ୍ଞାନୀ ନୁହଁନ୍ତି; ସାହିତ୍ୟ-ସମାଲୋଚନା, କବିତା, ନାଟକ ଓ ଅନୁବାଦ ରଚନାରେ ତାଙ୍କର ସିଦ୍ଧି ରହିଛି । ଜାନକୀ ପରିଣୟ, ସୀତା ବନବାସ, ଉନ୍ମତ୍ତ ରାଘବ, ବିକ୍ରମୋର୍ବଶୀ, ଦ୍ରୌପଦୀ ବସ୍ତ୍ରହରଣ ଆଦି ନାଟକ; ମେଘଦୂତ, ଉଦ୍ଧବଦୂତ, ମହାଭାରତ, ରାମାୟଣ ଓ ଭାଗବତ ଗ୍ରନ୍ଥର ସମୀକ୍ଷକ ଭାବରେ ସେ ସୁପରିଚିତ । ଦାଣ୍ଡୀ ରାମାୟଣ ଓ ଭାଗବତ ସଂକ୍ରାନ୍ତ ଆଲୋଚନା ମୁକୁର ଓ ସତ୍ୟବାଦୀରେ ପ୍ରକାଶିତ ।

୬. ଶ୍ୟାମସୁନ୍ଦର ରାଜଗୁରୁ ଓଡ଼ିଆ ବିଭକ୍ତି, ଓଡ଼ିଆ ସର୍ବନାମ ଓ ଓଡ଼ିଆ ଅବ୍ୟୟ ଚର୍ଚ୍ଚା, ପ୍ରଥମେ ଆରମ୍ଭ କରିଛନ୍ତି । ଏବଂ, ପରବର୍ତ୍ତୀ କାଳରେ ଓଡ଼ିଆ କୃଦନ୍ତ, ତଦ୍ଧିତ, କ୍ରିୟା, ସର୍ବନାମ ଆଦିର ଉତ୍ସ ସନ୍ଧାନରେ ବ୍ରତୀ ହୋଇଛନ୍ତି ଶ୍ରୀଯୁକ୍ତ ନନ୍ଦ । ଉତ୍କଳ ସାହିତ୍ୟର ବିଭିନ୍ନ ସଂଖ୍ୟାରେ ଭାଷା ବିଷୟକ ଆଲୋଚନାମାନ ପ୍ରକାଶିତ ।

୭/୮. ଉତ୍କଳ ସାହିତ୍ୟରେ ପ୍ରକାଶିତ ବଡ଼ଖେମୁଣ୍ଡିର ପଦ୍ମନାଭ ନାରାୟଣ ଦେବଙ୍କ ପ୍ରହ୍ଲାଦ ନାଟକର ଭାଷା ସମ୍ପର୍କରେ ପ୍ରଦତ୍ତ ମନ୍ତବ୍ୟର ପ୍ରତିଆଲୋଚନାରେ ବିଶ୍ୱନାଥ କରଙ୍କର ମନ୍ତବ୍ୟ : ପ୍ରାଦେଶିକ ବ୍ୟବହାର ସମ୍ବନ୍ଧରେ ଆମେ ଏତିକି କହିପାରୁ ଯେ, ସବୁ ଭାଷାରେ ପ୍ରାଦେଶିକ ବ୍ୟବହାର ଅଛି ଏବଂ ପୁସ୍ତକମାନଙ୍କରେ ତାହାଯେତେ ଅଳ୍ପ ପରିମାଣରେ ବ୍ୟବହୃତ ହୁଏ, ସେତେ ଭଲ । ଦକ୍ଷିଣୀ ଓଡ଼ିଆ ଯେ ପ୍ରକୃତ ଓଡ଼ିଆ ନୁହେଁ, ତାହା ଆଉ କାହାକୁ କହିବାକୁ ହେବ ନାହିଁ । ଏହି ମନ୍ତବ୍ୟରେ ଉତ୍ତରରେ ରାଜଗୁରୁ ଲେଖିଛନ୍ତି- "ଅମୁକ ଭାଷା ଦୋଷ ସଂଲଗ୍ନ, ଅମୁକ ଭାଷା ଦୋଷରହିତ, ଏହା ଜାଣିବା ସକାଶେ ଆପଣମାନେ କି ନିୟମ କରିଛନ୍ତି ? ନା ଆପଣ ମନେ କରିଛନ୍ତି, କଟକ ଓଡ଼ିଆ ମାତ୍ର ବିଶୁଦ୍ଧ ଓଡ଼ିଆ ଓ ଅନ୍ୟ ଅଂଚଳର ଓଡ଼ିଆ ଓଡ଼ିଆ ନୁହେଁ ? ଯଦି ଆପଣ କଟକ ଓଡ଼ିଆକୁ ଆଦର୍ଶମାନେ କରି ଦକ୍ଷିଣ ଓଡ଼ିଆକୁ ଦୋଷ ତଳେ ଗଣନା କରିଅଛନ୍ତି, ତେବେ ଏହା ଭ୍ରମ ।" ଉତ୍କଳ ଦୀପିକା; ୧୬ ଏପ୍ରିଲ୍ ୧୯୦୨ ।

୯. ଏବଂ, ଆମ୍ଭେମାନେ ଯାହାକୁ ଭାଷା କହୁ, ତାହା କୃତ୍ରିମ ଭାଷା ବାଲି ବୋଲିବାକୁ ହେବ । ଭାଷାର ପ୍ରକୃତ ପ୍ରାଣ କେବଳ ପ୍ରାଦେଶିକତାରେ । ଉତ୍କଳ ଦୀପିକା ; ୨ ଅଗଷ୍ଟ /୧୯୦୨ ।

୧୦. ୧୧/୧୨/୧୩/୧୪, ଉଦ୍ଧୃତାଂଶ ଉତ୍କଳ ସାହିତ୍ୟର ଷଷ୍ଠ ଭାଗ, ୮ମ ସଂଖ୍ୟା, ୯ମ ଭାଗ/ ୫ମ, ୬ଷ୍ଠ, ୯ମ, ୧୨ଶ ସଂଖ୍ୟାରେ ପତ୍ର ଆକାରରେ ପ୍ରକାଶିତ । ପରବର୍ତ୍ତୀ କାଳରେ ପ୍ରବନ୍ଧାବଳୀ

ପୁସ୍ତକରେ ସଂଯୋଜିତ (ରାଜଗୁରୁ ଶ୍ୟାମସୁନ୍ଦର, ୧୯୬୪, ପ୍ରବନ୍ଧାବଳୀ, ଓଡ଼ିଶା ସାହିତ୍ୟ ଏକାଡେମି, ଭୁବନେଶ୍ୱର, ପୃ.୧୫୫-୧୬୯ ଦ୍ରଷ୍ଟବ୍ୟ) ।

୧୫. ଶିକ୍ଷାବନ୍ଧୁ (୧୮୮୬) : ଦ୍ୱିତୀୟ ଭାଗ, ସପ୍ତମ ସଂଖ୍ୟା, ପୃ.୪୬ ।

୧୬. ଉତ୍କଳ ଦୀପିକା ; ୪ ନଭେମ୍ବର /୧୯୮୮ ।

୧୭. ବାଲେଶ୍ୱର ସମ୍ବାଦ ବାହିକା : ୨୭ ଜୁନ୍/ ୧୮୭୮ ।

୧୮. ଓଡ଼ିଆ ଓ ନବସମ୍ବାଦ : ୪ ଏପ୍ରିଲ୍/୯/ ମଇ/୧୫, ଅଗଷ୍ଟ ୧୮୮୮ ।

୧୯. ବାହିକା, ଦୀପିକା ଏବଂ ଓଡ଼ିଆ ଓ ନବସମ୍ବାଦର ସମ୍ପାଦକମାନେ ପରସ୍ପର ସହିତ କିପରି ଝଗଡୁଥିଲେ, ନିମ୍ନୋକ୍ତ ଉକ୍ତି ଗୁଡ଼ିକରେ ତାହା ତାହା ସୁସ୍ପଷ୍ଟ ।

ସମ୍ବାଦ ବାହିକା : (କ) ଓଡ଼ିଶାର କାଂଶବାଂଶ ନଦୀର ଉତ୍ତର ପାଖର ଭାଷା ବିଶୁଦ୍ଧ ନୁହେଁ । xx ସେମାନେ ଗୋଡ଼କୁ ଗୁଡ଼, ଗୋରୁକୁ ଗୁରୁ, ଯାଉଛି ଯାଉଚି କହନ୍ତି । ପକ୍ଷାନ୍ତରେ ଏହାକୁ ଆମେ ବଡ଼ ଦୋଷ ବୋଲି କହିନପାରୁ । କାରଣ ଏହିକି ଯେ, ଗାର୍ହ୍ୟସ୍ଥ ଭାଷାରେ ସ୍ଥଳ ବିଶେଷରେ କିଛି କିଛି ଦୋଷ ଦେଖାଯାଏ । ଯଥା, କଟକ ଅଞ୍ଚଳରେ ହେଇତି, ଆ ତ, ଦୁଚି; ବାଲେଶ୍ୱର ଅଞ୍ଚଳରେ ହେଇ, ଦୁଶୁଚି । ବଡ଼ ଆନନ୍ଦର ବିଷୟରେ, ଏ ପ୍ରକାର ଦୂଷିତଭାଷା ଶିକ୍ଷିତ ଲୋକଙ୍କ ମୁଖରୁ ବାହାରେ ନାହିଁ । xx ବାଲେଶ୍ୱର ସୁନାହଟ ଅଞ୍ଚଳର ଭାଷାକୁ ସଂକର କହିବା ସହିତ ନବଜାତ ଖେଚଡ଼ା କହିବା । (ବା.ସ.ବା.; ୧୬ ମାର୍ଚ୍ଚ /୧୮୮୧)

(ଖ) ବାହିକାର ସମ୍ପାଦକ ମଧ କାଳୀପଦ ବନ୍ଦ୍ୟୋପାଧାୟଙ୍କ ବହି ସରଳ ଶିକ୍ଷାର ସମୀକ୍ଷା କାଳରେ ରାଧାନାଥ, ରାୟ ଏବଂ ଉମାପଦ ଦେଙ୍କ ଭାଷାର ତୀବ୍ର ସମାଲୋଚନା କରିଛନ୍ତି । (ବା.ସ.ବା,; ୧୯ ମଇ ୧୮୮୧)

(ଗ) ଓଡ଼ିଶାରେ ସମ୍ବାଦପତ୍ରମାନଙ୍କର ଦୂରବସ୍ଥା କାହିଁକି ଶୀର୍ଷକ ଆଲୋଚନାରେ ଉଲ୍ଲେଖ କରାଯାଇଛି, ଆଉ ଏକ ଶ୍ରେଣୀର ପାଠକ ଅଛନ୍ତି, ସେମାନେ ସାଧୁଭାଷା ଅଥବା କେହି ଇଂରେଜୀ ଶବ୍ଦ ମିଶ୍ରିତ ଭାଷାକୁ ପସନ୍ଦ କରନ୍ତି । ପତ୍ରିକାର ଭାବ ଓ ଭାଷା ଯାହାହେଉ ପଛକେ, ଗୋଟା କେତେ ସଂସ୍କୃତ ଓ ଇଂରାଜୀ ଶବ୍ଦ ଥିଲେ ହେଲା । ଆମ୍ଭେମାନେ ଏଭଳି ପାଠକକୁ ବେୟାରିଂ (ନିକ ଓଡ଼ିଆ) ପାଠକ ବୋଲି ନିର୍ଦ୍ଦେଶ କରୁ ଏବଂସେମାନଙ୍କ ରୁଚିକୁ ପସନ୍ଦ କରୁନା । (ବା.ସ.ବା.; ୧, ସେପ୍ଟେମ୍ବର ୧୮୮୧)

(ଘ) ଓଡ଼ିଆ ଭାଷା ଶୀର୍ଷକ ଆଲୋଚନା ପ୍ରସଙ୍ଗରେ ଉଲ୍ଲେଖ ରହିଛି : "ଓଡ଼ିଆ ଭାଷା କ୍ରମେ ଲାୱାରିସ୍ ହୋଇ ଯାଉଅଛି । ଏତେବେଳେ ଓଡ଼ିଆ ଭାଷାର ମାବାପା ନାହିଁ । ଯାହା ମନକୁ ଯାହା ଆସୁଅଛି, ସେ ତାହା ଲେଖି ଚାଲିଯାଉଅଛି । ଏହାଛଡ଼ା ଓଡ଼ିଶାର ବିଦ୍ୟାଳୟର ଶିକ୍ଷକମାନଙ୍କଠାରୁ ଭାଷାର ଉନ୍ନତି ବିଷୟରେ ଯେ କଥା ଆଶା କରିଥିଲୁ, ସେ ଆଶା ମଧ ସଫଳ ହୋଇପାରୁ ନାହିଁ । ଆଜିକାଲି ଓଡ଼ିଶାରେ ଗ୍ରନ୍ଥକାରଙ୍କ ଅଭାବ ନାହିଁ, କିନ୍ତୁ ସେମାନଙ୍କ ମଧ୍ୟରୁ ଅଧିକାଂଶ ଗ୍ରନ୍ଥକାର ଓଡ଼ିୟା ଭାଷା ଇଡ଼ିଅମ୍ ଜାଣୁ ନଥିବାରୁ ବିଦେଶୀ ଭାଷାର ଇଡ଼ିଅମ୍ ଓଡ଼ିୟା ଭାଷା ମଧ୍ୟରେ ଜବରଦସ୍ତୀ

ପଶି ଯାଉଅଛି । xx ଓଡ଼ିୟା ଭାଷାର ଅଧିକାଂଶ ପୁସ୍ତକ ଅନୁବାଦିତ (ଆମ୍ଭେମାନେ ଅନୁବାଦର ବିରୋଧ କରୁ ନାହୁଁ), କିନ୍ତୁ ଅନୁବାଦ କରି ନ ଜାଣିବା ଦୋଷରୁ ଓଡ଼ିୟା ପୁସ୍ତକମାନଙ୍କର ଭାଷା ମନ୍ଦ ହେଉଅଛି ।" (ବା.ସ.ବା., ୧୩ମାର୍ଚ୍ଚ/୧୭ ଅପ୍ରେଲ୍/ ୧ମଇ, ୧୮୮୪) ଓଡ଼ିଆ ଭାଷାର ଏହି ଅଧୋଗତି ପାଇଁ ଗୋବିନ୍ଦ ପଟ୍ଟନାୟକ ଶିକ୍ଷକ ଓ ଶିକ୍ଷିତ ଗୋଷ୍ଠୀକୁ ଦାୟୀ କରିଛନ୍ତି । ପାଠ୍ୟପୁସ୍ତକ ନିର୍ବାଚନ କମିଟିକୁ ନିଜର କର୍ତ୍ତୃତ୍ୱରେ ନିୟନ୍ତ୍ରଣ କରୁଥିବା ରାଧାନାଥ ଓ ବୈକୁଣ୍ଠନାଥ ଦେ ତାଙ୍କ ରୋଷର ଶିକାର ହୋଇଛନ୍ତି । କବିତାବଳୀ (ରାଧାନାଥ ଓ ମଧୁସୂଦନ) ସମ୍ପର୍କରେ ସେ କବିତାବଳୀ ସମୀକ୍ଷାରେ ଲେଖିଛନ୍ତି "ଓଡ଼ିଆ ପଦ୍ୟର ଇଡ଼ିଅମ୍ ବରଂ ନଥାଉ ଓ ଅନେକ ସ୍ଥଳରେ ପିଲାମାନଙ୍କ ପକ୍ଷରେ ଭାବ ଓ ଭାଷା ବିଶଦ ହୋଇ ନଥାଉ ପଛକେ, ତାହା ଆଉ ୯ବର୍ଷ କାହିଁକି, ଅନନ୍ତ କାଳ ପର୍ଯ୍ୟନ୍ତ ଓଡ଼ିଶାରେ ଶିକ୍ଷା ବିଭାଗର ଆକାଶରେ ପାହାନ୍ତିଆ ତାରା ପରି ଝଟକୁଥିବ ।" (ବା.ସ.ବା., ୮ମଇ ୧୮୮୪), "ଓଡ଼ିଶ୍ୟାର ଶିକ୍ଷା ବିଭାଗର କର୍ମଚାରୀଙ୍କ ସଂଖ୍ୟାରୁ ଓଡ଼ିଆ ପୁଅଙ୍କ ସଂଖ୍ୟା କ୍ରମେ ଜଣା ହେଉଅଛି । ଦେଶୀୟ ବଙ୍ଗାଳୀଙ୍କ ସଂଖ୍ୟା ଅଧିକ । ଯେଉଁମାନେ ଓଡ଼ିଆ ଭାଷା ନ ଜାଣନ୍ତି, ସେମାନେ ନିଯୁକ୍ତି ପାଉଥିବାରୁ ଓଡ଼ିଆ ଭାଷାର ଏପରି ଅବସ୍ଥା ହେଉଅଛି ।" (ବା.ସ.ବା., ୨୨ମଇ ୧୮୮୪), "ଦୂଷିତ ଭାଷାଯୁକ୍ତ ପୁସ୍ତକ xx ଦେଙ୍କ ପ୍ରେସ୍‌ରୁ ପ୍ରଚାରିତ ହେଉଅଛି ଓ ଶିକ୍ଷାବିଭାଗର କର୍ମଚାରୀମାନେ ସେମାନେ ଚଳାଇ ନେଉଅଛନ୍ତି । xx ରାଧାନାଥ ଦେଙ୍କ ପ୍ରେସ୍‌ର କେନ୍ଦ୍ରୀ xx ଶିକ୍ଷାବିଭାଗର କର୍ମଚାରୀମାନଙ୍କର ଲୀଳାରଙ୍ଗ ଦେଖି ଭଲ ଭଲ ଲେଖକମାନେ ହାତବାନ୍ଧି ବସିଲେଣି ।" (ବା.ସ.ବା.,୧୭ଜୁଲାଇ୧୮୮୪) । ଏପରିକି ରାଧାନାଥ ରାୟ ବହିଲେଖି ଅନ୍ୟମାନଙ୍କ ନାଆଁରେ ଛପାଉଛନ୍ତି,'' ବୋଲି ଗୁରୁତର ଅଭିଯୋଗ ବାଢ଼ିଛନ୍ତି । (୩୧ ଜୁଲାଇ, ୧୮୮୪) ଏବଂ, କଟକର ଗୌରୀଶଙ୍କର ମଧ ଶିକ୍ଷା ବିଭାଗର ଏହି ଅପକର୍ମ ବିରୋଧରେ ବାରମ୍ବାର ଅଙ୍ଗୁଳି ନିର୍ଦ୍ଦେଶ କରିଛନ୍ତି । ବିଶେଷତଃ ବ୍ରାହ୍ମମାନଙ୍କର କୃତ୍ରିମ ଗଦ୍ୟଶୈଳୀକୁ ଆଦୌ ସ୍ୱୀକାର କରିପାରିନାହାନ୍ତି ।

(ଙ) ବାଲେଶ୍ୱରରୁ ପ୍ରକାଶିତ ଓଡ଼ିଆ ଓ ନବସମ୍ବାଦ ଓଡ଼ିଆ ଭାଷା ଶୀର୍ଷକ ଆଲୋଚନାରେ ଓଡ଼ିଆତ୍ୱ ଖୋଜିଛି । (ଓ.ଓ. ନ., ୪ ଏପ୍ରିଲ୍; ୧୧ ଏପ୍ରିଲ;୧୫ ମଇ/ ୧୮୮୮) ।

(ଚ) ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ପ୍ରସଙ୍ଗ, ୧୮୮୫ ମସିହାର ସମ୍ବଲପୁରର କୋର୍ଟ କଚେରୀ ଓ ଶିକ୍ଷା ବିଭାଗରେ ଓଡ଼ିଆ ଭାଷା ପରିବର୍ତ୍ତେ ହିନ୍ଦୀ ଭାଷା ପ୍ରବର୍ତ୍ତନର ବିରାଧ କରୁଥିବା, ସମ୍ବଲପୁର ହିତୈଷିଣୀର ସମ୍ପାଦକ ନୀଳମଣି ବିଦ୍ୟାରତ୍ନ, ଏହି ଅଞ୍ଚଳର ଲୋକମୁଖର କଥିତ ଭାଷା ପ୍ରତି ଅତ୍ୟନ୍ତ କଟୁ ମନ୍ତବ୍ୟ ପ୍ରକାଶ କରିଛନ୍ତି । ଏକ ଗୀତର ଉଦାହରଣ ଦେଇ ସେ କହିଛନ୍ତି, ସମ୍ବଲପୁର ବିଭାଗର ମାତୃଭାଷା ଓଡ଼ିଆ ହେଲେ ହେଁ ତାହା ନିତାନ୍ତ କଦର୍ଯ୍ୟ ଦଶାପନ୍ନ । ବର୍ତ୍ତମାନ ଭଦ୍ର ସମାଜର ଭାଷା କିଞ୍ଚିତ ଉନ୍ନତି ଲାଭ କରିଅଛି । ମାତ୍ର ନିମ୍ନ ଶ୍ରେଣୀର ଲୋକଙ୍କର ଭାଷା ପ୍ରାୟ ପୂର୍ବପରି କଦର୍ଯ୍ୟ । (ସମ୍ବଲପୁର ହିତୈଷିଣୀ,୨୩ ନଭେମ୍ବର, ୧୮୯୧) ଏବଂ ନରପତିମାନେ ସମ୍ବଲପୁରର ମାତୃଭାଷା ବିଶୁଦ୍ଧ ହେବାପାଇଁ ଯତ୍ନଶୀଳ ହେବା ଉଚିତ ବୋଲି ମତ ପ୍ରକାଶ ପାଇଛି । (ସମ୍ବଲପୁର ହିତୈଷିଣୀ ୧୮୯୪) ।

୧୦. ଉତ୍କଳ ଦୀପିକା : ଗୌରୀଶଙ୍କର ରାୟ ବାଲେଶ୍ୱର, ସମ୍ବଲପୁର ଓ ଗଞ୍ଜାମ ଅଞ୍ଚଳର କଥିତ ଭାଷାକୁ ସାହିତ୍ୟ-ଭାଷାର ମର୍ଯ୍ୟାଦା ଦେବାଲାଗି ବିରୋଧ କରି ଆସିଛନ୍ତି । ଉତ୍କଳ ଦର୍ପଣ ବାଲେଶ୍ୱରରୁ ପ୍ରକାଶିତ ସମ୍ବାଦପତ୍ରର ପ୍ରକାଶନ ପରିପ୍ରେକ୍ଷୀରେ ଓଡ଼ିଶାର ସମ୍ବାଦପତ୍ର ଶୀର୍ଷକ ଆଲୋଚନାରେ ସେ ଉଲ୍ଲେଖ କରିଛନ୍ତି, (କ) ମାସିକ ପତ୍ରିକା ଖଣ୍ଡିଏ ରହିବା ଅବଶ୍ୟ ଉଚିତ, xx ମାତ୍ର ଯେଉଁଠାରେ ଗ୍ରାହକ ନାହାନ୍ତି, ସେଠାରେ କି ପ୍ରକାର ଉପକାର ହେବ ? ପାଠକବର୍ଗଙ୍କ ସଂଖ୍ୟା ଅଧିକ ନହେଲେ କୌଣସି ଉପକାର ହେବନାହିଁ । xx ଏକେତ ଏ ପ୍ରଦେଶ ଅତି କ୍ଷୁଦ୍ର, ଦ୍ୱିତୀୟେ ବିଦ୍ୱାନ ଓ ସଭ୍ୟଲୋକଙ୍କ ସଂଖ୍ୟା ଅତି ଅଳ୍ପ । ତୃତୀୟରେ ଅଧିକାଂଶ ଲୋକ ଧନହୀନ, ଚତୁର୍ଥରେ ଗମନାଗମନର ଅସୁଯୋଗର ଦାୟୀ କରିଛନ୍ତି । ( ଉ.ଦୀ.୨୩ ଜାନୁଆରୀ, ୨୨ ମଇ, ୧୮୭୫)

(ଖ) ଦେଶୀୟ ସମ୍ବାଦପତ୍ର; ଓଡ଼ିଶାରେ ତିନିଖଣ୍ଡି । କଟକର ସମ୍ବାଦ ପତ୍ର ରାଜଭକ୍ତ ଓ ଉତ୍ତମ ରୂପେ ଚାଳିତ ହେବା କଥିତ । ବାଲେଶ୍ୱର ଅପେକ୍ଷାକୃତ ନିକୃଷ୍ଟ ଏବଂ କୌଣସି ସାଧାରଣ କର୍ତ୍ତୃଦ୍ଧି କରଇ ନାହିଁ । ( ଉ.ଦୀ. ୨ ନଭେମ୍ବର, ୧୮୭୮)

(ଗ) ଯେଉଁଠାରେ ଖଣ୍ଡିଏ ସମ୍ବାଦପତ୍ରର ଜୀବନଧାରଣ କଷ୍ଟ, ସେଠାରେ ଦୁଇ ତିନୋଟି କିପରି ଚାଲିବ ? ( ଉ.ଦୀ., ୩୧ ମାର୍ଚ୍ଚ, ୧୮୮୮)

୨୧. ଉତ୍କଳ ସାହିତ୍ୟରେ ପ୍ରକାଶିତ ଲେଖକମାନଙ୍କର ତାଲିକା ତିଆରି କାଳରେ ଫକୀରମୋହନ ସେନାପତି ଅନ୍ୟତମ ପ୍ରମୁଖ ସ୍ରଷ୍ଟାର ମାନ୍ୟତା ପାଇଛନ୍ତି । ଛ'ମାଣ ଆଠଗୁଣ୍ଠ ଓ ରେବତୀ ଏହି ପତ୍ରିକାରେ ହିଁ ପ୍ରକାଶ ପାଇଛି । ମାତ୍ର କୌଣସି କାରଣରୁ ୧୯୦୫ ମସିହା ପରେ ସେନାପତିଙ୍କ ଲେଖା ୧୯୧୨-୧୩ ମସିହା ପର୍ଯ୍ୟନ୍ତ ଏଥିରେ ପ୍ରକାଶ ପାଇନାହିଁ । ତେଣୁ ସୁରେନ୍ଦ୍ର ମହାନ୍ତି ଉତ୍କଳ ସାହିତ୍ୟ ପତ୍ରିକାକୁ ଫକୀରମୋହନଙ୍କ ସୃଜନପ୍ରତିଭାର ମୁଖପତ୍ର ବୋଲି ଦେଇଥିବା ମନ୍ତବ୍ୟ ତଥାଶ୍ରୟୀ ନୁହେଁ ।

୨୨. ଉତ୍କଳ ସାହିତ୍ୟ ; ଷଷ୍ଠ ସଂଖ୍ୟା, ୧୯୦୬-୭ ।

୨୩. ବଳ, ନନ୍ଦ କିଶୋର : ପ୍ରାପ୍ତି ସ୍ୱୀକାରପତ୍ର, ଉ.ସା. ଚତୁର୍ଥ ଭାଗ, ୬ଷ୍ଠ ସଂଖ୍ୟା ।

୨୪, ତତ୍ରୈବ ।

୨୫. ବଳ, ନନ୍ଦକିଶୋର : କବି ରାଧାନାଥ ଓ ତଦୀୟ କବିତା, ଉତ୍କଳ ସାହିତ୍ୟ ଷଷ୍ଠ ଭାଗ/ଦଶମ ସଂଖ୍ୟା ।

୨୬. ବଳ, ନନ୍ଦକିଶୋର : ଉତ୍କଳ ସାହିତ୍ୟ, ୧୭ଶ ଭାଗ, ଦଶମ ସଂଖ୍ୟା ।

୨୭. ଉତ୍କଳ ଦୀପିକା : ୨୧ ଡିସେମ୍ବର, ୧୯୦୧ ।

୨୮. ପ୍ରହରାଜ, ଗୋପାଳଚନ୍ଦ୍ର : ଦୁଇଖଣ୍ଡ ଓଡ଼ିଆ ପୁସ୍ତକ, ଉତ୍କଳ ସାହିତ୍ୟ, ୬ଷ୍ଠଭାଗ, ତୃତୀୟ ସଂଖ୍ୟା, ପୃ.୧୩୦-୧୩୫ ।

୨୯. ରଥ, ପଣ୍ଡିତ ମୃତ୍ୟୁଞ୍ଜୟ ; ସମକାଳର ଜଣେ କବି, ଅନୁବାଦକ ଓ ପ୍ରାବନ୍ଧିକ । ବିଶେଷତଃ, ତାଙ୍କ ଭାଷାତାତ୍ତ୍ୱିକ ଆଲୋଚନାଗୁଡ଼ିକ ଓଡ଼ିଆ ଭାଷାର ବୈଶିଷ୍ଟ୍ୟ- ନିରୂପଣକୈନ୍ଦ୍ରିକ । ଭାଷାରହସ୍ୟ

ପ୍ରବନ୍ଧରେ ସେ ଧର୍ମବିପ୍ଳବ, ଇତିହାସ, ରାଜନୀତି, ସଂସ୍କୃତି ଓ ଭୌଗୋଳିକ ଅବସ୍ଥିତି କିପରି କୌଣସି ଜନସମୁଦାୟର ଭାଷା ପରିବର୍ତ୍ତନର କାରଣ ହୋଇଥାଏ, ତତ୍‌ସଂକ୍ରାନ୍ତରେ ବିଶଦ ଆଲୋଚନା କରିଛନ୍ତି । ତାଙ୍କ ଉକ୍ତି, ବ୍ୟାକରଣର କଠୋର ଅନୁଶାସନ ହିନ୍ଦୁ ସମାଜର ଦୃଢ଼ତାର ପରିଚୟ ଦେଉଛି । ବାଣିଜ୍ୟର ଚଞ୍ଚଳତା, ଶିକ୍ଷାହୀନତା ଏବଂ ରାଷ୍ଟ୍ର ବିପ୍ଳବର ସଂଘର୍ଷଣ ଦ୍ୱାରା ଭାଷାର ମଧ କ୍ଷୟ ଏବଂ ଅପଭ୍ରଂଶ ହେଉଛି ଗୁରୁତ୍ୱପୂର୍ଣ୍ଣ । ମୃତ୍ୟୁଞ୍ଜୟ ଗ୍ରନ୍ଥାବଳୀ, କଟକ ଷ୍ଟୁଡ଼େଣ୍ଟସ୍ ଷ୍ଟୋର୍ସ, ପୃ. ୪୮୪ । ଏତଦ୍‌ବ୍ୟତୀତ ମୂଳଶବ୍ଦବୋଧିକା (୧୯୦୧) ନାମରେ ସେ ଏକ ଅଭିଧାନ ମଧ୍ୟ ସଂକଳନ କରିଛନ୍ତି । ଓଡ଼ିଆ ଭାଷାରେ ଏହା ବିଦ୍ୟୁତ୍ପତ୍ତିମୂଳକ ଅଭିଧାନ ।

୩୦. ଆଶା : ୧ମ ବର୍ଷ/୨୩ତମ ସଂଖ୍ୟା, ୧୬ ଫେବୃଆରି, ୧୯୧୪ ।

୩୧. ଲିପି ସଂସ୍କାରର ପ୍ରଥମ ବିରୋଧ କରିଛନ୍ତି ଗୌରୀଶଙ୍କର ରାୟ । ଦ୍ରଷ୍ଟବ୍ୟ, ଉ.ଦୀ.୨୮ ଫେବୃଆରି, ୧୧ ଏପ୍ରିଲ୍, ୧୯୧୪ ।

୩୨. ନୀଳକଣ୍ଠ ଦାସ ଏକ ପତ୍ରରେ ଲିପିସଂସ୍କାର ବିଚାର ସହିତ ତାଙ୍କର କୌଣସି ସଂପର୍କ ନାହିଁ (ଉ.ଦୀ.୨ ମଇ, ୧୯୧୪) ବୋଲି ସ୍ପଷ୍ଟତଃ ପ୍ରକାଶ କରିଥିଲେ ସୁଦ୍ଧା ଓଡ଼ିଶାର ଗବେଷକମାନେ ତାଙ୍କୁ ଏହି ଆନ୍ଦୋଳନର ସୂତ୍ରଧାର ବୋଲି ଉଲ୍ଲେଖ କରିଛନ୍ତି । ଏହି ପ୍ରସଙ୍ଗରେ ନୀଳକଣ୍ଠଙ୍କୁ ସୁବିଧାବାଦୀ ମାନସିକତାର ପ୍ରତୀକ ଏବଂ ଏହି ସିଦ୍ଧାନ୍ତର ପୋଷକମାନଙ୍କୁ ଭ୍ରମ କୁହାଯାଇପାରେ ।

୩୩. ଉତ୍କଳ ସାହିତ୍ୟ ସମାଜର ଦ୍ୱିତୀୟ ବାର୍ଷିକ ବିବରଣୀ : ଉତ୍କଳ ସାହିତ୍ୟ, ୮ମ ଭାଗ, ୧୦ମ ସଂଖ୍ୟା, ପୃ. ୨୮୪-୨୯୦ ।

୩୪. ଉତ୍କଳ ସାହିତ୍ୟ, ସମାଜର ତୃତୀୟ ବାର୍ଷିକ ବିବରଣୀ : ଉତ୍କଳ ସାହିତ୍ୟ ୯ମଭାଗ, ୧୨ଶ ସଂଖ୍ୟା, ପୃ. ୩୩୦-୩୧ ।

୩୫. ଉତ୍କଳ ଦୀପିକା, ୨୦ ଅପ୍ରେଲ୍, ୧୯୧୬ ।

୩୬. ନିଜ ନାମରେ ଛାତ୍ର ଉପଯୋଗୀ ଏକ ଅଭିଧାନ ପ୍ରକାଶନର ଉଦ୍ଦେଶ୍ୟ ରଖି ମଧୁସୂଦନ ରାଓ, ପଣ୍ଡିତ ନନ୍ଦଶର୍ମାଙ୍କ ଅଭିଧାନ ମୁଦ୍ରଣକୁ ବିଳମ୍ବିତ କରାଇଥିବା ଅନୁମାନକୁ ଏଠାରେ ଅମୂଳକ କୁହାଯାଇ ନପାରେ । ଏହା କେନ୍ଦ୍ରର କର୍ତ୍ତୃତ୍ୱବିସ୍ତାରୀ ପ୍ରବୃତ୍ତିର ହିଁ ସୂଚକ ।

୩୭. ନନ୍ଦ, ଗୋପୀନାଥ : ଶବ୍ଦତତ୍ତ୍ୱବୋଧ ଅଭିଧାନର ମୁଖବନ୍ଧ ଦ୍ରଷ୍ଟବ୍ୟ ।

୩୮. ଉତ୍କଳ ଦୀପିକା : ୨୨ ଅପ୍ରେଲ୍/ ୧୯୧୬ । ଦୀପିକାରେ ପ୍ରକାଶିତ ଏହି ମନ୍ତବ୍ୟକୁ ଜଣେ ବୟସ୍କଙ୍କ ବିଜ୍ଞ-ଚତୁରତା କୁହାଯାଇପାରେ ।

୩୯. ଆଶା : ୧ମଇ, ୧୯୧୬ ।

୪୦. ଆଶା : ୧୬ମଇ, ୧୯୧୬ ।

୪୧. ଉତ୍କଳ ଦୀପିକା, ୨୯ ଅପ୍ରେଲ୍, ୧୯୧୬ ।

୪୨. ଉତ୍କଳ ଦୀପିକା, ୨୦ ମଇ, ୧୯୧୬ ।

୪୩. ଓଡ଼ିଆ ଓ ନବସମ୍ବାଦ : ୨୮ ଜୁନ୍ ୧୯୧୬ ।

୪୪. ଆଶା : ୩୧ ଅଗଷ୍ଟ, ୧୯୧୬ ।
୪୫. ଆଶା : ୫ ଜୁନ୍, ୧୯୧୬ ।
୪୬. ଉତ୍କଳ ଦୀପିକା, ୮ ଅଗଷ୍ଟ, ୧୯୧୬ ।
୪୭. ନାୟକ, ଅଲେଖ ପ୍ରସାଦ : ସହକାର, ୫ମଭାଗ/୮ମ ସଂଖ୍ୟା, ପୃ. ୨୬୩-୬୪ ।
୪୮. ଆଶା : ୧୬ ସେପ୍ଟେମ୍ବର, ୧୯୧୬ ।
୪୯. ଉତ୍କଳ ଦୀପିକା, ୨୯ ଜୁଲାଇ ୧୯୧୬ ।
୫୦. ଆଶା : ୧୭ ଜୁଲାଇ, ୧୯୧୬ ।
୫୧. ତତ୍ରୈବ ।
୫୨. ପଟ୍ଟନାୟକ, ଦେବୀପ୍ରସନ୍ନ : (୧୯୫୭) ଗଙ୍ଗାଧରଙ୍କ ନିକଟକୁ ରାଧାନାଥ ଲେଖିଥିବା ବହୁ ପତ୍ରରେ ଏହା ସୁସ୍ପଷ୍ଟ । ୮୫ ପୃଷ୍ଠାରେ ସଂଯୋଜିତ ପତ୍ର ବିଶେଷ ଦ୍ରଷ୍ଟବ୍ୟ । କବିଲିପି, ବିଶ୍ୱଭାରତୀ, ଶାନ୍ତିନିକେତନ ।
୫୩. ଓଡ଼ିଆ ଓ ନବସମ୍ବାଦ : ୧୧ ଅପ୍ରେଲ୍ ୧୮୮୮ ।
୫୪. ଉତ୍କଳ ପ୍ରଭା : ୧୨୯୯ ସାଲ, ପ୍ରଥମ ସଂଖ୍ୟା, ପୃ.୧୪୧ ।
୫୫. ଇନ୍ଦ୍ରଧନୁ, ପ୍ରଥମ ସଂଖ୍ୟା, ଉତ୍କଳ ଦୀପିକା, ୨୬ ଅଗଷ୍ଟ, ୨ ସେପ୍ଟେମ୍ବର, ୧୮୯୩ ।
୫୬. ଆମସ୍ ସଟନ୍‌ଙ୍କ ସଂକଳିତ ତିନିଭାଗରେ ବିଭକ୍ତ ଓଡ଼ିଆ ଡିକ୍‌ସନାରୀ ଦ୍ରଷ୍ଟବ୍ୟ । ପ୍ରକାଶକାଳ ୧୮୪୧, ୧୮୪୨, ୧୮୪୩ ।
୫୭. ନନ୍ଦଶର୍ମା, ଗୋପୀନାଥ : ୧୯୨୭, ଓଡ଼ିଆ ଭାଷାତତ୍ତ୍ୱ, ପୃ. ୧୪୪-୫୫ ।
୫୮. ଦାସ, ନୀଳକଣ୍ଠ : ପଣ୍ଡିତ ନନ୍ଦଶର୍ମାଙ୍କ ଓଡ଼ିଆ ଭାଷାତତ୍ତ୍ୱ ଗ୍ରନ୍ଥର ମୁଖବନ୍ଧ, ପୃ.୧୧ ।
୫୯. ସିଂହଦେଓ, ମଦନମୋହନ : ଶବ୍ଦତତ୍ତ୍ୱବୋଧ ଅଭିଧାନର ମୁଖବନ୍ଧ ଦ୍ରଷ୍ଟବ୍ୟ । ଆଶା, ୨୭ ସେପ୍ଟେମ୍ବର, ୧୯୧୬ ।
୬୦. ରାୟଗୁରୁ, ଦୀନବନ୍ଧୁ : ଆଶା, ୩୧ ଜୁଲାଇ ୧୯୧୬, ମଦନମୋହନ ଦାଶ, ଆଶା, ଅପ୍ରେଲ୍ ୧୯୧୬ ।
୬୧. ଦାସ, ନୀଳକଣ୍ଠ : ଗ୍ରନ୍ଥସୂଚୀ, ୫୮ ଦ୍ରଷ୍ଟବ୍ୟ, ପୃ ୧୬-୧୭ ।
୬୨. ତତ୍ରୈବ ।
୬୩. ମହାପାତ୍ର, ବିଜୟ ପ୍ରସାଦ : ୧୯୯୫, ଓଡ଼ିଆ ଭାଷା ବିଭବ, କଟକ, ବିଦ୍ୟାପୁରୀ, ପୃ. ୪୬-୫୬ ।
୬୪/୬୫. ପୁସ୍ତକ ଟିପ୍ପଣୀ ୫୯ ଦ୍ରଷ୍ଟବ୍ୟ ।
୬୬. ଆଲବର୍ଟ ସି.ବାଓ : ୧୯୮. ଦି ହିଷ୍ଟ୍ରି ଅଫ୍ ଇଂଲିଶ୍ ଲାଙ୍ଗୁଏଜ୍, ନୂଆ ଦିଲ୍ଲୀ, ଆଲାଏଡ୍ ପବ୍ଲିଶର୍ସ, ପୃ ୪୨୮-୨୯ ।
୬୭, ଦାସ, ଗୋପବନ୍ଧୁ : ସତ୍ୟବାଦୀ, ୧ମ ବର୍ଷ/ ୮ମ-୯ମ ସଂଖ୍ୟା, ପୃ ୨୩୦ ।



ଏବଂ, ସ୍ୱରବର୍ଣ୍ଣରେ କୌଣସି ମାତ୍ରା ବା ଫଳା ଯୁକ୍ତ ନକରି ସମସ୍ୟା ସମାଧାନ କରାଯାଇ ପାରିଥାନ୍ତା । ସମ୍ପ୍ରତି ସାଧାରଣ ଜନତା, ପ୍ରହରାଜଙ୍କ ସୃଷ୍ଟ ଏହି ନୂତନ ବର୍ଣ୍ଣକୁ ବହୁଳ ବ୍ୟବହାର କରାଯାଉଥିବାର ଲକ୍ଷ୍ୟ କରାଯାଉଛି । ଏହି ନୂତନତାକୁ ସ୍ୱୀକାର କରିବା କାଳରେ ସଂକଳନ ସମ୍ଭବତଃ ଏ କଥା ମଧ୍ୟ ପାସୋରି ପକାଇଛନ୍ତି 'ବର୍ଗ୍ୟ' ଓ 'ଅବର୍ଗ୍ୟ ବ'ର ସାଂକେତିକ ଚିହ୍ନରେ ମଧ୍ୟ କୌଣସି ପାର୍ଥକ୍ୟ ନାହିଁ ଯଥା :

| | |
|---|---|
| ଆମ୍ + ବ = ଆମ୍ବ | ପକ୍ + ୱ = ପକ୍ୱ |
| ବିମ୍ + ବ = ବିମ୍ବ | ଅଶ୍ + ୱ = ଅଶ୍ୱ |
| କଦମ + ବ = କଦମ୍ବ | ଭାସ୍ + ୱ = ଭାସ୍ୱ, ଇତ୍ୟାଦି |

ଅନୁରୂପ ଭାବରେ ନଶ୍ୱର, ଶ୍ୱଶୁର, ଚତ୍ୱର ଆଦି ଲେଖନ ଓ ଉଚ୍ଚାରଣରେ ମଧ୍ୟ ପାର୍ଥକ୍ୟ ଅନୁଭୂତ ହୋଇଥାଏ । 'ବ' କିମ୍ବା 'ୱ' ଫଳା ବ୍ୟତୀତ ବର୍ଗ୍ୟ ଜ କିମ୍ବା ଅବର୍ଗ୍ୟ ଯ (ୟ ଫଳା) ମଧ୍ୟ ସମସମସ୍ୟା ସୃଷ୍ଟି କରିଥାନ୍ତି । ଯଥା: ମତ୍ସ୍ୟ, ହାସ୍ୟ, ସଖ୍ୟ, ଧନ୍ୟ, ମାନ୍ୟ, କାରୁଣ୍ୟ, ହିରଣ୍ୟ, ମୂର୍ଦ୍ଧନ୍ୟ, ରମ୍ୟ, ହର୍ମ୍ୟ ଇତ୍ୟାଦି । 'ର' (୍ର) ଫଳା (ଶତ୍ରୁ, ଭ୍ରାତୃ, ତ୍ରୁଟି, ଶ୍ମଶ୍ରୁ) ଏବଂ ର (ୃ) କାର (ନେତୃତ୍ୱ, କର୍ତ୍ତୃତ୍ୱ, ତୃଣ, ତୃଷା, ଜାମାତୃ, ଦାତୃ) ର ଉଚ୍ଚାରଣ କ୍ଷେତ୍ରରେ ମଧ୍ୟ ସମସମସ୍ୟା ରହିଛି । ହ୍ରସ୍ୱ 'ଉ' (ୁ), ଦୀର୍ଘ ଊ (ୂ), ହ୍ରସ୍ୱ ଇ (ି), ଦୀର୍ଘ ଈ (ୀ), ତାଳବ୍ୟ 'ଶ', ମୂର୍ଦ୍ଧନ୍ୟ 'ଷ' ଓ ଦନ୍ତ୍ୟ 'ସ'ର ଉଚ୍ଚାରଣ ସଂପର୍କରେ ଓଡ଼ିଆମାନେ ଯେ ଆଦୌ ସଚେତନ ନୁହନ୍ତି- ଏହା ଉଲ୍ଲେଖ କରିବା ନିଷ୍ପ୍ରୟୋଜନ । ଲିଖନର ଏହି ରୀତି, ଅର୍ଥକୁ ପ୍ରଭାବିତ କରୁଥିବାରୁ ସାଧାରଣ ଜନତା 'ଫଳା' ଓ 'ମାତ୍ରା' ର ବ୍ୟବହାରରେ ଅଭ୍ୟସ୍ତ ହୋଇଗଲେଣି । ତଥାପି ସମସ୍ୟା ଯେ ଲୋପପାଇଯିବ, ଏହା ସମ୍ଭବ ନୁହେଁ । କେବଳ ଓଡ଼ିଆ ଏବଂ ଅନ୍ୟ ଭାରତୀୟ ଭାଷା ନୁହେଁ, ସମଗ୍ର ପୃଥିବୀରେ, ପ୍ରାୟ ସବୁ ଭାଷାରେ ଶବ୍ଦର ଲିଖନ ଓ ଉଚ୍ଚାରଣକୁ କନ୍ଦ୍ର କରି ଊଣା ଅଧିକେ ଏହି ସମସ୍ୟା ଅନୁଭୂତ ହୋଇଥାଏ । ଇଂରାଜୀ ଭାଷାରେ ଏହି ସମସ୍ୟା ଅଧିକ ଉତ୍କଟ । ପ୍ରକାଶ ଥାଉ କି, ବିଖ୍ୟାତ ନାଟ୍ୟକାର ବର୍ଣ୍ଣାଡ୍ ଶ' ଇଂରାଜୀ ଭାଷାରେ ପରିଲକ୍ଷିତ ଲିଖନ ଓ ଉଚ୍ଚାରଣଗତ ଜଟିଳ ଓ ଅବୈଜ୍ଞାନିକ ସମସ୍ୟାର ସମାଧାନପାଇଁ ଆପଣାର ଉପାର୍ଜିତ ବିପୁଳ ସମ୍ପତ୍ତି ଦାନର ଘୋଷଣା କରିଛନ୍ତି । ଯେଉଁଠି ଟିକିଏ ସଚେତନ ହେଲେ, ମାମୁଲି ସମସ୍ୟାକୁ ସହଜରେ ଟାଳି ଦିଆଯାଇପାରିବ, ସେଠାରେ ସମସ୍ୟା ସୃଷ୍ଟିକରିବା ଯେ ଅନାବଶ୍ୟକ, ପ୍ରହରାଜ ସମ୍ଭବତଃ ଏକଥା ଭୁଲିଯାଇଛନ୍ତି । ବଙ୍ଗଳା ଭାଷାର ପ୍ରଭାବରେ, ଓଡ଼ିଆ ଲିପି ମାଳାରେ 'ଢ଼' ଆକାରର ଲିପି ତିଆରି କରି ଭ୍ରମର ଭଉଁରୀ ଭିତରକୁ ପାଠକମାନଙ୍କୁ ଠେଲିଦେଇଛନ୍ତି । ଇଂରାଜୀ ଏବଂ ଅନ୍ୟ ବୈଦେଶିକ ଭାଷାଗୁଡ଼ିକରେ ୱ ବର୍ଣ୍ଣାଦ୍ୟ ଶବ୍ଦଗୁଡ଼ିକୁ ଓଡ଼ିଆ ଶବ୍ଦମାଳାରେ ଅବର୍ଗ୍ୟ ବ ବର୍ଣ୍ଣାଦ୍ୟ ଶବ୍ଦ ସ୍ଥାନରେ ସଂକଳିତ କରାଯାଇଥିଲେ, ଏକ ଅପବାଦକୁ ସହଜରେ ଏଡେଇ ଦିଆଯାଇ ପାରିଥାଆନ୍ତା ।

ଓଡ଼ିଆ ଶବ୍ଦଗୁଡ଼ିକର ଇଂରେଜୀ ଲିପୀକରଣ ସହିତ ପ୍ରତିଶବ୍ଦ ଲିଖନ ଭାଷାକୋଷର ଅନ୍ୟତମ ବୈଶିଷ୍ଟ୍ୟ । ଏହା ଓଡ଼ିଆ ଲିପି ଅନଭିଜ୍ଞମାନଙ୍କୁ ଭାଷା ସହିତ ପରିଚିତ କରାଇ ଦିଏ ଏବଂ ଅନୁବାଦ କ୍ଷେତ୍ରରେ ଉପାଦେୟ ତଥ୍ୟ ଯୋଗାଇ ଦିଏ । ଏଠାରେ ଗୋଟିଏ ଶବ୍ଦର ଉଦାହରଣ ଦିଆଯାଇପାରେ ।

ଅଇଘରା - ଦେ. ବି. (ସଂ. ଅଗ୍ନି ଉତ୍ସବ, ସଂ. ଅଗ୍ନି + ହରିକା) ରାକ୍ଷସୀ ବିଶେଷ

Aighara

୧. ମାଘ ପୂର୍ଣ୍ଣିମା (ଏ ଦିନ ରାତିରେ ଗ୍ରାମ ମଣ୍ଡପରେ କୁଟା ଆଦି ଗଦା କରାଯାଇ ଅଗ୍ନି ଉତ୍ସବ ହୁଏ । ଏହି ନିଆଁକୁ ଅଁଗ୍ନି ଓ ନିଆଁ ଜଳାଇବାକୁ ଅଗିଜଳା କୁହାଯାଏ)

The fullmoon of the month of Magha in night of which villagers light a bonfirg at the extremity of the village.

୨. ଅଗି, ମାଘ ପୂର୍ଣ୍ଣିମା ରାତିରେ ଗାଁ ମୁଣ୍ଡରେ ଜଳାଯିବା ନିଆଁଗଦା ।

Bonfire lighted on the fullmoon of the of Magha.

୩. ଦୋଳ ପୂର୍ଣ୍ଣିମାର ପୂର୍ବ ରାତି

The night precedieg the full moon in the month of Magha.

୪. ଦୋଳ ପୂର୍ଣ୍ଣିମାର ପୂର୍ବ ରାତ୍ରିରେ ସନ୍ଧ୍ୟାରୁ ରାତି ପାହିବା ପର୍ଯ୍ୟନ୍ତ ଗ୍ରାମ ମୁଣ୍ଡରେ କରାଯିବା ଅଗ୍ନି ଉତ୍ସବ ।

Boefire lighted at the end of the village on the night preceding the full moon of the month of Magha.

ଗୋଟିଏ ଶବ୍ଦର ଉପର୍ଯ୍ୟୁକ୍ତ ବ୍ୟାଖ୍ୟାକୁ ଲକ୍ଷ୍ୟ କରି ଜଣେ ସାଧାରଣ ପାଠକ ହୁଏତ ଅଭିଯୋଗ କରିପାରେ ଯେ, ଏହା ଅତିକଥନର ଏକ ଚମତ୍କାର ଉଦାହରଣ । ଭାଷା ବିଜ୍ଞାନୀ ଖଗେଶ୍ୱର ମହାପାତ୍ର ଆପଣାର ଓଡିଆ ଲିପି ଓ ଭାଷା ଗ୍ରନ୍ଥରେ ସଂଯୋଜିତ

> "ଏହି ପଦ୍ଧତି ବୈଧାନିକ (preserptive)ନୁହେଁ, ବସ୍ତୁପରକ ଓ ବର୍ଣ୍ଣନାତ୍ମକ । ତେଣୁ ସମକାଳୀନ (synchronic) ଓ କାଳକ୍ରମିକ, ଉଭୟ ସ୍ତରରେ ଉପଲବ୍ଧ ଯାବତୀୟ ରୂପ ସେ ଗ୍ରହଣ କରିଛନ୍ତି । ସାମୁଏଲ ଜୋନ୍‌ସନ୍, ନୋଆ ଓଏବ୍‌ଷ୍ଟରଙ୍କ ପରି ସେ ଆଦୌ ବିଚାରି ନାହାନ୍ତି ଯେ, ମାନକ ଭାଷା (Standard) ର ଶୁଦ୍ଧତା ରକ୍ଷା କରିବା ଅଭିଧାନ ସଂକଳୟିତାଙ୍କର ଅନନ୍ୟ କର୍ତ୍ତବ୍ୟ ।"[୨୯]

ଉକ୍ତି ଏହି ବିଚାରର ପ୍ରତିଧ୍ୱନି । ମହାପାତ୍ର ଭୁଲିଯାଇଛନ୍ତି ଯେ, ଭାଷାକୋଷ ଏକ ପ୍ରତିଶବ୍ଦକୋଷ (ଥିସାରସ) ନୁହେଁ । ପ୍ରତିଶବ୍ଦକୋଷ ଏକ ସ୍ୱତନ୍ତ୍ର ପ୍ରକାରର କୋଷ । ଅନ୍ୟପକ୍ଷରେ ସାଧାରଣ ଉପଯୋଗୀ ଭାଷାକୋଷରେ, ପ୍ରତ୍ୟେକ ଶବ୍ଦର ବର୍ଣ୍ଣନା ଅପରିହାର୍ଯ୍ୟ । ପ୍ରତ୍ୟେକ ଶବ୍ଦର ପ୍ରଧାନତଃ ଦୁଇଗୋଟି ଅର୍ଥ ରହିଛି । ବ୍ୟାକରଣିକ, ଆଭିଧାନିକ । ବ୍ୟାକରଣିକ ଅର୍ଥ ଗଠନପ୍ରକ୍ରିୟା ସହିତ ସଂପର୍କିତ, ଏହା ବଦଳେ ନାହିଁ । ମାତ୍ର ଶବ୍ଦର କାଳକ୍ରମିକ ଅର୍ଥଗତ ପରିବର୍ତ୍ତନର ସୂଚନା ଅଭିଧାନରେ ସ୍ଥାନ ପାଇଥାଏ । ଏହାହିଁ ଅଭିଧାନ ବ୍ୟବହାରକାରୀକୁ ଶବ୍ଦ ସମ୍ପର୍କରେ ସ୍ପଷ୍ଟ ସୂଚନା ଦେଇଥାଏ । ମହାପାତ୍ରଙ୍କ ଉପର୍ଯ୍ୟୁକ୍ତ ଉକ୍ତି ପାର୍ଶ୍ୱିକ, ସଂପୂର୍ଣ୍ଣ ଗ୍ରହଣୀୟ ନୁହେଁ । ଏହା ବର୍ଣ୍ଣନାତ୍ମକ, ବସ୍ତୁପରକ- ଏକଥା ଅବଶ୍ୟ ସ୍ୱୀକାର୍ଯ୍ୟ । ମାତ୍ର ଏହି ପଦ୍ଧତିକୁ ସଂକଳକ ଅଭିଧାନତତ୍ତ୍ୱ ଓ ପାଠକଙ୍କ ବୃହତ୍ତର ସ୍ୱାର୍ଥ ଦୃଷ୍ଟିରୁ ହିଁ ଗ୍ରହଣ କରିଛନ୍ତି । ପୁନଶ୍ଚ, ଭାଷାକୋଷକୁ ଜ୍ଞାନକୋଷିକ କରିବା ଆଦର୍ଶ ଏହାର ପୃଷ୍ଠାବୃଦ୍ଧି ଓ ବ୍ୟୟବାହୁଲ୍ୟର ପ୍ରଧାନ କାରଣ ହୋଇଛି । ଭାଷାକୋଷର ଗ୍ରାମ୍ୟ, ଆଞ୍ଚଳିକ

ବା ଲୋକକଥିତ ଶବ୍ଦଗୁଡ଼ିକୁ ଉପଲକ୍ଷ୍ୟ ଭାବରେ ଗ୍ରହଣ କରି ଭାଷାର ମାନକ ବା ଶୁଦ୍ଧତା ସମ୍ପର୍କରେ ମହାପାତ୍ର ଯେଉଁ ଯୁକ୍ତି ଉପସ୍ଥାପନ କରିଛନ୍ତି, ଆଧୁନିକ ସାହିତ୍ୟରେ ବ୍ୟବହୃତ ଗ୍ରାମ୍ୟ ଶବ୍ଦର ବହୁଳତାକୁ ଲକ୍ଷ୍ୟ କଲେ, ତାଙ୍କ ଯୁକ୍ତି ଯେ କେତେ ପ୍ରାସଙ୍ଗିକ, ତାହା ଆଲୋଚନା କରାଯାଇପାରେ । ପ୍ରହରାଜଙ୍କପାଇଁ ଅଭିଧାନ କୌଣସି ଭାଷାର ବାଇବେଲ୍ ନୁହେଁ, ଏକ ଜାତିର ଜୀବନସ୍ରୋତ ।[୩୦] ଅଭିଧାନତ୍ୱ ଦୃଷ୍ଟିରୁ ବିଚାର କଲେ ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷ- ଫର୍ଗୁସନଙ୍କ ହିନ୍ଦୁସ୍ଥାନୀ- ଇଂରାଜୀ ଅଭିଧାନ, ନୋଆ ଓଏବଷ୍ଟରଙ୍କ ଓଏବ୍‌ଷ୍ଟରଙ୍କର ଡିକ୍ସନାରୀ, କିମ୍ବା ବିଶ୍ୱବିଖ୍ୟାତ ଅକ୍ସଫୋର୍ଡ ଡିକ୍ସନାରୀ ସହିତ ତୁଳନୀୟ । ସମଗ୍ର ଭାରତ ବର୍ଷରେ ଏଯାବତ୍ ସଂକଳିତ କୋଷଗ୍ରନ୍ଥଗୁଡ଼ିକ ମଧ୍ୟରେ ଏହା ସର୍ବବୃହତ୍ । ଏଚ୍. ଏଚ୍. ଶିବାଜୀରାଓ ଗାଇକ୍‌ଉଆଡ୍ ଅବଶ୍ୟ ଗୁଜୁରାଟୀ ଭାଷାରେ "ଶିବାଜୀ ଶାସନ କଳ୍ପତରୁ" ନାମରେ ଏକ ବହୁ ଭାଷିକ ଅଭିଧାନ (୧୯୩୧) ସଂକଳନ କରିଛନ୍ତି । ମାତ୍ର କଳେବର ଓ ମାନ ଦୃଷ୍ଟିରୁ ପ୍ରହରାଜଙ୍କ ଚାତୁର୍ଭାଷିକ କୋଷଗ୍ରନ୍ଥ ସ୍ୱତନ୍ତ୍ର ଓ ବହୁଚର୍ଚ୍ଚିତ ।

## ଛଅ

ଏବେ ମୁଁ ଆଲୋଚନାର ଆରମ୍ଭ (ଗୌରଚନ୍ଦ୍ରିକା କୁହାଯାଇପାରେ)କୁ ଫେରିବି । ମୁଁ ସୂଚନା ଦେଇଛି, ଗ୍ରନ୍ଥର ଦୁଇ/ତିନି ଖଣ୍ଡ ପ୍ରକାଶ ପାଇଲା ପରେ ସମକାଳୀନ ଓଡ଼ିଶାର ବହୁ ବିଦ୍ୱାନ, ସଂକଳକ ଓ ତାଙ୍କ କୋଷଗ୍ରନ୍ଥକୁ କଟୁ ସମାଲୋଚନା କରିଛନ୍ତି । ଶରତ ଚନ୍ଦ୍ର ମୁଖାର୍ଜୀ, ଗୋଦାବରୀଶ ମହାପାତ୍ର, ରାମ ପ୍ରସାଦ ସିଂହ, ବସନ୍ତ କୁମାର ବେହୁରା ଏବଂ ଲକ୍ଷ୍ମୀକାନ୍ତ ମହାପାତ୍ର ପ୍ରମୁଖଙ୍କୁ ଏଠାରେ ସ୍ମରଣ କରାଯାଇପାରେ । ବାଳକୃଷ୍ଣ କରଙ୍କ ସମ୍ପାଦିତ 'ସହକାର' ଏବଂ ଗୋଦାବରୀଶଙ୍କ 'ନିଆଁଖୁଣ୍ଟା' ପତ୍ରିକା ପ୍ରତିବାଦୀମାନଙ୍କର ମୁଖପତ୍ର ହୋଇଛି । "ପୂର୍ଣ୍ଣଚନ୍ଦ୍ର ଭାଷାକୋଷ ସମ୍ବନ୍ଧରେ କେତୋଟି କଥା" ଶୀର୍ଷକରେ ଗୋଦାବରୀଶ 'ସହକାର' ର ପାଞ୍ଚଗୋଟି ସଂଖ୍ୟାରେ ପ୍ରହରାଜଙ୍କୁ ଏକ ପ୍ରକାର ଲଙ୍ଗଳା କରିଛନ୍ତି ।[୩୧] ରାମ ପ୍ରସାଦ ସିଂ 'ଗଣ ସାହିତ୍ୟ ଓ ତାହାର ଆଲୋଚନା' ଶୀର୍ଷକରେ ପ୍ରସଙ୍ଗ ନଥାଇ ମଧ୍ୟ ପ୍ରହରାଜଙ୍କୁ ପତ୍ରସ୍ଥ କରିଛନ୍ତି । ବସନ୍ତ କୁମାର ବେହୁରାଙ୍କ "ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷରେ ଭୁଲ୍" ଆଲୋଚନା ନୀଳକଣ୍ଠ ଦାସଙ୍କ ସମ୍ପାଦିତ ନବଭାରତରେ ପ୍ରକାଶିତ ହୋଇଛି ।[୩୨] ଏଠାରେ ପ୍ରସଙ୍ଗକ୍ରମେ ରାମପ୍ରସାଦ ଓ ଗୋଦାବରୀଶଙ୍କ ଆଲୋଚନାର କେତେକାଂଶ ଉଦ୍ଧାର କରାଯାଇପାରେ ।

ରାମପ୍ରସାଦ ସିଂ-

> "ଭାଷାକୋଷକୁ ଦାନ କରିବା ଯେକୌଣସି ନୀତି ଦୃଷ୍ଟିରୁ ଦେଖିଲେ ମଧ୍ୟ ସରକାରଙ୍କ ପକ୍ଷରେ ବୁଦ୍ଧି, ବିବେଚନାର ଓ ଦାୟିତ୍ୱ ଜ୍ଞାନର ଅଭାବ ଛଡ଼ା ଆଉ କିଛି କହିହେବ ନାହିଁ । ଭାଷାକୋଷ ଜଣେ ବ୍ୟକ୍ତିର ବ୍ୟକ୍ତିଗତ ସମ୍ପତ୍ତି । ବଙ୍ଗଳା ଭାଷାକୋଷ ଓ ହିନ୍ଦୀ ଶବ୍ଦସାଗରର ଏକତ୍ର ସମାବେଶ ସହିତ କେତେକ ଓଡ଼ିଆ ଶବ୍ଦର ଦଣ୍ଡବୈଠକୀ ଓ କସରତର ସମାବେଶ । ଏହାର ଆକାର ବୃଦ୍ଧି କରିଛି । କିନ୍ତୁ ଗୋଟିଏ ମାତ୍ର ବହି- ଏହା ପଛରେ ଯେଉଁ କଦର୍ଯ୍ୟ ଇତିହାସ ରହିଛି, ତାହା

ଅନ୍ତତଃ କଂଗ୍ରେସ ଦଳ ଭୁଲିଯିବା ଉଚିତ୍ ନୁହେଁ । ମନେହୁଏ, ଏହାର ପ୍ରତ୍ୟେକ ପୃଷ୍ଠାରେ ନିରୀହ ସତ୍ୟାଗ୍ରହୀର ରକ୍ତ ଲିପ୍ତହୋଇ ରହିଛି । ଜଣେ ଲେଖକର ବ୍ୟକ୍ତିଗତ ସ୍ୱାର୍ଥପାଇଁ ଅଯାଚିତ ଭାବରେ ଲକ୍ଷ ଲକ୍ଷ ଲୋକଙ୍କ ଧନରୁ ଟଙ୍କାଟିଏ ମାତ୍ର ବ୍ୟୟକରିବା ଯେ ସରକାରୀ ଦାୟିତ୍ୱ ଦୃଷ୍ଟିରୁ ଅସମୀଚୀନ, ଏହା ସ୍ୱତଃ ହିଁ ପ୍ରତିଭାତ ହେବା ।"[୩୨]

ଗୋଦାବରୀଶ ମହାପାତ୍ରଙ୍କ ବକ୍ତବ୍ୟ ଏହିପରି :-

୧. ପାଣ୍ଡୁଲିପି ଅବସ୍ଥାରେ ଥିଲା ବେଳେ ଏହାର ଖଣ୍ଡି ଖଣ୍ଡି କାଗଜକୁ ଯୋଡିଲେ, କେତେ ମାଇଲ୍ ଲମ୍ବ ହେବ, କେତେ ଶବ୍ଦ ଅଛି- ଇତ୍ୟାଦି କଥା ଖବର କାଗଜ ମାର୍ଫତ୍‌ରେ ଶୁଣାଯାଇଛି । ଏ ଅଭିନବ ବିରାଟ ଉଦ୍ୟମପାଇଁ ପ୍ରଶଂସା ନ କରି ରହି ହେଉ ନାହିଁ । (ସହକାର : ୧୪ଶ ବର୍ଷ/ ୧୦ମ ସଂଖ୍ୟା ପୃ ୯୩୫- ୯୪୧)

୨. ମୋର ଏହି ଲେଖାଟିରେ ଯେବେ କେତେଥର ଶ୍ରୀଯୁକ୍ତ ଗୋପାଳଚନ୍ଦ୍ର ପ୍ରହରାଜଙ୍କଦ୍ୱାରା ସଂଗୃହୀତ ପୂର୍ଣ୍ଣଚନ୍ଦ୍ର ଓଡିଆ ଭାଷାକୋଷ ବୋଲି ଲେଖିବାକୁ ପଡେ, ତେବେ ଏହି ନାଁଟିରେ ହିଁ ଏହା ପୂର୍ଣ୍ଣ ହୋଇଯିବ । ତେଣୁ ଯାକୁ ଛୋଟେଇ ଦେଇ, ସମସ୍ତଙ୍କର ସୁବିଧା ପାଇଁ 'ପାଳକୋଷ' ବୋଲି ଲେଖୁଛି । xx ଏଥିରେ ଓଡିଶା ଦେଶର ସବୁ ଅଞ୍ଚଳର ବହୁ ଶବ୍ଦ ସଂଗୃହୀତ ହୋଇଛି । ମାତ୍ର ପାଳଗୋଛାର ଅଗ, ମୂଳ, ଚୂଳ ନଥିଲା ପରି, ସଂଗ୍ରାହକ ସେଗୁଡିକର ଅଗ- ମୂଳ- ଚୂଳ ଠିକ୍ କରି ସଂଯତ ଭାବରେ ସଜାଇ ପାରି ନାହାନ୍ତି । (ସହକାର: ୧୪ଶ ବର୍ଷ/ ୧୦ମ ସଂଖ୍ୟା ପୃ ୯୩୬)

୩. ଏହି ପରି ବାଛି ବସିଲେ କମ୍ବଳ ଯାକ ବାଳ । ଏହା ବାଛିବାକୁ ହେଲେ ଆଉ ଏକ ଭିନ୍ନ ଶବ୍ଦକୋଷ ହୋଇଯିବ । (ସହକାର: ୧୪ଶ ବର୍ଷ/ ୧୦ମ ସଂଖ୍ୟା ପୃ ୯୩୯)

୪. ଠାଏ ଠାଏ କେଉଁଠି ସଂଗ୍ରାହକ ଦେଶବାସୀଙ୍କୁ ଜଣାଯାଉଛି ଯେ, ତାଙ୍କ କୋଷରେ ଏକ ଲକ୍ଷରୁ ଅଧିକ ଶବ୍ଦ ଅଛି । ଆଡ୍‌ଭାଇସ୍, ଆଡ୍‌ଭାଇସରି, କମିଟି, ଇଜେକ୍‌ଟ୍‌ମେଣ୍ଟ, ଆଡ୍‌ମିରାଲ୍‌ଟୀ, ଅକ୍ସିଜେନ୍, ଏକ୍‌ସ୍‌ଟ୍ରିମିଷ୍ଟ, ଏକ୍ସ୍‌ଟ୍ରକରି, ଏକ୍‌ସ୍‌ଟେନ୍‌ସନ୍ ପ୍ରଭୃତିକୁ ଓଡିଆ ଶବ୍ଦ ବୋଲି ସଂଗ୍ରାହକ ଯେବେ ଏଥିରେ ଭର୍ତ୍ତି କରିଥାଆନ୍ତି, ତାହା ହେଲେ ଆହୁରି ଲକ୍ଷ ଲକ୍ଷ ଓଡିଆ ଶବ୍ଦ ବାକି ରହିଯାଇଛି । (ସହକାର: ୧୪ଶ ବର୍ଷ/ ୧୦ମ ସଂଖ୍ୟା ପୃ ୯୩୯)

୫. ଏପରି ଗୋଟିଏ ଗ୍ରନ୍ଥର ସମାଲୋଚନା କରିବା କଷ୍ଟକର ବ୍ୟାପାର ହେଲେ ସୁଦ୍ଧା ମୁଁ ଏଥିରେ ହାତ ଦେବାକୁ ଯାଉଛି । କେହି କେହି ଭାବି ପାରନ୍ତି, ସମାଲୋଚକର ଦୋଷ ଓ ଗୁଣ ଉଭୟ ଦେଖାଇବା ଆବଶ୍ୟକ; ମାତ୍ର ମୋ ଲେଖାର

ଗୁଣ ଆଲୋଚନା ପୂର୍ବରୁ ଦୋଷ ଆଲୋଚନା କରିବାର କାରଣ ଏହି ଯେ, ଦୋଷଗୁଡିକ ଏହାର ଶରୀରକୁ ଏତେ ପୃଥୁଳ କରି ଦେଇଛି ଯେ, ରାଶି ରାଶି କରି ସେଗୁଡିକ ବାଛି ନ ଦେଲେ, ଗୁଣଗୁଡିକ ସହଜରେ ଧରା ପଡିବ ନାହିଁ । xx ଆମ ଭୁଲ ଭ୍ରାନ୍ତିକୁ ଦେଶ ବାହାରେ ଲୋକେ ଜାଣି ନପାରି ପ୍ରଶଂସା କରିଗଲେ ଯେ, ଆମେ ସେହି ଭୁଲ କୁ ଠିକ୍ ମାନିନେବା, ଏଥିର କୌଣସି କାରଣ ନାହିଁ । ପୁଣି ଆମ ଭାଷାର ଏତେ ବଡ ବଡ ଗ୍ରନ୍ଥରେ ଭୁଲ୍ ଚହଲିଗଲା ବୋଲି ଅନ୍ୟ ଲୋକେ ଜାଣି ଗଲେ ଯେ ସିଂହଭୁମି, ମେଦୀନିପୁର, ଜୟପୁର ପ୍ରଭୃତି ଅଞ୍ଚଳ ଓଡିଶା ପ୍ରଦେଶରେ ନ ମିଶିଲା ଭଳିଆ କିଛି ଗୋଟିଏ ଗୁରୁତର କ୍ଷତି ହୋଇଯିବ, ଏପରି କୌଣସି ଆଶଂକା କରିବାର କାରଣ ମଧ ନାହିଁ । ତାହାପରେ କେତେକ ଲୋକ କୋଷ ଗ୍ରନ୍ଥର ପ୍ରକାଣ୍ଡତାରେ ମୁଗ୍ଧ ଓ ଚମକୃତ, ମାତ୍ର ସେହି ପ୍ରକାଣ୍ଡତା ଯେ ଏହାର ଦୋଷ- ଏକଥା ଅନେକେ ଭିତର ଜିନିଷଟା ଦେଖିବାର ଅବସର ପାଇ ନ ଥିବାରୁ ବୁଝିପାରି ନାହାନ୍ତି ।

୬. ମୋଟ ଉପରେ ତାହା ପାଳଗୋଛା ବାନ୍ଧିଲା ପରି ହୋଇଛି । ଗ୍ରନ୍ଥଟି କୋଷ ତ ନିଶ୍ଚୟ, ସୌଷ୍ଟବର ଅଭାବରୁ ତାକୁ 'ପାଳକୋଷ' ଛଡା ଆଉ କି ନାମ ଦେଲେ ନାମଟା ଯଥାର୍ଥ ହୁଅନ୍ତା, ଅଥଚ ସେଥିରୁ ଲେଖକଙ୍କର ନାମର ସୂଚନା ମଧ ପ୍ରକାଶ ପାଆନ୍ତା, ଏପରି ଆଉ କିଛି ମୋତେ ଦେଖାଗଲା ନାହିଁ । xx ଅବଶ୍ୟ ଆଉ କେତେ ନାମ- ଅର୍ଥାତ୍ "ରାଜକୋଷ", ''ଚନ୍ଦ୍ରକୋଷ", "ପୂର୍ଣ୍ଣକୋଷ" ଆଦି ନାମ ଦିଆଯାଇପାରିଥା'ନ୍ତା; କିନ୍ତୁ ଏ ସବୁରେ ଗ୍ରନ୍ଥର ପୂରା ପରିଚୟ ମିଳନ୍ତା ନାହିଁ । xx କବିସୂର୍ଯ୍ୟଙ୍କ ପରେ ଆଉ ଜଣେ ନିକୃଷ୍ଟ କବି ଜନ୍ମ ହେବାରୁ ତାଙ୍କୁ ଲୋକେ କବିଚନ୍ଦ୍ର ବୋଲି କହୁଥିଲେ । ଏପରି ଗୋଟିଏ ଗ୍ରନ୍ଥକୁ ଚନ୍ଦ୍ରକୋଷ ବୋଲି ଆଖ୍ୟା ଦେଲେ ପ୍ରହରାଜେ ନିଶ୍ଚୟ ମନସ୍ତାପ କରନ୍ତେ । ଶେଷରେ ମୋର ଏହାକୁ ସୂର୍ଯ୍ୟକୋଷ ବୋଲି ଆଖ୍ୟା ଦେବା ଇଚ୍ଛା ଥିଲା । କିନ୍ତୁ ତାହା ହେଲେ ଗ୍ରନ୍ଥ ଉପରେ ନାମ ଲେଖାଯିବା ଉଚିତ୍ ଥିଲା- ସୂର୍ଯ୍ୟବଂଶ ଅବତଂଶ ପୂର୍ଣ୍ଣଚନ୍ଦ୍ର ଓଡିଆ ଭାଷାକୋଷ' । ଏକ ଶବ୍ଦର ବିଭିନ୍ନ ରୂପାନ୍ତରର ସ୍ଥାନ ଭାଷାକୋଷରେ କେତେ ଦୂର, ପୁଣି ସେହି ରୂପାନ୍ତରକୁ ଯଥା ସ୍ଥାନରେ ସନ୍ନିବେଶିତ କରି ପ୍ରତ୍ୟେକରେ ସୋଦାହରଣ ବ୍ୟାଖ୍ୟା, ଟୀକାଟିପ୍ପଣୀପାଇଁ ପ୍ରୟୋଜନୀୟତା ଭାଷାକୋଷକାର ଯେତେ ଦୂର ଠଉରାଇ ପାରିଛନ୍ତି, ପାଠକମାନେ ସେତେ ଦୂର ଠଉରାଇ ପାରୁଥିଲେ, ଏ ବିଚରାର କହିବାର କହିବାର କିଛି ନାହିଁ । ଏହି ପନ୍ଥା ଅବଲମ୍ବନ କଲେ ଦୀନ ଦରିଦ୍ର, ବନ୍ୟା, ଦୁର୍ଭିକ୍ଷ ପ୍ରପୀଡିତ ହତଭାଗ୍ୟ ଉତ୍କଳର ଭାଷାକୋଷ କ୍ରମେ କ୍ରମେ ଦେଶର ରାଜକୋଷରୁ ତଥା ମହାରାଜାଙ୍କ ଧନକୋଷରୁ ସହସ୍ର ସହସ୍ର ଟଙ୍କା ସାହାଯ୍ୟ ପାଇ ଇନ୍ଦ୍ରଜାଲ ମାୟାପରି ଦିନକୁ ଦିନ ଫୁଲି

ଉଠିବ, ଏବଂ ବିଶିଷ୍ଟ, ଅବଶିଷ୍ଟ, ପରିଶିଷ୍ଟ, ପରିପୁଷ୍ଟ ହେଲେ ଖଣ୍ଡେ କାହିଁକି, ପୁଣି ପାଞ୍ଚ ଖଣ୍ଡରେ ପରିପୁଷ୍ଟ ହେବ । (ସହକାର : ୧୪ଶ ଭାଗ, ୧୧ଶ ସଂଖ୍ୟା: ପୃ. ୧୦୫୪- ୧୦୬୧)

୭. ଏଥିରେ ଓଡିଶାର ବିଭିନ୍ନ ପ୍ରାନ୍ତ ପ୍ରଚଳିତ, ଅପ୍ରଚଳିତ ଏତେ ଇତର, ଦେଶଜ, ବୈଦେଶିକ ନାମ, କଚିରିଆ, ପ୍ରାକୃତ, ଅପ୍ରାକୃତ, ବଚନ, ପ୍ରବଚନ, କଥା, ଢଗ, ସହଚର, ଗ୍ରାମ୍ୟ, ହାକିମିଆ, ଶ୍ଳୀଳ, ଅଶ୍ଳୀଳ ଶବ୍ଦ ଅଛି ଯେ ଓଡିଶାର ଏ୍କ ପ୍ରାନ୍ତବାସୀ ଅନ୍ୟପ୍ରାନ୍ତ ଶବ୍ଦ ବୁଝିବା ବଡ କଠିନ ।

୮. ପୂର୍ବଥରମାନଙ୍କରେ ଯାହା ଦେଖାଇ ଦିଆଯାଇଛି, ତାହା ପଢି ହୁଏତ କେହି ଭାବି ପାରନ୍ତି ଯେ ସମଗ୍ର ଗ୍ରନ୍ଥଟା ତ ଏପରି ଅଶ୍ଳୀଳ ଅର୍ଥାତ୍ 'ଅଶ୍ଳୀଳ' ହୋଇଛି, ଆଉ ପୁଣି ଅଶ୍ଳୀଳତାର କଥା କାହିଁକି ? ସେପରି ଯେବେ କି, ଭାବିଥା'ନ୍ତି, ତାହା ଭୁଲ୍ । ଗ୍ରନ୍ଥର ଗୌରମବୟ ଅଧାୟ ଏର୍ପ୍ୟନ୍ତ ଆରମ୍ଭ ହୋଇନାହିଁ । ସଂଗ୍ରାହକ ଭାଷାର ଅଶ୍ଳୀଳତା ଭିତରେ ଯେ ଶ୍ଳୀଳତାର ସୀମା ଲଙ୍ଘନ କରି ଜାତିକି ଶବ୍ଦ ସମ୍ଭାର ଦାନ କରିଛନ୍ତି, ସେହି କଥା କେବଳ ଏଠାରେ କୁହାଯାଉଛି । XX ପ୍ରହରାଜଙ୍କର ଅଶ୍ଳୀଳ ଶବ୍ଦ ପ୍ରତି ନିତାନ୍ତ ଯଦି ଏତେ ମମତା ହେଲା ଏବଂ ନିତାନ୍ତ ପକ୍ଷରେ ସେହି ସବୁ ଶବ୍ଦ ଯେବେ'କୋଷ' ରେ ସ୍ଥାନ ଦେବା ଦରକାର ପଡିଲା, ତାହା ହେଲେ କେବଳ ମୂଳ ଶବ୍ଦଟିମାନ ଦେଇ (ବିଶିଷ୍ଟ ପ୍ରୟୋଗ Idioms, ବାକ୍ୟାଂଶ Phrasେନ ଦେଇ) ତା ପାଖରେ କେବଳ ଅଶ୍ଳୀଳ ବୋଲି ଲେଖି ଦେଇଥିଲେ କଣ ଚଳି ନଥା'ନ୍ତା ? ନାହିଁ ଯଦି ଶବ୍ଦର ବିଶେଷ ବ୍ୟାଖ୍ୟା ଦେବା ଆବଶ୍ୟକ ହେଲା, ତେବେ ସେ ସବୁକୁ ଭାଷାର ଆବରଣ ଭିତରେ ରଖି କେବଳ ଦିଇ ଚାରି ପଦରେ କ'ଣ ବ୍ୟକ୍ତ କରାଯାଇପାରି ନଥା'ନ୍ତା ? ତାହା ନହୋଇ ସେଥିରେ ଯେଉଁ ଟୀକା, ଟିପ୍ପଣୀ, ଶିଷ୍ଟ ପ୍ରୟୋଗ, ଉଦାହରଣ, ତର୍ଜମା ହୋଇଛି, ତାହା ଅଶ୍ଳୀଳତାର ସୀମାକୁ ବଳି ପଡ଼ିଛି। ୨୨୨୩ ପୃଷ୍ଠାର ଦ୍ୱିତୀୟ ସ୍ତମ୍ଭ ପଞ୍ଚମ ଧାଡ଼ିରେ 'ଭଉଣୀ' ସହିତ ଏବଂ ୨୨୯୪ପୃଷ୍ଠାର ପ୍ରଥମ ସ୍ତମ୍ଭ ୩୭ ଧାଡ଼ିରେ ଘୋଡ଼ା ସହିତ ସମ୍ପର୍କ ରଖି ଯେଉଁ ଶବ୍ଦ ଗଢ଼ାଯାଇ ଉଦାହରଣ ଦିଆଇଛି,ତାହା ଓଡ଼ିଆ ଜାତୀୟ ଚରିତ୍ରକୁ କେତେ ଦୂର ଫୁଟାଇଛି-ପାଠକେ ବୁଝିପାରିବେ। ସେହିଭଳି ସମସ୍ତ ଶବ୍ଦ ଯେବେ 'ପାଳକୋଷ 'ରେ ସ୍ଥାନ ପାଇବା କଥା, ତାହା ହେଲେ ତ ଶ୍ୱଶୁର, ରାଣ୍ଡ, ପରୁପୁରୁଷ ପଠାଣ ପ୍ରଭୃତି ନା ନା ଶବ୍ଦ ସଙ୍ଗେ ସଂପର୍କ ରଖା ନିତାନ୍ତ ଇତର, ଅଶ୍ଳୀଳ ପ୍ରୟୋଗ ମାନ ଲୋକମୁଖରେ ଖୋଜିବାକୁ ହେବ। (ସହକାର :୧୪ଶ ଭାଗ,୧୨ଶ ସଂଖ୍ୟା, ପୃ.୧୧୫୨-୧୧୫୭)

୯.ବିଷୟ ନିର୍ବାଚନରେ କିପରି ଅସମତା ଅଛି, ସେ ବିଷୟରେ ବେଶି କିଛି ନ କହି, ଭାଷା କୋଷର ପୃଷ୍ଠା ଚିହ୍ନାଇ ଦେଲେ ଚଳିବ। ୩୨୯୦ ପୃଷ୍ଠା ଠାରୁ

୩୨୯୩ ପୃଷ୍ଠ ପର୍ଯ୍ୟନ୍ତ ଢିଙ୍କିର ବ୍ୟାଖ୍ୟା ତର୍ଜମାରେ ପାଞ୍ଚଟି ସ୍ତମ୍ଭ ପୂର୍ଣ୍ଣ। ତାହା ଭିତରେ 'ଢିଙ୍କି ଗୀତ', ଢିଙ୍କି ସମକାଇବା ଗୀତ, ପ୍ରଭୃତି ଦିଆଯାଇଛି। ଢିଙ୍କି ଗିଳିବା, ଢିଙ୍କି ଗିଳାଇବା, ଢିଙ୍କିରେ ଧାନ ପେଲିବା ପ୍ରଭୃତି ବିଷୟରେ ଯେବେ ଗୋଟିଏ ଗୋଟିଏ ଗୀତ ଦିଆଯାଇପାରିଥାଆ'ନ୍ତା, ତାହା ହେଲେ ଦଶ ପଚାଶ ସ୍ତମ୍ଭ ସ୍ଥାନ ପାଇପାରିଥାଆନ୍ତା। 'ଢିଙ୍କି' ପ୍ରତି ଏତେ ପକ୍ଷପାତ,ଅଥଚ ଚାନ୍ଦବାଲି ପରି ପ୍ରସିଦ୍ଧ ପ୍ରାଚୀନ ବନ୍ଦର ବିଷୟରେ ପାଞ୍ଚ ସ୍ତମ୍ଭ ତ ଦୂରର କଥା, ପାଞ୍ଚର ଦୁଇଗୁଣ ଧାଡ଼ି ସୁଦ୍ଧା ନାହିଁ। xx

୧୦ ଆଉ ଗୋଟିଏ ବିଷୟ ଲେଖି ଏ କିସ୍ତିର ସମାଲୋଚନା ଶେଷ କରିବି । ଗ୍ରନ୍ଥକାର ଭାଷାକୋଷର ଭୂମିକାରେ ଶିଷ୍ଟ ପ୍ରୟୋଗ ବିଷୟ ଅବତାରଣା କରି ଓଡ଼ିଶାର କେତେକ ଲେଖକଙ୍କ ନାମ ଦେଇଛନ୍ତି । ସେହି ଲେଖକମାନଙ୍କ ଲେଖାରୁ ଭାଷାକୋଷରେ ନିହିତ ଶବ୍ଦର ବ୍ୟବହାର ଉଦ୍ଧାର କରିଛନ୍ତି । ଏ ସମ୍ପର୍କରେ ମଧ୍ୟ ଗ୍ରନ୍ଥକାର ଠିକ୍ ଢୁକିପାରି ନାହାନ୍ତି ବୋଲି ମନେହୁଏ। xx ମୁଁ ନୂତନ ଯୁବକ ଲେଖକମାନଙ୍କ ବିଷୟରେ କହୁ ନାହିଁ। କିନ୍ତୁ ସ୍ୱର୍ଗୀୟ ଉତ୍କଳମଣି ଗୋପବନ୍ଧୁ, ପଣ୍ଡିତ ଗୋଦାବରୀଶ, କବି ପଦ୍ମ ଚରଣ, କବି ଲକ୍ଷ୍ମୀକାନ୍ତ, କବି କୃଷ୍ଣ ମୋହନ, ଲେଖକ ରାମଚନ୍ଦ୍ର ଆଚାର୍ଯ୍ୟ, ସାହିତ୍ୟିକ ଶଶିଭୂଷଣ ରାୟ ପ୍ରଭୃତିଙ୍କ ନାମ ଗନ୍ଧ ସେଥିରେ ନାହିଁ। ଏହି ସମ୍ପର୍କରେ ଆଉ ଗୋଟିଏ କଥା ମଧ୍ୟ ଉଲ୍ଲେଖ କରାଯିବା ଉଚିତ୍ । ଗ୍ରନ୍ଥକାର ଶବ୍ଦର ବ୍ୟବହାର ଦେଖାଇବା ନିମନ୍ତେ କିପରି ଶବ୍ଦ ସବୁ ନିର୍ବାଚନ କରିଛନ୍ତି, ଦେଖାଯାଉ। ସେଥିରୁ ତାଙ୍କ ରୁଚି ବିଷୟରେ ପାଠକମାନଙ୍କର ସମାନ ସୁମତ ହେବ ନାହିଁ। ଗୋଟିଏ ଦୁଇଟି ଉଦାହରଣରୁ ଏହାର ସତ୍ୟତା ବୁଝାଯିବ-୨୯୬୧ ପୃଷ୍ଠାରେ 'ଜାନୁ-ଯଉବନ' ଶବ୍ଦ ତଳେ ଶିଷ୍ଟ ପ୍ରୟୋଗ ଛଳରେ ଢଗ ଦିଆଯାଇଛି-

ରୁଣୁଝୁଣୁ ହୋଇ ଗାଧୋଇ ପାଧୋଇ
ନଈରୁ ଆସୁଛି ଗୋରୀ
ଜାନୁଯଉବନ ସବୁ ଦିଶୁଅଛି
ସରୁ ଲୁଗା ଫୁଟି କରି ।

୩୬୦୪ ପୃଷ୍ଠାରେ 'ଥନ ଯଉବନ' ଶବ୍ଦ ତଳେ ଅଛି-

ଆଗରେ କାଳିଆ ! ନାହିଁ କରୁଥିଲୁ
ସିଙ୍ଘାଣି ନାକକୁ ଦେଖି
ଏବେରେ କାଳିଆ ଝୁରି ମରୁଅଛୁ
'ଥନ ଯଉବନ' ଦେଖି।

୨୯୫୬ ପୃଷ୍ଠାରେ 'ଜାତି ନେବା' ଶବ୍ଦ ତଳେ ଅଛି-

ପିନ୍ଧି କରି ପାଟ ଶାଢ଼ୀ

ଜାତି ନବ ବୋଲି ପଠାଣ ଟୋକାଟା
ଦୁଆର ବସିଲା ମାଡ଼ି ।

ସେ ଯାହା ହେଉ, ଏପରି ଢ଼ଗଢ଼ମାଳିରୁ ଶିଷ୍ଟ ପ୍ରୟୋଗ ବାହାର କରିବାକୁ ହେଲେ ଉତ୍କଳରେ କ୍ଷେତ୍ରରେ ଅଭାବ ନାହିଁ । ଏ କ୍ଷେତ୍ରମାନଙ୍କ ମଧ୍ୟରେ ପ୍ରଧାନ କ୍ଷେତ୍ର ହେଉଛି 'ଶ୍ରୀକ୍ଷେତ୍ର' । ଶ୍ରୀକ୍ଷେତ୍ରରେ ରଥଯାତ୍ରା ସମୟରେ ଥରେ ପ୍ରହରାଜ ମହାଶୟ ନିଜେ ଆସି କିମ୍ବା ତାଙ୍କର ଭାଷାକୋଷ ସହକର୍ମୀମାନଙ୍କ ମଧ୍ୟରୁ କାହାକୁ ପ୍ରତିନିଧି ପଠାଇ ରଥ ଉପର ଗଉଣାରୁ ବିଷୟ ସଂଗ୍ରହ କରି ନେଲେ, ତାଙ୍କଦ୍ୱାରା ଭାଷାକୋଷରେ ନିହିତ ଏକ ଶ୍ରେଣୀର ଶବ୍ଦମାନଙ୍କପାଇଁ ଯଥେଷ୍ଟ ଶିଷ୍ଟପ୍ରୟୋଗ ପାଇଯିବେ ।(ସହକାର : ୧୫ଶ ଭାଗ/ ୨ୟ ସଂଖ୍ୟା:ପୃ ୧୪୭-୧୫୨)

୧୧.କେହି କେହି କହିବେ, ତାଙ୍କର ଭୌଗୋଳିକ ଜ୍ଞାନର ଅଭାବ ଅଛି, ଆଉ କେହି କେହି କହିବେ, ତାଙ୍କର ସ୍ଥାନାସ୍ଥାନ ବା କାଳାକାଳ ବିଚାର ନାହିଁ । ଏପରି କେତୋଟି ବିଷୟ ହିଁ ତଳେ ଦିଆଯାଉଛି । ଗ୍ରନ୍ଥର ୧୦୩ ପୃଷ୍ଠାର 'ଅଙ୍କ ନାମା ଧନ୍ଦା' ଶବ୍ଦ ତଳେ ଲେଖାଯାଇଛି- "ରାଜମହେନ୍ଦ୍ରୀର କାବେରୀ ନଦୀ କୂଳେ ବାସ କରୁଥିବା..." ରାଜମହେନ୍ଦ୍ରୀ କାବେରୀ ନଦୀ ଠାରୁ ଛଅଶହ ମାଇଲ୍ ଦୂରରେ । ଲୋକ କିପରି ଏକ ସମୟରେ କାବେରୀ ନଦୀ କୂଳରେ ଓ ରାଜମହେନ୍ଦ୍ରୀରେ ରହି ପାରେ, ତାହା ପ୍ରହରାଜେ କହିପାରିବେ ? ୨୩୯୩ ପୃଷ୍ଠାରେ ଲେଖା ଅଛି - "ଗୋଦାବରୀ ମାନ୍ଦ୍ରାଜ ପ୍ରଦେଶର ଗୋଟିଏ ଜିଲ୍ଲା"- ସ୍କୁଲର ଛାତ୍ରମାନେ କହି ପାରିବେ ଯେ ମାନ୍ଦ୍ରାଜ ପ୍ରଦେଶରେ ଗୋଦାବରୀ ବୋଲି କୌଣସି ଜିଲ୍ଲା ନାହିଁ । ପୂର୍ବ ଗୋଦାବରୀ ଓ ପଶ୍ଚିମ ଗୋଦାବରୀ ବୋଲି ଦୁଇଟି ଜିଲ୍ଲା ଅଛି । ଗଞ୍ଜାମ ଜିଲ୍ଲାର ଗୋପାଳପୁର ଗୋଟିଏ ପ୍ରଧାନ ସ୍ଥାନ । ହଜାର ହଜାର ଓଡ଼ିଆ ପ୍ରତିଦିନ ସେହି ବାଟେ ବ୍ରହ୍ମଦେଶ ଯାଉଛନ୍ତି । ସ୍ୱାସ୍ଥ୍ୟନିବାସ ରୂପେ ତାହା ଶତ ଶତ ଲୋକଙ୍କୁ ଆକର୍ଷଣ କରୁଛି । ମାତ୍ର ସେହି ଗୋପାଳପୁରକୁ ପ୍ରହରାଜେ କୋଷରେ ସ୍ଥାନ ଦେଇନାହାନ୍ତି । ଗଞ୍ଜାମ, ଆସିକା, ଉଦୟଗିରି, ଛତ୍ରପୁର ଆଦି କି ଦୋଷ କଲେ ? କୋଷରେ ତ ଓଡ଼ିଶାର ଓ ଓଡ଼ିଶା ବାହାରର ଅନେକ ଗ୍ରାମ, ସହର, ଜିଲ୍ଲାର ନାମ ପରିଚୟ ଦିଆଯାଇଛି-କେନ୍ଦ୍ରାପଡ଼ା, ଖୋରଧା, କଟକ, ଗୀର୍ଣ୍ଣାର କାନପୁର, ଅକ୍ସଫୋର୍ଡ଼ ପ୍ରଭୃତି ସ୍ଥାନ ପାଇଛି । ଛତ୍ରପୁର, ଗଞ୍ଜାମ ଜିଲ୍ଲାର ରାଜଧାନୀ । ଜିଲ୍ଲାର ରାଜଧାନୀ ହିସାବରେ ବାଲେଶ୍ୱର, କଟକ, ପରି ତାହା ପ୍ରସିଦ୍ଧ । ମାତ୍ର ଲେଖକ ଯେତେବେଳେ ଖୋଦ୍ ଗଞ୍ଜାମ ଜିଲ୍ଲାକୁ ଗ୍ରନ୍ଥରେ ସ୍ଥାନ ଦେଇ ନାହାନ୍ତି, ରାଜଧାନୀକୁ ବା ଦେବେ କାହିଁକି ? ବିଶେଷରେ ଗ୍ରନ୍ଥ ଭିତରେ ଅନେକ ଶବ୍ଦ ଭିତରେ ଅନେକ ଶବ୍ଦ ପାଖେ 'ଗଞ୍ଜାମ'ପ୍ରୟୋଗ ବୋଲି ଲେଖାଅଛି । ମାତ୍ର ସେଇ ଗଞ୍ଜାମଟା ଜିଲ୍ଲା କି ପାହାଡ଼, କି ସମୁଦ୍ର ବାହାରେ, ପାଠକେ କି ବୁଝିବେ ? ଗୋପୀଭାଷା ଓଡ଼ିଶାର ଗୋଟିଏ ଅତି ପ୍ରାଚୀନ ପ୍ରସିଦ୍ଧ ଲେଖା ।ତାହା

ଘରେ ଘରେ ପଢ଼ା ଯାଏ। ମାତ୍ର ଭାଷାକୋଷ ପ୍ରଣେତା ତାଙ୍କ ଗ୍ରନ୍ଥର ୨୩୨୧ ପୃଷ୍ଠାରେ ଗୋପୀଭାଷାର ଲେଖକ ରୂପେ କେଉଁ ଆଡୁ ଟାଣି ଆଣି ଭକ୍ତ ଚରଣ ଦାସଙ୍କୁ ଥୋଇଛନ୍ତି। ଭକ୍ତ ଚରଣ ମଥୁରା ମଙ୍ଗଳର ଲେଖକ । ଗୋପୀ ଭାଷା, ମଥୁରା ମଙ୍ଗଳ ଦୁଇଟି ଅଲଗା ଅଲଗା ଗ୍ରନ୍ଥ ଜାଣିଥିଲେ, ବୋଧହୁଏ ଗ୍ରନ୍ଥକର୍ତ୍ତା ଏପରି ପ୍ରମାଦ ପଙ୍କରେ ଗୋଡ଼ ପୂରାଇ ନଥା'ନ୍ତେ। ଆଉ ଏଣିକି ପଞ୍ଚମ ଖଣ୍ଡ ବାହାର ନକରି ତାହାରି ସ୍ଥାନରେ ଶୁଦ୍ଧିପତ୍ର ଖଣ୍ଡ ସଂକଳନରେ ଲାଗିଗଲେ ଲୋକେ ବହୁ ପ୍ରମାଦରୁ ରକ୍ଷା ପାଇବେ।(ସହକାର:୧୫ଶ ଭାଗ'୫ମ ସଂଖ୍ୟା:ପୃଷ୍ଠା ୪୪୪-୪୪୭)

୧୯୩୪ ମସିହା ପରେ ଗୋଦାବରୀଶ ସହକାର ପୃଷ୍ଠାରେ ନିରବ ରହିଛନ୍ତି ଏବଂ ନିଆଁଖୁଣ୍ଟା ପତ୍ରିକାରେ ତାଙ୍କର କ୍ରୋଧାଗ୍ନି ସର୍ବଗ୍ରାସୀ ମାନସିକତାରେ ସତେଯେପରି ଅନ୍ଧ ହୋଇଯାଇଛି । ଏଠାରେ ତାଙ୍କର ଆକ୍ଷେପର କେତେଗୋଟି ଉଦାହରଣ ଦିଆଯାଇପାରେ।

୧. ଶ୍ରୀଯୁକ୍ତ ଗୋପାଳ ଚନ୍ଦ୍ର ପ୍ରହରାଜଙ୍କ ଦ୍ୱାରା ସମ୍ପାଦିତ 'ପାଳକୋଷ' ଗ୍ରନ୍ଥରେ ଉତ୍କଳ ଶବ୍ଦର ଅର୍ଥ ଭାରବାହକ,ବେହେରା,carrierବୋଲି ଲେଖାଯାଇଛି। ବେଦରୁ ଆରମ୍ଭ କରି ସଂସ୍କୃତ ପୁରାଣ,ଶାସ୍ତ୍ର,ତନ୍ତ୍ର,କାବ୍ୟରେ ଉତ୍କଳର ଏ କଦର୍ଥ ଲେଖା ନାହିଁ।କେବଳ ପାଳକୋଷରେ ଅଛି।ପଡ଼ୋଶୀ ଜାତି ଉତ୍କଳର ଏ ଅର୍ଥ ସୃଷ୍ଟି କରିଛନ୍ତି ଏବଂ ଓଡ଼ିଶାର ବିଜ୍ଞ ସାହିତ୍ୟିକ,ଅପମାନକୁ ବରଣ କରି ଓଡ଼ିଆ ଭାଷାର ପାଳକୋଷରେ ଗ୍ରହଣ କରିଛନ୍ତି। ଓଡ଼ିଆ ଜାତି ଏହା ମୁଣ୍ଡ ପାତି ସହିଛି। ଓଡ଼ିଆ ଯୁବକ ଏ ଅର୍ଥ ପଢି ନିରବ ରହିଛି ଓ ଓଡ଼ିଶାର ମନ୍ତ୍ରୀମଣ୍ଡଳ ଏ ଗ୍ରନ୍ଥପାଇଁ ଜାତିର କୋଷଭଣ୍ଡାରରୁ ଅର୍ଥଦାନ କରିଛନ୍ତି । ଏଥିରେ କି ପ୍ରତିକାର ନାହିଁ ?

ପତ୍ରିକାର ମୁଖ ପୃଷ୍ଠା ଓ ଷଷ୍ଠ ପୃଷ୍ଠାରେ ଏକ ଚିତ୍ର ରହିଛି । ତଳେ ଲେଖାଯାଇଛି ଉତ୍କଳ ଭାରବାହକ। ଚିତ୍ରର ଆଗରେ ରହିଛନ୍ତି ଗୋପାଳ ଚନ୍ଦ୍ର ପ୍ରହରାଜ ଓ ପଛରେ ପୀତାମ୍ବରୀ ଦେବୀ । (ନିଆଁ ଖୁଣ୍ଟା :୨.୬.୧୯୩୮ / ଗୁରୁବାର - ବ୍ରହ୍ମପୁର / ପୃ.୦୬)

୨ ଅମରକୋଷରେ ଏବଂ ପ୍ରହରାଜଙ୍କ ପାଳକୋଷରେ ଏତେ ନାଁ ଥାଉ ଥାଉ ନିଆଁଖୁଣ୍ଟା ନାଁ ଉପରେ ଯେ ଏତେ ପ୍ରେମ କାହିଁକି ବର୍ଷିଗଲା, ତା'ର କୈଫିୟତ ଯେତେବେଳେ ଲୋକେ ପଚାରିଲେଣି,ସମସ୍ତଙ୍କୁ ମୌଖିକ ଉତ୍ତର ଦେଲେ କବିବରଙ୍କ ଅଂଶୁପା ହ୍ରଦ କଥା ତ ତେଣିକି ଥାଉ, ଖୋଦ୍ କାସ୍ପିୟାନ ସାଗର ମଧ୍ୟ ଶୁଖିଯିବାକୁ ପଡ଼ିବ। (ନଆଁ ଖୁଣ୍ଟା : ତା୨୩.୩.୩୮)

୩. ପଣ୍ଡିତ ଗୋପାଳ ଚନ୍ଦ୍ର ପ୍ରହରାଜଙ୍କ ପାଳକୋଷ କାମ ଶେଷ ହୋଇଛି।ଏଣିକି ସେ ଦେଶରେ ନେତା କୋଷ କାମରେ ହାତ ଦେଲେ ନିଶ୍ଚୟ କୃତକାର୍ଯ୍ୟ ହେବେ।ତାଙ୍କୁ ପ୍ରଧାନ ମନ୍ତ୍ରୀଙ୍କ ଭାଷାରେ ସହାୟ କରିବାକୁ ତଳେ କେତୋଟି ସୂଚନା ଦିଆଗଲା ।

ସବ୍ ଜାନତା ନେତା : ନୀଳକଣ୍ଠ ଦାସ

ଚାଷୀ ନେତା : ନବକୃଷ୍ଣ ଚୌଧୁରୀ

ଅସାଧାରଣ ନେତା: ଗୋପ ଚୌଧୁରୀ

(ନିଆଁ ଖୁଣ୍ଟା : ତା ୧.୧୦.୩୮ /ପୃ.୨)

୪. ଓଡ଼ିଶାର ଉପର ମହଲରୁ କେତେଜଣ ବଛାବଛା ବଡ଼ଲୋକ ସବୁ ତୀର୍ଥକରି ବାହାରିଛନ୍ତି। ପ୍ରହରାଜେ ପାଳକୋଷ ନୈବେଦ୍ୟ ଦେଇ ଯମୁନା କୂଳରେ ଲାଟ ଦେବତାଙ୍କୁ ପୂଜା କରିବାକୁ ଯାଉଛନ୍ତି।ଶାସ୍ତ୍ରରେ ଅଛି ତ ସ୍ତ୍ରୀ ଅଭାବରେ ସ୍ତ୍ରୀର ସ୍ୱର୍ଣ୍ଣ ମୂର୍ତ୍ତି ଧରି କାମ କରାଯାଇପାରେ।ଭାଗ୍ୟକୁ ସୁନାର ରଙ୍ଗଟା ପୀତ ବର୍ଣ୍ଣ।(ମୁଖପୃଷ୍ଠାରେ ପ୍ରହରାଜଙ୍କ ଦିଲ୍ଲୀଯାତ୍ରାର ଛବି ରହିଛି ଓ ତଳେ ଲେଖାଯାଇଛି- 'ଓଡ଼ିଶାରେ ପୁଣ୍ୟ ଅର୍ଜନ'। ପ୍ରହରାଜଙ୍କ ଶାଳୀ ପୀତାମ୍ବରୀ ଦେବୀଙ୍କୁ ପୀତବର୍ଣ୍ଣ ଶବ୍ଦରେ ବ୍ୟଙ୍ଗ୍ୟ କରାଯାଇଛି। (ନିଆଁଖୁଣ୍ଟା : ୨ୟ ବର୍ଷ/ ୧୪ଶ ସଂଖ୍ୟା/ପୃ.୧୩)

୫. ଓଡ଼ିଶାର ବିରାଟ ଅପମାନ:ପାଳକୋଷ (ନିଆଁଖୁଣ୍ଟା: ୨ୟ ବର୍ଷ/ ୨୩ତମ ସଂଖ୍ୟା/ ପୃ.୧୧)

୬. ଆମ ନୂଆ ବର୍ଷ : ଗୋପାଳ ଚନ୍ଦ୍ର ପ୍ରହରାଜ ଓଡ଼ିଆଙ୍କୁ ଗଧ ବୋଲି କହି ମଧ ଚାନ୍ଦା ଆଦାୟ କରିପାରେ।(ନିଆଁଖୁଣ୍ଟା: ୨ୟ ବର୍ଷ/ ୨୮ଶ ସଂଖ୍ୟା /ପୃ.୨)

୭. ପ୍ରହରାଜଙ୍କ ବିହାରୀ କୋଷ: ଏ ନାଁରୁ ହଠାତ୍ ପାଠକମାନେ ମନେକରିବେ ଯେ, ଓଡ଼ିଶାର ଶ୍ରଦ୍ଧେୟ ପାଳକୋଷ ଲେଖକ ରାୟବାହଦୂର ଗୋପାଳଚନ୍ଦ୍ର ପ୍ରହରାଜ ଓଡ଼ିଆ ଭାଷା ପରେ, ବିହାରୀ ଭାଷା ଉପରେ ଏକ କୋଷ ଲେଖୁଛନ୍ତି; କିନ୍ତୁ ତାହା ଠିକ୍ ନୁହେଁ। ଏ ହେଉଛି ପ୍ରହରାଜ+ ଓଡ଼ିଶାର ପ୍ରଧାନ ଦସ୍ୟୁ ବିହାରୀ ନାଏକ + ତା'ର ଅର୍ଥ ଭଣ୍ଡାର ବା କୋଷ =ପ୍ରହରାଜଙ୍କ ବିହାରୀ କୋଷ।(ନିଆଁ ଖୁଣ୍ଟା: ୨ୟ ବର୍ଷ, ୨୮ଶ ତମ ସଂଖ୍ୟା ପୃ ୧୩/ ୧୪)

୮. "ବୋଲ ହରି ହରି" ଶୀର୍ଷକ ଏକ କବିତା

'ପ୍ରତିଦିନ' ଛାଡ଼ି କହ 'ରୋଜ' ନିତିନିତି
ପାଳକୋଷ କାଢ଼ି ରଖ, ପାଦାଣ୍ଡିରେ ପ୍ରୀତି।
ପୋଲେନ କହ ହେ ପାଳକୋଷ ଘୋଷି ଘୋଷି
ଚିକ୍କଣ ଅର୍ଥରେ ଲେଖିଛନ୍ତି ପାଳଚାଷୀ।
ଓଡ଼ିଶାର ଅର୍ଥ 'ଉଡ଼େ'ବଙ୍ଗାଳୀଙ୍କ ଗାଳି
ଲେଖିଛନ୍ତି ପ୍ରହରାଜେ ବୋଲ ହରି ହରି।

୯. କେଉଁଠୁ କ'ଣ ମିଳେ । ବହୁତ କାଗଜ : ପାଳକୋଷ ଆଶ୍ରମରେ

(ନିଆଁ ଖୁଣ୍ଟା/ ୨୮ଶ ତମ ସଂଖ୍ୟା, ପୃଷ୍ଠା ୨)

୧୦. ଦିଲ୍ଲୀଯାତ୍ରା

(କଳା କଳେବର କହ୍ନାଇ ବୃତ୍ତେ ଗୀୟତେ)

ପାଳକୋଷ ପ୍ରାୟ ପାଳକେ ପଦେ ରଖ ହେ ଚିତ୍ତ
କରନ୍ତି ସେ ଦିଲ୍ଲୀ ବିଜୟ ଦାଣ୍ଡେ ଦେଖ ସଙ୍ଗାତ ।

XX

ପାଳକୋଷ ପିତା ମାତା ଏ ଦେଖ ଯାଆନ୍ତି ଦାଣ୍ଡେ
ଓଡ଼ିଆକୁ ଲେଖି ପାରନ୍ତି, ଭାରବାହୀ ଯେ ଚାଣ୍ଡେ ।
ଏଦେଶ ଧନରେ ପାଳିତ ପ୍ରିୟ ଏ ପାଳକୋଷ
ଘର ନିଆଁ ଏ ଯେ ଅଣ୍ଟିରେରଖ ନାହିଁ କି ଦୋଷ

XX

ଜାତି ନାଆଁ ପକା ବୀର ଏ ଦେଇ ଜାତିକି ଗାଳି
ତଥାପି ବୋଲାନ୍ତି ଦେଶେ ଏ ଜ୍ଞାନ ବିଭବଶାଳୀ ।

ପତ୍ରିକାର ମୁଖପୃଷ୍ଠାରେ ଗୋପାଳ ଚନ୍ଦ୍ର ପ୍ରହରାଜ ଓ ପୀତାମ୍ବରୀ ଦେବୀଙ୍କ ବ୍ୟଙ୍ଗ୍ୟଚିତ୍ର ରହିଛି । ଭାଷାକୋଷ/ପାଳକୋଷକୁ ମଥାରେ ଥୋଇ ଉଭୟ ଦିଲ୍ଲୀ ଯାତ୍ରା କରୁଛନ୍ତି । (ନିଆଁ ଖୁଣ୍ଟା:ଦ୍ୱିତୀୟ ବର୍ଷ/ ୧୮ଶ ତମ ସଂଖ୍ୟା-୧୯୪୦)

**ଗୋପାଳ ଚନ୍ଦ୍ର ପ୍ରହରାଜଙ୍କ 'ପାଠ୍ୟ ପୁସ୍ତକ' ସମାଲୋଚନାର ପ୍ରତିବାଦ**

ଏବେ ତାକୁ ଅଲଗା ଭାବରେ ବହି ଆକାରରେ ଛପାଇଛନ୍ତି । ଖାଲି ସେ ଛପାଇ ନାହାନ୍ତି, ସାରା ଓଡ଼ିଶା ପ୍ରଦେଶରେ ଭାଷାକୋଷ ଓରଫ୍ ପାଳକୋଷ ବାବଦରେ ରାଜା ମହାରଜାଙ୍କ ଠାରୁ ପାଇଥିବା ଟଙ୍କାକୁ ଅଫିମ ଖର୍ଚ୍ଚବାଦ, ଡାକଟିକଟ ଖର୍ଚ୍ଚ କରି, ନାନା ଲୋକଙ୍କ ଠାକୁ ପଠାଇବାରେ ଲାଗିଛନ୍ତି । XX ତାଙ୍କ ପରି ସଦାଚାରୀ ତଥା ସତ୍ୟ ସମାଚାରୀ ପଣ୍ଡିତ ଥାଉ ଥାଉ ଓଡ଼ିଆ ସାହିତ୍ୟ ଭାସିଗଲା ବୋଲି କାହିଁକି ଚିତ୍କାର କରୁଛନ୍ତି । କିଛି ଜରୁରୀ ନ ପଡ଼ିଲେ ପ୍ରହରାଜେ କଲମ ଧରନ୍ତି ନାହିଁ । XX ପଣ୍ଡିତ କୁଳମଣି ଦାଶଙ୍କ ବହି ପାଠ୍ୟପୁସ୍ତକ କମିଟ କାଟି ଦେବାରୁ XX ଏ ସମାଲୋଚନା ଲେଖାଗଲା । XX ଓଡ଼ିଆ ବୋଲି ଓଡ଼ିଶାର ନିର୍ଭୀକ ଓଡ଼ିଆ ଅଛନ୍ତି ବୋଲି ସେ ଗାଳି ଦେଇ ରାୟବାହାଦୂର ପ୍ରଶଂସା ଓ ହଜାର ଟଙ୍କା ପାଉଛନ୍ତି ।

(ନିଆଁ ଖୁଣ୍ଟା:୧ମ ବର୍ଷ ୪୭ଶ ସଂଖ୍ୟା ତା ୨୬.୩.୩୮ ପୃ.୬-୭)

ଗୋଦାବରୀଶ ମହାପାତ୍ରଙ୍କ ପରି କାନ୍ତକବି ଲକ୍ଷ୍ମୀକାନ୍ତ ମହାପାତ୍ର ଆପଣା ସମ୍ପାଦିତ 'ଡ଼ଗର' ପତ୍ରିକାର ବିଭିନ୍ନ ସଂଖ୍ୟାରେ ଶ୍ରୀ ଶ୍ରୀ ହନୁମନ୍ତ କପବର ନକଲ ନବିସ୍ ଛଦ୍ମନାମରେ ବହୁ ଶବ୍ଦର

ଲାକ୍ଷଣିକ ଅର୍ଥ ଉଲ୍ଲେଖ କରିଛନ୍ତି । ସଂକଳିତ ଶବ୍ଦଗୁଡ଼ିକ ପାରୋଡ଼ି ବା ଲାଳିକା ଶ୍ରେଣୀର । ସଂକଳନର ଶୀର୍ଷକ ରଖାଯାଇଛି 'ଅର୍ଦ୍ଧଚନ୍ଦ୍ର ଦେଢ଼ିଆ ଭାଷାକୋଷ' । ଏପରିକି ଶ୍ରୀମତୀ ସରଳା ଦେବୀ ଆପଣାର 'ଭାଷା ବ୍ୟବଧାନ' ପ୍ରବନ୍ଧରେ ପ୍ରହରାଜଙ୍କ ଭାଷା ବିଚାର ପ୍ରତି କଟୁ ଟୀପ୍ପଣୀ ଦେଇଛନ୍ତି ।[୩୪]

ଭାଷାକୋଷ ସଂକ୍ରାନ୍ତରେ ଉପର୍ଯ୍ୟୁକ୍ତ ମନ୍ତବ୍ୟ ଅପ୍ରାସଙ୍ଗିକ ନୁହେଁ। ପ୍ରହରାଜ କେତେକ ଶବ୍ଦ ପ୍ରତି ଅଧିକ ଦୁର୍ବଳତା ପ୍ରକାଶ କରିଥିଲା ବେଳେ, ଆଉ କେତେକ ପ୍ରତି ପ୍ରାୟତଃ ଗୁରୁତ୍ୱ ଦେଇନାହାନ୍ତି । ବହୁ ଶବ୍ଦର ବିଶଦ ଚର୍ଚ୍ଚା ମଧ୍ୟ ଅନାବଶ୍ୟକ ବୋଧ ହୋଇଛି । ସମକାଳୀନ ସାହିତ୍ୟ, ଏପରିକି ସେ ଆପଣା ରଚନାରେ ବ୍ୟବହାର କରିଥିବା ବହୁ ଶବ୍ଦ, ଶବ୍ଦକୋଷରେ ମିଳେ ନାହିଁ । ଏହା ଅକ୍ଷମଣୀୟ ଭ୍ରମ । ତେଣୁ ପ୍ରତ୍ୟେକ ଆଲୋଚକ କୋଷଗ୍ରନ୍ଥର ଅଭାବ ସମ୍ପର୍କରେ ତାଙ୍କୁ ସଚେତନ କରିଦେଇଛନ୍ତି । ମାତ୍ର ଆଲୋଚନା ଅନେକତ୍ର ଗଠନାତ୍ମକ ପରିବର୍ତ୍ତେ କୁତ୍ସାରଟନାରେ ଭାରାକ୍ରାନ୍ତ ହୋଇଛି । (୧)ଗୋରା ସରକାରଙ୍କ ପ୍ରତି ପ୍ରହରାଜଙ୍କ ମାତ୍ରଧିକ ଆନୁଗତ୍ୟ ପ୍ରଦର୍ଶନ; (୨)ପତ୍ନୀଙ୍କ ସହିତ ମନାନ୍ତର ଏବଂ ଶାଳୀ ପୀତାମ୍ବରୀ ଦେବୀଙ୍କ ସହ ସମ୍ପର୍କ; (୩) କଂଗ୍ରେସୀ ସତ୍ୟାଗ୍ରହୀମାନଙ୍କୁ ତୀବ୍ର ସମାଲୋଚନା; (୪) କୋଷଗ୍ରନ୍ଥ ସଂକଳନ ଉଦ୍ଦେଶ୍ୟରେ ରାଜା,ମହାରାଜା,ସମ୍ଭ୍ରାନ୍ତ ବ୍ୟକ୍ତିବିଶେଷ, ପଦସ୍ଥ ସରକାରୀ କର୍ମଚାରୀ, ବିଭିନ୍ନ ଅନୁଷ୍ଠାନ ଓ ସରକାରଙ୍କ ଆର୍ଥିକ ଅନୁଦାନ ଲାଭ; (୫) ଗ୍ରନ୍ଥରେ ସମଧର୍ମା ବ୍ୟକ୍ତିମାନଙ୍କ ପ୍ରତି ଅହେତୁକ ଗୁରୁତ୍ୱ ଏବଂ (୬) ଲୋକକଥିତ ଓ ଅଶ୍ଲୀଳ ଶବ୍ଦର ସଂଯୋଜନ ଓ ବ୍ୟାଖ୍ୟା ସେମାନଙ୍କୁ ପ୍ରତିକ୍ରିୟାଶୀଳ କରିଛି ।

ଏହା ଅବଶ୍ୟ ସତ୍ୟ, ପ୍ରହରାଜ ଇଂରେଜମାନଙ୍କର ସ୍ତାବକତା କରିଛନ୍ତି । କଂଗ୍ରେସ ଦଳ ଓ ଏହାର କର୍ମୀମାନଙ୍କ କାର୍ଯ୍ୟପ୍ରଣାଳୀକୁ ମର୍ମଭେଦୀ ଓ ଗାତ୍ରଦାହୀ ଭାଷାରେ ସମାଲୋଚନା କରିଛନ୍ତି । ଗାନ୍ଧିଜୀଙ୍କୁ ସଂପର୍କରେ ମଧ୍ୟ କଟୁ ଟିପ୍ପଣୀ ଦେବାକୁ କିନ୍ତୁ ମଣିନାହାନ୍ତି । ତାଙ୍କ ସମ୍ପାଦିତ ସତ୍ୟ ସମାଚାର( ୧୯୩୦-୩୬)/ଓ ପ୍ରଜାମିତ୍ର (୧୯୩୬) ସମ୍ବାଦପତ୍ରରେ ପ୍ରକାଶିତ ସମ୍ବାଦଗୁଡ଼ିକ ପ୍ରାୟତଃ ସମଭାବାଦର୍ଶର ଉଚ୍ଚାରଣ । ରାଜା, ମହାରାଜା, ଜମିଦାର ଆଦି ପ୍ରଜାପୀଡ଼କ ଓ ଶୋଷକ; ଯେଉଁମାନେ ତାଙ୍କ ରାଜକୀୟ ଭିକ୍ଷାବୃତ୍ତିକୁ ସ୍ୱୀକାର କରିନାହାନ୍ତି, ସେମାନଙ୍କ ଗୋଇ ଖୋଳିଛନ୍ତି । ଆପଣା ସ୍ୱାର୍ଥକୁ ଆଗ ଦେଖିଛନ୍ତି । ଏପରିକି ଉତ୍କଳ ସମ୍ମିଳନୀର କର୍ମକର୍ତ୍ତାମାନଙ୍କୁ ମଧ୍ୟ ରଇ ଜଳା ଶବ୍ଦରେ ସମ୍ମାର୍ଜନ କରିଛନ୍ତି । ଭାଷାକୋଷର ବିଭିନ୍ନ ଖଣ୍ଡକୁ ସାର୍ ଜନ୍ ଅଷ୍ଟିନ୍ ହବାକ୍; ଏନ୍ . ଏଫ୍. ପେକ୍; ନାରାୟଣ ପ୍ରସାଦ ଦେବ; ବିକ୍ରମ ଦେବବର୍ମା; କୃଷ୍ଣଚନ୍ଦ୍ର ନାରାୟଣ ଦେବ; ରାଜେନ୍ଦ୍ର ନାରାୟଣ ସିଂହଦେଓ; ମାନ୍ୟବର ଲର୍ଡ ଲିନ୍‌ଲିଥ୍‌ଗୋ, ବଡ଼ଲାଟଙ୍କ ନାମରେ ଉତ୍ସର୍ଗ କରିଛନ୍ତି । ସାର ଷ୍ଟିଫେନ୍‌ସନ୍, ସାର୍ ସିଫ୍‌ଟନ୍, ଗିବ୍‌ସନ୍, ମାନ୍ୟବର ବଡ଼ଲାଟଙ୍କ ସହଯୋଗୀ, ସାହାଯ୍ୟଦାତା, ସମ୍ଭ୍ରାନ୍ତବ୍ୟକ୍ତିବିଶେଷ ମାନଙ୍କର ଫଟୋଚିତ୍ର, ସେମାନଙ୍କ ନାମ ମଧ୍ୟ ପ୍ରକାଶ କରିଛନ୍ତି । ଆୟବ୍ୟୟର ଟିକିନିଖି ହିସାବ ରଖିଛନ୍ତି । କୋଷଗ୍ରନ୍ଥ ସହିତ ସମ୍ବନ୍ଧିତ ପ୍ରତ୍ୟେକଙ୍କ ଶ୍ରଦ୍ଧାକୁ ସ୍ୱୀକାର କରିଛନ୍ତି,ସମ୍ମାନ ଦେଇଛନ୍ତି । ଏହି କାର୍ଯ୍ୟ ସମ୍ପାଦନ କରିବାକୁ ତାଙ୍କୁ ବ୍ୟୟ କରିବାକୁ ପଡ଼ିଛି ପ୍ରାୟ ଏକ ଲକ୍ଷ ପଚିଶ ହଜାର ଟଙ୍କା ।

ଏଠାରେ ଉଲ୍ଲେଖ କରିବା ଉଚିତ୍ ମଣୁଛି ଯେ, କେତେକ ଛିଦ୍ରାନ୍ୱେଷୀ ପ୍ରହରାଜଙ୍କ ବ୍ୟୟସ୍ୱଚ୍ଛତା ସଂକ୍ରାନ୍ତରେ ପ୍ରଶ୍ନ କରଥା'ନ୍ତି । ମାତ୍ର ଅନୁରୂପ ଅଭିଯୋଗ ଅତ୍ୟନ୍ତ ଅମୂଳକ । ପ୍ରହରାଜ

ଭାଷାକୋଷ ସମ୍ପାଦନପାଇଁ ସଂଗୃହୀତ ଅର୍ଥ ଓ ତାହାର ବ୍ୟୟ ସଂପର୍କରେ ଟିଖିନିଖି ହିସାବ ରଖିଛନ୍ତି। ଏଥିପାଇଁ ଏକ ମୋଟା ବନ୍ଧେଇ ଖାତା ବ୍ୟବହାର କରିଛନ୍ତି। ଏଥିରେ ଚିଠି ଓ ଟେଲିଗ୍ରାମ ଠାରୁ ଆରମ୍ଭ କରି ସକଳ କର୍ମଚାରୀଙ୍କୁ ପ୍ରଦତ୍ତବେତନ, ପ୍ରୋତ୍ସାହନ ଓ ସାହାଯ୍ୟ ସଂକ୍ରାନ୍ତ ଖର୍ଚ୍ଚର ସ୍ପଷ୍ଟ ଉଲ୍ଲେଖ ଅଛି। ତାଙ୍କ ହିସାବ ଖାତାକୁ ନିଜ ଆଖିରେ ଦେଖିଥିବା ଯେ କୌଣସି ବ୍ୟକ୍ତି, ଏହି ଅଭିଯୋଗ ଅମୂଳକ ବୋଲି ସ୍ୱୀକାର କରିବ। ଏବଂ, ଆମକୁ ଏକଥା ମଧ୍ୟ ସ୍ୱୀକାର କରିବାକୁ ପଡ଼ିବ ଯେ,ଅନେକ ସଚେତନ ବ୍ୟକ୍ତିଙ୍କ ଆର୍ଥିକ, ଶାରୀରିକ ଓ ବୌଦ୍ଧିକ ସାହାଯ୍ୟ ଥିଲା ଶବ୍ଦକୋଷ ସଂକଳନର ପ୍ରକୃତ ଉତ୍ସ। ଏହି ଜାତୀୟ କାର୍ଯ୍ୟକୁ ସଂପାଦନ କରିବା ଉଦ୍ଦେଶ୍ୟରେ, ପ୍ରହରାଜ ଯେ କୌଣସି ନିନ୍ଦନୀୟ ଆଚରଣକୁ ନିର୍ବିକାର ଚିତ୍ତରେ ସ୍ୱୀକାର କରିଛନ୍ତି। ଅନ୍ୟର ନାକଟେକା ଓ ବୋଲୁଅକୁ ଆପଣେଇ ନେଇଛନ୍ତି। ଭାଷାକୋଷର ସଂକଳକ ଓ ଓଡ଼ିଆ ଭାଷାର ବିଦ୍ୱାନ୍ ଭାବରେ ସେ କୈଶୋର-ଇ-ହିନ୍ଦ୍ (ସେପ୍ଟେମ୍ବର ମାସ ୧୬ ତାରିଖ, ୧୯୩୩ ମସିହା), ସାହିତ୍ୟ ବିଶାରଦ (ଆନ୍ଧ୍ର ଭାରତୀ ତୀର୍ଥ ବିଶ୍ୱ ବିଦ୍ୟାଳୟ), ରାୟବାହାଦୂର(ଭାରତ ସରକାର ୧୯୩୬ ମସିହା) ଆଦି ଉପାଧିରେ ଅଳଂକୃତ ହୋଇଛନ୍ତି। ୧୯୩୪ ମସିହାରେ ଧାରାକୋଟଠାରେ ଅନୁଷ୍ଠିତ ନିଖିଳ ଉତ୍କଳ କବି ସମ୍ମିଳନୀ ମଧ୍ୟ ତାଙ୍କୁ ସମ୍ବର୍ଦ୍ଧିତ କରିଛି। ମାତ୍ର ଯେଉଁମାନେ ତାଙ୍କୁ ଜାତିଦ୍ରୋହୀ ଭାବରେ ପରିଚର୍ଚ୍ଚା କରିଛନ୍ତି, ସେମାନେ କେହି ଜଣେ ହେଲେ ତାଙ୍କ ଭିତରେ ସମୂହର ସାମଗ୍ରିକ ବିକାଶପାଇଁ ବ୍ୟାକୁଳିତ ମଣିଷର ଉଦ୍ୟମକୁ ଅନୁଭବ କରିପାରି ନାହାନ୍ତି। ସ୍ୱାଧୀନତା ପାଇବାପାଇଁ ମଣିଷକୁ ପ୍ରଥମେ ନିଜକୁ ଯୋଗ୍ୟ କରିବାକୁ ପଡ଼େ ଏବଂ ଯେ ପର୍ଯ୍ୟନ୍ତ ଭାରତୀୟମାନେ ଏଥିପାଇଁ ଯୋଗ୍ୟ ହୋଇନାହାନ୍ତି, ରାଜନୀତିକ ସ୍ୱାଧୀନତା ସେମାନଙ୍କ ପାଇଁ ଅର୍ଥହୀନ ଓ ଭୟଙ୍କର ହୋଇପଡ଼ିବ- ତାଙ୍କ ଅନୁରୂପ ବିଚାରକୁ ସମକାଳୀନମାନେ ଗ୍ରହଣ କରିପାରିନାହନ୍ତି। ଜଣେ ବିଦେଶୀ ପଦଲେହନକାରୀ ରୂପେ ତାଙ୍କ ବ୍ୟକ୍ତିତ୍ୱକୁ ପୁରିଷଚର୍ଚ୍ଚିତ କରିଛନ୍ତି।

ଭାଷାକୋଷର ସମାଲୋଚକମାନଙ୍କ ଅନ୍ୟତମ ଅଭିଯୋଗ-ଏହା ସଂକଳକଙ୍କର ଯୌନ ବିକୃତିର କୋଷାୟନ। ଗେହିବା (ଦେ.କ୍ରି.ଅଶ୍ଳୀଳ,ସଂ.ଗୃହତୁର୍ଥ ଗୃହମେଧୀ-ଯେ ଗୃହିଣୀ ସଂଗେ ଗୃହସ୍ଥ ଧର୍ମ ପାଳନ କରେ, ସଂଗମ କରିବା, ମୈଥୁନ କରିବା, (ପୂ.ଓ ଭା, ୨ୟ ଭାଗ ପୃ ୨୨୯୪) ଗେନ୍ଧା (ଦେ.ଅଶ୍ଳୀଳ,'ସଂ-ଗନ୍ଧ, ଲିଙ୍ଗମଳ,ଏହ ଅତ୍ୟନ୍ତ ଦୁର୍ଗନ୍ଧମୟ The excretas formed outside the penis (ପୂ.ଓ ଭା. ୨ୟ ଭାଗ ପୃ୨୨୯୪), ଗେନ୍ଧିଆ. ଗେନ୍ଧାଶୁଂଘା, ଗେନ୍ଧୁଣୀ; ବିଆ (ବିୟା, ଗ୍ରା.ବି. ଅଶ୍ଳୀଳ, ସଂପାୟୁ, ଗୁହ୍ୟଦ୍ୱାର, ସଂ.ବୀ ଧାତୁ, ଗର୍ଭଧାରଣ କରିବା, ଉତ୍ତେଜନା କରିବା କିମ୍ବା ବୀଜାଧାର, ବୀଜାନନ=ବିଆଣ=ସ୍ତ୍ରୀ.ଜନନେନ୍ଦ୍ରିୟ female genetive organ, vagina (ପୂ ଓ ଭା. ୫ମ ଖଣ୍ଡ ପୃ୫୫୪୯), ବାଣ୍ଡ (ଦେ.ବି.ସଂ-ବାଣ-ଶର, ତୁଳ,ସଂ. ବଣ୍ଡ, ଛିନ୍ନଦ୍ୱକ୍, ଲିଙ୍ଗ-ଅଶ୍ଳୀଳ, ଶିଶ୍ନ,(ପୂ ଓ ଭା.୫ମ ଖଣ୍ଡ ପୃ ୫୫୦୨), ଚୁକା (ଗ୍ରା.ବିଣ.ପୁଂ (ଅଶ୍ଳୀଳ)-ସଂ-ଚୂକ୍ ଧାତୁ=ତୃପ୍ତହେବା-(Chuka) ଯେ ଅନ୍ୟବ୍ୟକ୍ତିର କାମ ବୃତ୍ତିକୁ ଅସ୍ୱାଭାବିକ ପ୍ରକ୍ରିୟା, ଅର୍ଥାତ୍ ମୁଖ ଦ୍ୱାରା ଶାନ୍ତ କରାଏ-one who pacifies another's lost by repeatedly sucking his organ, sodomite, bugger, ଗ୍ରା.ବି. (ଅଶ୍ଳୀଳ) ମୁଖରତି /sodomy by

means of the mouth ପ୍ରାଦେ: (ସମ୍ବଲପୁର,ବିଣ.ତଟ୍‌କା(fresh) ବି. ନିଷତି (decision) (ଭାଷାକୋଷ ୨ୟ ଖଣ୍ଡ,ପୃ.୨୬୮୮)ଆଦି ଶବ୍ଦକୁ ଉଦାହରଣ ଭାବରେ ଗ୍ରହଣ କରାଯାଇପାରେ । ଭାଷାକୋଷରେ 'ଗାଣ୍ଡି' ପଦକେନ୍ଦ୍ରିକ ଶବ୍ଦ ସଂଖ୍ୟା ଏକାବନ । (ଗାଣ୍ଡି, ଗାଣ୍ଡିଆ, ଗାଣ୍ଡି ଆଉଁସା, ଗାଣ୍ଡି ଆଡୁଆ ବୁଝାମଣା, ଗାଣ୍ଡି ଆଡୁ ବୁଝାମଣା, ଗାଣ୍ଡିଆ ପାଣ୍ଡିଆ ନିଶାପ, ଗାଣ୍ଡିଆ ବତା, ଗାଣ୍ଡିଆ ବୁଝାମଣା, ଗାଣ୍ଡିଆ ଭାଣ୍ଡ, ଗାଣ୍ଡିଏ ଗାଣ୍ଡିଏ ଗହିବା, ଗାଣ୍ଡିକଟା, ଗାଣ୍ଡି କରିବା, ଗାଣ୍ଡିକନା ମୁଣ୍ଡରେ ବାନ୍ଧିବା, ଗାଣ୍ଡିକି କନା ସଜାଡ଼ିବା, ଗାଣ୍ଡି ଗଳି ପଡ଼ିବା, ଗାଣ୍ଡିଚୁଆ, ଗାଣ୍ଡି ଦେଖାଇବା, ଗାଣ୍ଡି ଧକ୍ ଧକ୍ ହବା, ଗାଣ୍ଡିଧରା, ଗାଣ୍ଡି ଧୋଇ ନଆସିବା, ଗାଣ୍ଡି ଧୋଇବା, ଗାଣ୍ଡିପଶା, ଗାଣ୍ଡିପାତି ବସିବା, ଗାଣ୍ଡି ପୁଚୁ ପୁଚୁ ହେବା, ଗାଣ୍ଡି ଫାଟିବା, ଗାଣ୍ଡି ଫୋଡ଼, ଗାଣ୍ଡିବ, ଗାଣ୍ଡିବଧନ୍ୱା, ଗାଣ୍ଡିବୀ, ଗାଣ୍ଡି ବୁଲାଇବା, ଗାଣ୍ଡିମ, ଗାଣ୍ଡିମରା, ଗାଣ୍ଡି ମରାଇବା, ଗାଣ୍ଡି ମାଡ଼ି ବସିବା, ଗାଣ୍ଡି ମାରିବା, ଗାଣ୍ଡିମୁଣା, ଗାଣ୍ଡିମୁଣ୍ଡ, ଗାଣ୍ଡିରେ ପଶିବା, ଗାଣ୍ଡି ଶୁଖିବା, ଗାଣ୍ଡି ହକ୍କମ୍ପ ହେବା, ଗାଣ୍ଡିବ, ଗାଣ୍ଡିବୀ, ଗାଣ୍ଡୁ, ଗାଣ୍ଡୁଆ, ଗାଣ୍ଡେଇବା । (ଭାଷାକୋଷ ଦ୍ୱିତୀୟ ଖଣ୍ଡ : ୨୧୮୮-୨୧୯୨) ଚୋଦ ପଦକେନ୍ଦ୍ରିକ ଶବ୍ଦ ସଂଖ୍ୟା ଚଉଦ। ଯଥା :- ଚୋଦ୍, ଚୋଦକ, ଚୋଦଣା, ଚୋଦନ, ଚୋଦନା, ଚୋଦନୀ, ଚୋଦୟିତା, ଚୋଦା, ଚୋଦେଇବା, ଚୋଦେଇ ହେବା, ଚୋଦିତ, ଚୋଦିବା, ଚୋଦେକର। (ଭାଷାକୋଷ ଦ୍ୱିତୀୟ ଖଣ୍ଡ -ପୃ୨୮୩୫) ଏବଂ ପ୍ରତ୍ୟେକ ଶବ୍ଦର ଅର୍ଥକୁ ଇଂରାଜୀରେ ମଧ୍ୟ ଉଲ୍ଲେଖ କରାଯାଇଛି। ଉପର୍ଯ୍ୟୁକ୍ତ ଶବ୍ଦ ଗୁଡ଼ିକ ଅଶ୍ଳୀଳ, ତେଣୁ ସାହିତ୍ୟରେ ବର୍ଜନୀୟ। ମାତ୍ର ମାନବ ସଭ୍ୟତା ଓ ସଂସ୍କୃତି ଅନୁଶୀଳନ କ୍ଷେତ୍ରରେ ଏଗୁଡ଼ିକ ଯେ ଅମୂଲ୍ୟ ନିଧି, ଯେ କୌଣସି ସମାଜବିଜ୍ଞାନୀ, ମନୋବିଜ୍ଞାନୀ, ଓ ନୃତତ୍ତ୍ୱବିତ୍ ଏହା ସ୍ୱୀକାର କରିବ। କେବଳ ଓଡ଼ିଆ ନୁହେଁ, ପୃଥିବୀର ଯେ କୌଣସି ଶବ୍ଦକୋଷରେ ସମଧର୍ମୀ ଶବ୍ଦଗୁଡ଼ିକ ଉପଲବ୍ଧ । ଆଦର୍ଶାନ୍ଧମାନେ ଏହା ଅନୁଭବ କରିପାରିନାହାନ୍ତି । ବିଚରା ସଂକଳକଙ୍କୁ କଟୁକ୍ତିରେ କ୍ଷତାକ୍ତ କରିଛନ୍ତି ।

ଉତ୍କଳ ଶବ୍ଦର ଅର୍ଥ ଓ ବ୍ୟାଖ୍ୟାକୁ କେନ୍ଦ୍ର କରି ଜାତୀୟତାବାଦୀମାନେ ପ୍ରହରାଜଙ୍କୁ ହଲାପଟା କରିଛନ୍ତି। ମାତ୍ର ଏହି ଶବ୍ଦ ଓ ଅର୍ଥକୁ ଆଧାର କରି ଉତ୍କଳୀୟମାନଙ୍କର ପ୍ରହରାଜଙ୍କ ପ୍ରତି ସଣ୍ଢୁଆସୀ ଆକ୍ରମଣ ଆଦୌ ଆକସ୍ମିକ ନଥିଲା। ପ୍ରଥମେ ରାଜେନ୍ଦ୍ରଲାଲ୍ ମିତ୍ରଙ୍କ ଆଣ୍ଟିକିଉଟିଜ୍ ଅଫ୍ ଓରିସା, ପ୍ରଥମ ଭାଗ (୧୮୭୪) ଓ ଦ୍ୱିତୀୟ ଭାଗ(୧୮୭୯), ନଗେନ୍ଦ୍ରନାଥ ବସୁଙ୍କ ବାଙ୍ଗ୍‌ଲା ବିଶ୍ୱକୋଷ ଏବଂ ପ୍ରକୃତିବାଦ ଅଭିଧାନ (ପ୍ରହରାଜ ଏହି ଦୁଇ ଗ୍ରନ୍ଥକୁ ପ୍ରଧାନ ସହାୟକ ଗ୍ରନ୍ଥ ଭାବରେ ବାରମ୍ବାର ଉଲ୍ଲେଖ କରିଛନ୍ତି) ରେ ଉତ୍କଳ ଶବ୍ଦର ଅନୁରୂପ ଚର୍ଚ୍ଚା ପ୍ରକାଶ ପାଇଛି ।[୩୫] ସମ୍ଭବତଃ ଏହି ଅପମାନସୂଚକ ଚର୍ଚ୍ଚାପାଇଁ ସମକାଳରେ ଓଡ଼ିଆ ପତ୍ରପତ୍ରିକାରେ ରାଜେନ୍ଦ୍ରଲାଲଙ୍କ ଗ୍ରନ୍ଥର ସମୀକ୍ଷା ପ୍ରକାଶ ପାଇ ନାହିଁ । ମାତ୍ର ପଣ୍ଡିତ ମୃତ୍ୟୁଞ୍ଜୟ ରଥ ପ୍ରକୃତିବାଦ ଅଭିଧାନକାରଙ୍କ ବିଚାର ବିରୋଧରେ ତୁଣ୍ଡ ଖୋଲିଛନ୍ତି। ଉତ୍କଳ ଦୀପିକାରେ ସେ ଉଲ୍ଲେଖ କରିଛନ୍ତି-

ଉତ୍କଳ: ଉତ୍ (ଉର୍ଦ୍ଧ୍ୱ) କଳ (ଗମନ) +ଅ = ଉତ୍କଳ ଦେଶ,ରାଜା ବିଶେଷ/ ଉତ୍+ଲା(ଗ୍ରହଣ)+ଅ= ଭାରବାହକ, ଉତ୍କଳ ଅର୍ଥ ଉନ୍ନତା ବା ଉନ୍ନିଶ। ତାକୁ ଯେ ଗ୍ରହଣ କରେ ସେ ଭାରବାହକ ହେବ କିପରି ?

ଉତ୍ତ୍ରଦେଶ/ଉତ୍କଳ

ତ୍ରିକାଣ୍ଡ କୋଷ : ଉତ୍ର ଉତ୍କଳ ସମାନଃ।(ହରିବଂଶ)

ଗ୍ରନ୍ଥର ପ୍ରକାଶକ ଶ୍ରୀ ବି.ବାନାର୍ଜୀ, ୨୫ କର୍ଣ୍ଣଓ୍ୱାଲିସ୍ ଷ୍ଟ୍ରୀଟ୍,କଲିକତାଙ୍କ ନିକଟକୁ ପ୍ରତିବାଦ ପତ୍ର ପଠାଯିବା ସଙ୍ଗେସଙ୍ଗେ ଏହି ଭ୍ରମର ସଂଶୋଧନପାଇଁ ଅନୁରୋଧ କରାଯାଇଛି।[୩୬] ପ୍ରହରାଜଙ୍କ ଶାଣିତ ଆଖି ଏହି ସମ୍ବାଦ ପ୍ରତି ଯେ ସତର୍କ ନ ଥିବ,ଏକଥା ନୁହେଁ। ସବୁ ଜାଣି ସୁଦ୍ଧା ପ୍ରକୃତିବାଦ ଅଭିଧାନର ବ୍ୟାଖ୍ୟାକୁ ସେ ଭାଷାକୋଷରେ ସ୍ୱୀକାର କରିଛନ୍ତି। କଟୂକ୍ତିର ଶରବ୍ୟ ହୋଇଛନ୍ତି ଏବଂ ଉତ୍ତରରେ ଉଲ୍ଲେଖ କରିଛନ୍ତି-

> "ଉତ୍କଳ ଶବ୍ଦର ଏହି ଏକାଧିକ ପ୍ରାମାଣିକ ସଂସ୍କୃତ ଶବ୍ଦକୋଷରେ ଦିଆଯାଇଥିବାବେଳେ, 'ଭାରବାହକ' ଅର୍ଥ ଓଡ଼ିଆ ଜାତିଙ୍କ ପ୍ରତି ଅସମ୍ମାନ ଜନକ ହେବ ବୋଲି ଭାଷାକୋଷର ସଂଗ୍ରାହକ ଏ ଅର୍ଥଟାକୁ ବାଦ୍ ଦେଇ ପାରନ୍ତେ କି ? 'ଉତ୍କଳ' ଶବ୍ଦର ଆଉ ଗୋଟିଏ ଅର୍ଥ ବ୍ୟାଧ ବା 'ଚଢେଇମାରୁ'। 'ଭାରବାହକ' ଅପେକ୍ଷା' ବ୍ୟାଧ' ଶବ୍ଦଟା ତ ଆହୁରି ଅପମାନଜନକ। ଏ ଅର୍ଥଟି ପ୍ରାଚୀନ ଓଡ଼ିଶାର ରାଜା ପୁରୁଷୋତ୍ତମ ଦେବ (ଖ୍ରୀଷ୍ଟ ପଞ୍ଚଦଶ ଶତାବ୍ଦୀ) ସଂକଳିତ ତ୍ରିକାଣ୍ଡ କୋଷ ନାମକ ସଂସ୍କୃତ ଅଭିଧାନରେ ଅଛି। ଏଥିପାଇଁ ସମାଲୋଚକଙ୍କର କି ଉତ୍ତର ଅଛି ?ଆପଣା ଜାତିର ଅପମାନ ସୂଚକ ହେବ ବୋଲି ଅଭିଧାନରୁ ଗୋଟିଏ ପ୍ରାମାଣିକ ଓ ବହୁ ଅଭିଧାନ ଗୃହୀତ ଅର୍ଥକୁ ଉଡ଼ାଇ ଦେବାକୁ ହେବ, ଯେବେ ଏ ଯୁକ୍ତି କରାଯାଏ, ତେବେ ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷର ସଂଗ୍ରାହକ ନାଚାର ଓ ସେ ଅପରାଧୀ ସାବ୍ୟସ୍ତ ହେବେ। ଏହିପରି ମେଦିନୀପୁରବାସୀମାନେ ଓଡ଼ିଆ ଅର୍ଥରେ ଉଡ଼େ ଶବ୍ଦ ବ୍ୟବହାର କରନ୍ତି। ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷା କୋଷରେ ଏହି ଉଡ଼େ ଶବ୍ଦକୁ - ପ୍ରାଦେଶିକ : ମେଦିନୀପୁର ଲେଖାଯାଇଛି। ଏ ଶବ୍ଦକୁ ମଧ୍ୟ ଭାଷାକୋଷ ସଂଗ୍ରାହକ କିଆଁ ଦେଲେ, ଏଥିପାଇଁ ତାଙ୍କୁ ଦୋଷୀ କରାଯାଇଥିବା ଆଶା କରାଯାଏ।"[୩୭]

ଶବ୍ଦକୋଷପାଇଁ ଶବ୍ଦସଂଗ୍ରହ ଓ ଅର୍ଥଲିଖନ କାଳରେ, ସେ ଯେଉଁ ଆଦର୍ଶକୁ 'ମାନକ' ଭାବରେ ଗ୍ରହଣ କରିଛନ୍ତି, ଯେତେ ଅପ୍ରୀତିକର ଓ ବିପଦ୍‌ଜନକ ହେଲେ ସୁଦ୍ଧା ସମ୍ମାନ ଦେଇଛନ୍ତି । ଅତି ସ୍ପଷ୍ଟ ଶବ୍ଦରେ ସେ ଉଲ୍ଲେଖ କରିଛନ୍ତି- "କଥିତ ଭାଷା ଓ ଲିଖିତ ସାହିତ୍ୟରେ ଯେଉଁ ଶବ୍ଦଗୁଡ଼ିକ ସାଧାରଣତଃ ଉଲ୍ଲେଖ ହେବାର ଦେଖାଯାଏ, ସେଗୁଡ଼ିକର ଆକ୍ଷରିକ, ପ୍ରାକୃତିକ ଓ ପ୍ରଚଳିତ ଅର୍ଥ, ବ୍ୟବହାର, ଇତିହାସ, ପ୍ରକୃତି ଆଦି ଲିପିବଦ୍ଧ କରି ରଖିବା ଅଭିଧାନ ସଂକଳକଙ୍କର କର୍ତ୍ତବ୍ୟ ଏବଂ ଶବ୍ଦଗୁଡ଼ିକର ଅଶୁଦ୍ଧତା ଓ ବିଶୁଦ୍ଧତା ନିରୂପଣ ଭାଷାତତ୍ତ୍ୱବିଦ୍ ଓ ସାହିତ୍ୟିକମାନଙ୍କର ଧର୍ମ।" (ପୂ.ଓ. ଭାଷାକୋଷ, ମୁଖବନ୍ଧ, ପ୍ରଥମ ଖଣ୍ଡ)

ଏଠାରେ ଉଲ୍ଲେଖ କରାଯାଇପାରେ ଯେ ,୧୯୧୬ ମସିହାରେ ଶବ୍ଦତତ୍ତ୍ୱ ଅଭିଧାନର ଶବ୍ଦ ସଂକଳନ ପଦ୍ଧତିକୁ କେନ୍ଦ୍ର କରି ଓଡ଼ିଶାର ପଣ୍ଡିତମାନଙ୍କ ମଧ୍ୟରେ ଯେଉଁ ବିଚିତ୍ର ଗୋଳର ସୂତ୍ରପାତ ହୋଇଥିଲା, ୧୯୩୩ ରୁ ୪୦ ମସିହା ମଧ୍ୟରେ ପୂ, ଓ. ଭାଷାକୋଷକୈନ୍ଦ୍ରିକ ବିତର୍କ ଥିଲା ତାହାର

ଉଲ୍ଲଙ୍ଗ ଓ ଉଗ୍ର ଅଭିବ୍ୟକ୍ତି । ସେତେବେଳେ କଟକ ସହର ଓଡ଼ିଶାର ଆଧୁନିକମାନଙ୍କର ପ୍ରଧାନ ବିହାର ଭୂମି ରୂପରେ ମୁଣ୍ଡ ଟେକିଛି । ତାହା କ୍ଷମତା ବିସ୍ତାରଣର କେନ୍ଦ୍ର ହେଉଛି। ଏବଂ, ଆଧୁନିକ ଶିକ୍ଷାପ୍ରାପ୍ତମାନେ ସେଠାରେ ନିଜ ନିଜର ଆସ୍ଥାନମାନ ପ୍ରତିଷ୍ଠାକରି କର୍ତ୍ତୃତ୍ୱ ଜାହିରପାଇଁ ମଗଜ ଖଟେଇଛନ୍ତି। ସେମାନଙ୍କ ଭାଷା ଯେ ଶୁଦ୍ଧ ଓଡ଼ିଆ, ଏବଂ ସେମାନେ ଯେ ନବ ଓଡ଼ିଶାର ଭାଗ୍ୟବିଧାତା-ଅନୁରୂପ ଦର୍ପ ସେମାନଙ୍କୁ ଭାରି ସନ୍ତାପିତ କରିଛି। ଅବଶିଷ୍ଟ ଓଡ଼ିଆ ଭାଷାଭାଷୀ ମଣିଷମାନଙ୍କୁ ଆପଣା ଆସ୍ଥାନମୁଖୀ ନ କରିବାପାଇଁ ସେମାନ ଚକ୍ରାନ୍ତ କରିଛନ୍ତି ଏବଂ ସଂସ୍କୃତି ଓ ସାହିତ୍ୟ କେନ୍ଦ୍ର ଠାରୁ ବହୁଦୂରରେ ଥିବା ଗଞ୍ଜାମ ଓ ପାରଳାଖେମୁଣ୍ଡିରେ ବଞ୍ଚୁଥିବା ପଣ୍ଡିତମାନଙ୍କୁ ସେମାନେ ଆପଣା ବିଚାରର ଗୋଟି କରିଛନ୍ତି। ଶବ୍ଦତତ୍ତ୍ୱବୋଧ ଅଭିଧାନ ହୋଇଛି ଅଭିଜାତମନସ୍କ ଗୋଷ୍ଠୀର କର୍ତ୍ତୃତ୍ୱ ବିସ୍ତାରଣ ଖେଳର ଏକ ମାଧ୍ୟମ। 'ଆଶା' ପତ୍ରିକାର ସମ୍ପାଦକ ଶଶିଭୂଷଣ ରଥ କଳହରେ ଏକ ପ୍ରକାର ଫଶି ଯାଇଛନ୍ତି।ଏବଂ, ତାଙ୍କୁ ସତ୍ୟବାଦୀ ଗୋଷ୍ଠୀର ବଦ୍ୱାନମାନେ ଆପଣା ଇଚ୍ଛାମୁତାବକ ନଚେଇଛନ୍ତି। ମାତ୍ର ଏହି ଗୋଳର ଅବଧି ମାତ୍ର ତିନି ଚାରି ମାସ। ନାନା କାରଣରୁ ଗୌରୀଶଙ୍କର ରାୟ ମଧ୍ୟ ଗୋଳ ଭିତରକୁ ଆସି ମଧ୍ୟ ପରେ ନୀରବ ରହିଛନ୍ତି।

ଅନ୍ୟ ପକ୍ଷରେ, ପୂର୍ଣ୍ଣଚନ୍ଦ୍ର ଭାଷାକୋଷ ଉପରେ ସଣ୍ଢୁଆସୀ ଆକ୍ରମଣ ଆରମ୍ଭ ହୋଇଛି ଗଞ୍ଜାମରୁ। ଏହାର ନେତୃତ୍ୱ ନେଇଛନ୍ତି ଅନ୍ୟତମ ଦକ୍ଷିଣୀ ପଣ୍ଡିତ ଓ ଜାତୀୟତାବାଦୀ ଗୋଦାବରୀଶ ମହାପାତ୍ର। ପରବର୍ତ୍ତୀ କାଳରେ ୧୯୩୮ ମସିହା ବେଳକୁ ସେ ଅବଶ୍ୟ ବ୍ରହ୍ମପୁରରୁ କଟକ ଆସିଛନ୍ତି । ମାତ୍ର ତାଙ୍କ ସହ ହାତ ମିଳେଇଛନ୍ତି ସହକାର ପତ୍ରିକାର ସମ୍ପାଦକ ବାଳକୃଷ୍ଣ କର। ତେଣୁ ଭାଷାକୋଷକୈନ୍ଦ୍ରିକ ମସୀ-ସମରର ନୈପଥ୍ୟରେ ରହିଛନ୍ତି ଗୋଟିଏ ଗ୍ରାମ ମୂଳବସନ୍ତର ଦୁଇ ସହୋଦରବୀର, ବାଳକୃଷ୍ଣଙ୍କ ସହକାର ଓ ବିଶ୍ୱନାଥଙ୍କ ଉତ୍କଳ ସାହିତ୍ୟ ପତ୍ରିକା। ମାତ୍ର ଶବ୍ଦତତ୍ତ୍ୱବୋଧ ଅଭିଧାନ ଓ ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷକୈନ୍ଦ୍ରିକ ବିତର୍କ ମଧ୍ୟରେ ବ୍ୟତିକ୍ରମ ହେଉଛି-ଶ୍ରୀଯୁକ୍ତ ପ୍ରହରାଜ,ପଣ୍ଡିତ ନନ୍ଦ ମହାଶୟଙ୍କ ପରି ଆପଣାକୁ ପରଦା ଆଢୁଆଳରେ ରଖି ନାହାନ୍ତି। ସତ୍ୟ ସମାଚାର ଓ ଉତ୍କଳ ସାହିତ୍ୟ ପୃଷ୍ଠାରେ, ବେଶ୍ ସ୍ପଷ୍ଟ ଭାବରେ, ନିଜସ୍ୱ କଥନ ରୀତିରେ ସମାଲୋଚନାର ଉତ୍ତର ଦେଇଛନ୍ତି । ନିଜ ଆଦର୍ଶ ସହିତ ସାଲିସ୍ କରି ନାହାନ୍ତି । ଉତ୍କଳ ସାହିତ୍ୟ (୧୩୪୩ ସାଲ,ବୈଶାଖ,ଜ୍ୟେଷ୍ଠ,ଆଷାଢ) ରେ ପ୍ରକାଶିତ ଭାଷାକୋଷପାଇଁ ସଫର ଏବଂ ଓଡ଼ିଆ ଭାଷା ବ୍ୟବହାରରେ ସ୍ୱାଧୀନତା (୧୩୪୫ ସାଲ, ଶ୍ରାବଣ) ଶୀର୍ଷକ ଆଲୋଚନାକୁ ଆମେ ତାଙ୍କ ଆତ୍ମାର ସ୍ୱୀକାରୋକ୍ତି ଭାବରେ ଗ୍ରହଣ କରିପାରିବା।

ସମାଲୋଚକମାନଙ୍କ ରାଜା, ମହାରାଜା, ଜମିଦାର ଓ ଓଡ଼ିଶା ରାଜକୋଷରୁ ବିପୁଳ ପରିମାଣର ଅର୍ଥ ଆଣି ବିନିର୍ବ୍ୟୟ କରୁଥିବା ଅଭିଯୋଗର ଉତ୍ତର ଦେବାକୁ ଯାଇ ପ୍ରହରାଜ ଉଲ୍ଲେଖ କରିଛନ୍ତି,-

> "ମୁଁ ଭାଗ୍ୟକୁ କେଉଁଠୁ ପାଇଛି ଟଙ୍କାବିଡ଼ା,କାହୁଁ ହାତୀ ଘୋଡ଼ା,କାହୁଁ ହୁକୁମ ବିଡ଼ା,କାହୁଁ ବୁଢା ହଡ଼ା, କାହୁଁ ଘଷି କଣ୍ଡା, କାହୁଁ କୁଣ୍ଡା ନଡ଼ା, ଖାରିଆଖଡ଼ା, କାହୁଁ କହୁଣୀ କୋରଣା, କାହୁଁ ଲେଉଟା ନାକ ଫୋଡ଼ା, କାହିଁ ଟଣା ଭିଡ଼ା, କହିଁ ଢିଙ୍କି ମଡ଼ା,କାହିଁ ଘଣା ପେଡ଼ା,କାହିଁ ଜାଉଁଳି ଭିଡ଼ା, କାହିଁ ଶିଙ୍ଗି ବୁଡ଼ା, କେତେ ଠାଇଁ

ଭେଟିଲି ଓଲଟା ଗଧ ଚଢ଼ା, ହୁକୁମ କଡ଼ା, ରସ ଚିପୁଡ଼ା, ଚୋପାଛଡ଼ା, ହଂସାଉଡ଼ା ।
(ଭାଷାକୋଷପାଇଁ ସଫର- ଉ.ସା.ଆଷାଢ଼ ୧୩୪୩) ଦାନର ପ୍ରତିଶ୍ରୁତି ଦେଇ ବିଶିଷ୍ଟମାନେ ତାଙ୍କୁ କିପରି ରାଜକୀୟ ରୀତିରେ ପ୍ରତାରିତ କରୁଥିଲେ, ଭାଷାକୋଷର ପ୍ରାୟ ପ୍ରତ୍ୟେକ ଖଣ୍ଡରେ ସେ ପ୍ରକାଶ କରିଛନ୍ତି । ସ୍ୱପ୍ନରେ ରାଜଯୋଗ (ନବଭାରତ :୧୩୪୧ ସାଲ/ପ୍ରଥମ ଭାଗ ୪ର୍ଥ, ୫ମ ସଂଖ୍ୟା) ଓ ସ୍ୱପ୍ନରେ ରାଜଧାନୀ ଯୋଗ (ନବଭାରତ ୧୩୪୩ ସାଲ/୩ୟ ବର୍ଷ ୨ୟ ସାଲ) ତାଙ୍କ ପ୍ରତାରିତ-ବ୍ୟକ୍ତିତ୍ୱର ପ୍ରତିକ୍ରିୟା।

ସମାଲୋଚକମାନଙ୍କ ଅନ୍ୟ କେତେକ ପ୍ରଶ୍ନର ଉତ୍ତର ଦେବାକୁ ଯାଇ ସେ ଅନ୍ୟତ୍ର ଲେଖିଛନ୍ତି-

ଏ ସମ୍ପର୍କୀୟ ଗ୍ରନ୍ଥରେ ମୋର ଯେଉଁ ଅନୁଭୂତି ହୋଇଛି, ଉତ୍କଳରେ ଭବିଷ୍ୟତରେ ଏହିପରି ଦୁରୂହ କର୍ମରେ ହାତଦେବା ବ୍ୟକ୍ତିଙ୍କ ଅବଗତ ଓ ଅନୁଶାସନ ନିମନ୍ତେ ମୁଁ ସେହି ସବୁ ଅନୁଭୂତିକୁ ଭାଷାକୋଷର ସଫର ଶିରୋନାମା ଦେଇ ଉତ୍କଳ ସାହିତ୍ୟରେ ଧାରାବାହିକ ଲେଖୁଛି । ସେ ବିବୃତିମାନଙ୍କରେ ବ୍ୟକ୍ତିଗତ ଆକ୍ଷେପ ଓ ଆକ୍ରମଣକୁ ଯଥାଶକ୍ତି ଏଡ଼େଇ ବାକୁ ଚେଷ୍ଟା କରିଛି। କାରଣ ବ୍ୟକ୍ତିବିଶେଷଙ୍କୁ ଗାଳିଦେବା କିମ୍ବା ଲୋକଙ୍କୁ ଚିହ୍ନେଇବା ମୋର ଉଦ୍ଦେଶ୍ୟ ନୁହେଁ। କେବଳ ଭବିଷ୍ୟତ କର୍ମୀମାନଙ୍କୁ କି କି ପ୍ରକାର ବୋଲୁଅ ମାଡ଼ରୁ ଆପଣା ଦିହକୁ ବଞ୍ଚେଇ କାମ କରିବାକୁ ହେବ, ତାହାହିଁ ସୂଚନା ଦେବା ମୋର ଉଦ୍ଦେଶ୍ୟ ଅଟେ। ଆପେ କାମ କରିବା ନାହିଁ, କିନ୍ତୁ ଅନ୍ୟ ଯେ କରିବ, ତାକୁ ଶୋଧିବା; ତାର ଅନିଷ୍ଟ ଚିନ୍ତା କରିବା; ତାର ଦୁର୍ନାମ କରିବା,ତା' ନାଁଆରେ ଚୁଗୁଲି କରିବା, ଦେଶସେବକ ମୁଖା ବାନ୍ଧି ତା' କାର୍ଯ୍ୟରେ ପ୍ରକାଶ୍ୟରେ ଓ ପ୍ରଚ୍ଛନ୍ନ ଭାବରେ ବାଧା ଜନ୍ମାଇବା ରୂପକ ବ୍ରତରେ ମୋର ଗୁଡ଼ାଏ ବନ୍ଧୁ ଆଜକୁ ୫/୭ ବର୍ଷ ହେଲା ଲାଗିଛନ୍ତି। ଗତ ୨୦ ବର୍ଷରେ ଭାଷାକୋଷ ଆଶ୍ରମରେ ଥରେ ମୁହଁ ବା ଟାପୁ ମାରିନାହାନ୍ତି କିମ୍ବା ଭାଷାକୋଷର ସଂକଳନ, ଶବ୍ଦସଂଗ୍ରହ, ଅର୍ଥସଂଗ୍ରହ, ଗ୍ରାହକ ସଂଗ୍ରହ ବିଷୟରେ ମୋତ ସାହାଯ୍ୟ କରିନାହାନ୍ତି; କିମ୍ବା ମୋ ପାଖକୁ ଆସି ଭାଷାକୋଷରେ ପରିଲକ୍ଷିତ କୌଣସି ଭ୍ରାନ୍ତି ବା ପ୍ରମାଦ ବା ଦୋଷ ପ୍ରତି ମୋ ଦୃଷ୍ଟି ଆକର୍ଷଣ କରି ନାହାନ୍ତି। କିନ୍ତୁ ଭାଷାକୋଷର ପ୍ରଥମ ଓ ପରବର୍ତ୍ତୀ ଖଣ୍ଡମାନ ପ୍ରକାଶିତ ହେବାର ଦେଖି ସେମାନଙ୍କର ପିଳେହି ପାଣି ହୋଇଯାଉଛି। ପାଠକେ ଅବଧାନ, କ୍ଷମା କରିବେ। ଏ ବାକ୍ୟଟା ପୁଣି କୁରୁଚି ବା ଅଶ୍ଳୀଳତା ଆଡ଼କୁ ମୁହାଁଇଲା ବୋଲି ଆପଣ ନାକ ଟାଉଁ ଟାଉଁ କରନ୍ତୁ ନାହିଁ। କାରଣ ଏ ବାକ୍ୟକୁ ଶ୍ଳୀଳ,ସୁରୁଚିମୟ ସାଧୁ ଶବ୍ଦରେ ବା କଥାନ୍ତର କଲେ, ଏହା ପ୍ଲୀହା ଜଳୀଭୂତ ହେଉଛି ହେବ। ପ୍ଲୀହା ଜଳୀଭୂତ ହେବା ବାକ୍ୟ ବା ତହିଁର ଅର୍ଥ କି ଭାଷାକୋଷ କି ପାଳକୋଷ, କି ବୈଦିକ କୋଷ, କାହିଁରେ ମିଳିବ ନାହିଁ। ଆଉ ଜଣେ ଶୁକ୍ରାଚାର୍ଯ୍ୟ ବିଳିବିଳେଇଲେ କି ଭାଷାକୋଷକୁ ଭ୍ରମକୋଷ ବୋଲା ଯାଇପାରେ।"

ପରିହାସପ୍ରିୟ ପ୍ରହରାଜ ନିଜ ଶୈଳୀରେ ଗୋଦାବରୀଶ ମହାପାତ୍ରଙ୍କୁ ଅବଶ୍ୟ ଶୁକ୍ରାଚାର୍ଯ୍ୟ କହିଛନ୍ତି।

ଅନ୍ୟ ଛିଦ୍ରାନ୍ୱେଷୀମାନଙ୍କ ବକ୍ତବ୍ୟ ପ୍ରତି ଧାପେ ବି ଗୁରୁତ୍ୱ ଦେଇନାହାନ୍ତି । ମାତ୍ର ଏହାର ଅର୍ଥ ନୁହଁ ଯେ ସେ ନିଜର ଭ୍ରମଗୁଡ଼ିକ ସଂପର୍କରେ ସଚେତନ ନଥିଲେ । ଭାଷାକୋଷର ମୁଖବନ୍ଧରେ,ଉଭୟ ଓଡ଼ିଆ ଓ ଇଂରେଜୀ ଶବ୍ଦମାଳାରେ ଅପଣାର ଜ୍ଞାନ-ଦାରିଦ୍ର୍ୟକୁ ନମ୍ରତାର ସହ ପ୍ରକାଶ କରିଛନ୍ତି । ନିଜ ପାଦର ଫାଟଗୁଡ଼ିକୁ ସେ ଦେଖିଛନ୍ତି । ଫାଟର ଜ୍ୱାଳା ଅନୁଭବ କରିଛନ୍ତି । ଏବଂ, ଲେଖିଛନ୍ତି-

> ଏକ ଅଭିଧାନ ସଂକଳନ କରିବାପାଇଁ ଯେଉଁ ଭାଷାବିଜ୍ଞତା, ଅନୁସନ୍ଧିତ୍ସା, ଅଧ୍ୟବସାୟ, ଶବ୍ଦପାଣ୍ଡିତ୍ୟ, ଭ୍ରମଣଶୀଳତା, ନାନା ସ୍ଥାନ ଓ ପୁସ୍ତକରୁ ଶବ୍ଦସଂଗ୍ରହ କରିବାର ସମୟ ଓ ଶକ୍ତି ଆବଶ୍ୟକ, ତାହା ମୋର ନାହିଁ । କେତକ ସାହିତ୍ୟିକ ବନ୍ଧୁଙ୍କୁ ଏହା ଗ୍ରହଣ କରିବାଲାଗି ଅନୁରୋଧ କଲି; କିନ୍ତୁ ଫଳତଃ କାହାରିକୁ ଏ କ୍ଷେତ୍ରରେ ନିଷ୍ଠାର ସହିତ ଅଗ୍ରସର ହେବାର ଦେଖିଲି ନାହିଁ । ଏପରି ସ୍ଥଳରେ ଅଗତ୍ୟା ଏ ଗୁରୁ ଦାୟିତ୍ୱରେ ହସ୍ତକ୍ଷେପ କଲି ଓ ଉତ୍କଳଭାଷୀ ଅଞ୍ଚଳରେ ଅଭିଜ୍ଞ ଓ ସାହିତ୍ୟନିଷ୍ଠ ବନ୍ଧୁମାନଙ୍କୁ ଦେଖାଇ ଏ ଶବ୍ଦକୋଷକୁ ଓଡ଼ିଆ ଭାଷାରcomprehensiveଶବ୍ଦକୋଷ ରୂପରେ ସର୍ବସାଧାରଣ ଙ୍କ ହସ୍ତରେ ଅର୍ପଣ କରିବି ବୋଲି ଇଚ୍ଛାକରି ଶ୍ରୀ ପରାତ୍‌ପରଙ୍କ ନାମରେ ଏ ଦୁରୂହ କାର୍ଯ୍ୟରେ ହସ୍ତକ୍ଷେପ କରୁଅଛୁଁ ।" ଏବଂ
>
> It is not the work of a single individual of spedour means and scanty requirements like the present compiler,The New Standard Dictionary of the English Language of four volumes recently published represents the labour of 380 specialists and scholars, 400 prfessional readers and the expenditure over 40 lakhs of rupees as given out by the publisher,xx May that day come, When the civilised world will realize how rich phonetics and ancient Oriya language is and when the Oriya language will be given its legislimate place of honour among the cultured modern languages," (ଭାଷାକୋଷ; ୨ୟ ଭାଗ Introduction)

କେବଳ New Standard English Dictionary ନୁହେଁ, ଓଏବ୍‌ଷ୍ଟର୍, ଅକ୍‌ସ୍‌ଫୋର୍ଡ଼ ଡ଼ିକ୍‌ସ୍‌ନାରିର ଶବ୍ଦ ସଂକଳନ ପଦ୍ଧତିକୁ ମଧ୍ୟ ସେ ଅନୁଶୀଳନ କରିଛିନ୍ତି । ଶବ୍ଦଯେ ଏକ ଜାତି ଓ ତାର ସଂସ୍କୃତିର ଭାବପିଣ୍ଡ-ଏହା ମର୍ମେ ମର୍ମେ ଅନୁଭବ କରିଛନ୍ତି । ଶବ୍ଦ ଅଧ୍ୟୟନରେ ସୂକ୍ଷ୍ମତା ଓ ଶବ୍ଦ ଭଣ୍ଡାରର ବିପୁଳତା- ଉଭୟ ସମ୍ପଦକୁ ଭାରକରି ବାଟଚାଲିଛନ୍ତି । ଅଭିଧାନରେ ସେ ସଜେଇ ରଖିଛନ୍ତି ଓଡ଼ିଆ ଭାଷାର ପ୍ରାୟ ଏକ ଲକ୍ଷ ପଞ୍ଚାଅଶୀ ହଜାର ଶବ୍ଦ । ମାତ୍ର ଭାଗ ପରେ ଭାଗ ପ୍ରକାଶ ପାଉଥିଲେ ସୁଦ୍ଧା, ଶବ୍ଦ ସାଉଁଟା ଅଭ୍ୟାସକୁ ସେ ଛାଡ଼ିପାରି ନାହାନ୍ତି । ସାତକାଣ୍ଡି ଗ୍ରନ୍ଥ ପ୍ରକାଶ ପାଇଲା ପରେ,ଟିପାଖାତାରୁ ସେ ଆବିଷ୍କାର କରିଛନ୍ତି ପ୍ରାୟ ପନ୍ଦର ହଜାର ଶବ୍ଦ । ଏବଂ ଅନ୍ୟ ଏକ ସ୍ୱତନ୍ତ୍ର ଖଣ୍ଡରେ ସେଗୁଡ଼ିକର ପ୍ରକାଶନପାଇଁ ଯୋଜନା କରିଛନ୍ତି । ଏହା ସମ୍ଭବ ହୋଇନି । ୧୯୪୦ ମସିହା ବେଳକୁ ଓଡ଼ିଆ ଭାଷାର ଶବ୍ଦଭଣ୍ଡାର ଯେ ପ୍ରାୟ ଦୁଇଲକ୍ଷରୁ ଅଧିକ, ସେ ଏହା

ପ୍ରତିପାଦନ କରିଛନ୍ତି ।

ଗୋପାଳ ଚନ୍ଦ୍ର ପ୍ରହରାଜଙ୍କ ଜୀବନ ଓ କୃତିର ସମାଲୋଚକ ଅବଶ୍ୟ ଥିଲେ, ମାତ୍ର ପ୍ରଶଂସକମାନଙ୍କ ସଂଖ୍ୟା ଯେ କମ୍ ଥିଲା- ତାହା ନୁହେଁ । ବହୁ ଦେଶୀ ଓ ବିଦେଶୀ ବିଦ୍ୱାନ ତାଙ୍କୁ ବେଶ୍ ପ୍ରଶଂସା କରିଛନ୍ତି । ଇଟାଲୀ ବିଶ୍ୱବିଦ୍ୟାଳୟର ମୁଖପତ୍ରରେ ଗ୍ୟୁ ସେଫଟକ୍ସି ଉଲ୍ଲେଖ କରିଛନ୍ତି- The dictionary is an account of its size and wealth of documentaion, the most complete that could be designed. XX Gopal Praharaj has highly deserved well of his country and the rebirth of vernacular studies in India. XX This work will facilitate literature which has also many points of contact with the literature of Bengal and is not any mean, one of the least interesting in India. (ପୂ. ଓ ଭା. ୩ୟ ଖଣ୍ଡ, ମୁଖବନ୍ଧ) ବିଶ୍ୱକବି ରବୀନ୍ଦ୍ରନାଥ ମଧ୍ୟ ଏକ ପତ୍ରରେ "The Purna Chandra Odia Bhasakosha is an encyclopaedic dictionary which has been useful for the work of our research department in the Viswa-Bharati. The compiler Mr. G.C. Praharaj and his elaborators deserve our sincere thanks for the excellent work they have done.") ପ୍ରହରାଜଙ୍କ ଶତମୁଖ ପ୍ରଶଂସା କରିଛନ୍ତି । କାବ୍ୟରତ୍ନ ବଳଭଦ୍ର ବହିଦାର "ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷରେ ସମ୍ବଲପୁରୀ ପ୍ରାଦେଶିକ ଶବ୍ଦ" ଆଲୋଚନାରେ ଭାଷାକୋଷରେ ସଂକଳିତ ସମ୍ବଲପୁରୀ ଶବ୍ଦର ଶୁଦ୍ଧରୂପର ପ୍ରୟୋଗ ଓ ତେତିଶ ଗୋଟି ଶବ୍ଦର ସ୍ୱରୂପ ପ୍ରଦାନ କରିଛନ୍ତି । ପଣ୍ଡିତ ଲକ୍ଷ୍ମୀନାରାୟଣ ମିଶ୍ର "ଓଡ଼ିଆ ଭାଷାକୋଷ"ଶୀର୍ଷକ ଏକ କବିତା ଲେଖିଛନ୍ତି । (ସମାଜ-ତା୨୭.୮.୨୭) ଏବଂ ପଣ୍ଡିତ ନୀଳକଣ୍ଠ ଦାସ ଉଲ୍ଲେଖ କରିଛନ୍ତି, "ଓକିଲାତି ତାଙ୍କର ଉପଜୀବ୍ୟ ଥିଲା । ରାଜନୀତିରେ ତାଙ୍କର କୌଣସି ଦୃଢ଼ମତ ନ ଥିଲା । କିନ୍ତୁ ଅକାଟ୍ୟ ଓ ଅଖଣ୍ଡ ସାହିତ୍ୟ ସାଧନାରେ ଏବେ ବି ସେ ଅଦ୍ୱିତୀୟ । ଉପଜୀବ୍ୟ ବୋଲ, ମତବାଦ ଓ କ୍ରିୟା ବୋଲ, ସବୁ ତାଙ୍କର ଥିଲା ଏକା ସାହିତ୍ୟ ସାଧନାପାଇଁ । ସେ ଯାହାକୁ ସାହିତ୍ୟ ସାଧନା ବୋଲି ବୁଝିଥିଲେ, ତାହାରି ଅନୁକୂଳ ଜୀବିକା ହିଁ ତାଙ୍କର ଜୀବିକା । ତାହାରି ଅନୁକୂଳ କାର୍ଯ୍ୟ ହିଁ ତାଙ୍କର କାର୍ଯ୍ୟ । ଜୀବନ ପ୍ରାରମ୍ଭରେ ସେ ସଂସ୍କାର ଦୃଷ୍ଟିରେ ଲୋକ ଚରିତ୍ର ଓ ଲୋକ ସଂସ୍କାରର ସୁନ୍ଦର ରହସ୍ୟମୟ ଆଲୋଚନାରେ ସାହିତ୍ୟ ଆରମ୍ଭ କରିଥିଲେ । ପରଣିତ ବୟସରେ ତାଙ୍କ ସାଧନାର ଫଳ ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷ । ପୁଣି ପୁସ୍ତକ ଓ ପତ୍ର ପତ୍ରିକା ସଂଗ୍ରହରେ ତାଙ୍କୁ ବଳି ଓଡ଼ିଶାରେ ଆଉ କେହି ନାହିଁ । ଖାଲି ସଂଗ୍ରହ କରୁ ନ ଥିଲେ, ସବୁ ତନ୍ନ ତନ୍ନ କରି ପଢ଼ି ସେ ଶବ୍ଦାଦି ସଂଗ୍ରହ କରୁଥିଲେ ।[୩୯] ବିଖ୍ୟାତ ଭାଷାବିଜ୍ଞାନୀ ଡ଼କ୍ଟର ସୁନୀତି କୁମାର ଚାଟାର୍ଜୀ ମଧ୍ୟ ଭାଷାକୋଷ ସଂକ୍ରାନ୍ତରେ ମୂଲ୍ୟବାନ ମନ୍ତବ୍ୟ ପ୍ରଦାନ କରିଛନ୍ତି । ବିଶ୍ୱ, ଭାଷାକୋଷକୁ ଦେଖି ଚକିତ ହୋଇଛି ।

ଅଭିଧାନତତ୍ତ୍ୱ ଦୃଷ୍ଟିରୁ ବିଚାର କଲେ, ଭାଷାକୋଷ ଯେ ସମ୍ପୂର୍ଣ୍ଣ ପ୍ରମାଦମୁକ୍ତ ତାହା ନୁହେଁ । କୋଷଗ୍ରନ୍ଥର ସବୁଠାରୁ ବଡ଼ ଦୁର୍ବଳତା, ଏଥିରେ ଉଦାହରଣ ମାଧ୍ୟମରେ ଶବ୍ଦଗୁଡ଼ିକର କାଳକ୍ରମିକ ବିକୃତି ସମ୍ପର୍କରେ ଉଲ୍ଲେଖ କରାଯାଇନାହିଁ । ଉଚ୍ଚାରଣଗତ ବାସ୍ତବତା ପ୍ରତି ଅବହେଳା କରାଯାଇଛି ।

ତେଣୁ ଶବ୍ଦଗୁଡ଼ିକର ରୋମାନୀକରଣ ପ୍ରୟାସ ପଣ୍ଡଶ୍ରମରେ ପରିଣତ ହୋଇଛି । ବହୁ ଶବ୍ଦର ବୈୟାକରଣିକ ରୂପରେ ମଧ୍ୟ ପ୍ରମାଦ ରହିଛି । ଏବଂ, ଆବଶ୍ୟକ ସ୍ଥଳେ ଶବ୍ଦଗୁଡ଼ିକର ଫଟୋ ଅଥବା ରେଖାଚିତ୍ର ସଂଯୋଜନ ହୋଇନାହିଁ । କେବଳ ଗୋପାଳ ଚନ୍ଦ୍ର ପ୍ରହରାଜ ନୁହନ୍ତି, ଓଡ଼ିଆ ଭାଷାର କୌଣସି ଅଭିଧାନକାର, କେଜାଣି କାହିଁକି ଏହି ଗୁରୁତ୍ୱପୂର୍ଣ୍ଣ ଆବଶ୍ୟକତା ପ୍ରତି ଆଖି ବୁଜିଦେଇଛନ୍ତି । ଅନେକ କ୍ଷେତ୍ରରେ ଦୀର୍ଘ ଉଦାହରଣ ଓ ଅନାବଶ୍ୟକ ବର୍ଣ୍ଣନା ବାହୁଲ୍ୟ ହିଁ ଏହାର ପୃଥୁଳ ଶରୀରର କାରଣ ହୋଇଛି ।

ସଂପ୍ରତି ପ୍ରହରାଜଙ୍କର ଭାଷାକୋଷର ପୁର୍ନମୁଦ୍ରଣର ଆବଶ୍ୟକତା ରହିଛି କି ? କିମ୍ବା ଏହାର ପୁର୍ନମୁଦ୍ରଣ କାଳରେ କେଉଁ ପଦ୍ଧତି ଅନୁସରଣ କରାଯିବ- ତତ୍‌ସଂକ୍ରାନ୍ତରେ ଚର୍ଚ୍ଚା କରିବାର ସମୟ ଆସିଛି । ମାତ୍ର ଛାତ୍ର ଓ ସାଧାରଣ ପାଠକ-ଉପଯୋଗୀ ଏହାର ସଂକ୍ଷିପ୍ତ ସଂସ୍କରଣ ଯେ ଏକାନ୍ତ ଆବଶ୍ୟକ- ଏ କଥା ଅସ୍ୱୀକାର କରାଯାଇ ନ ପାରେ । ନିଜେ ସଂକଳକ ମଧ୍ୟ ଆପଣାର ଜୀବଦ୍ଦଶାରେ ଅନୁରୂପ ସ୍ୱପ୍ନ ଦେଖିଛନ୍ତି (ଭାଷାକୋଷ, ୪ର୍ଥ ଖଣ୍ଡ, ଉପସଂହାର) ତାଙ୍କ ଜୀବିତାବସ୍ଥାରେ ଏହା ସମ୍ଭବ ହୋଇ ପାରିନାହିଁ । ସଂକଳକଙ୍କ ଦେହାନ୍ତ (୧୯୪୫) ପରେ ତାଙ୍କ ସହଯୋଗୀମାନେ ମଧ୍ୟ ଏହି କାର୍ଯ୍ୟ ସଂପାଦନ କରିପାରିଥା'ନ୍ତେ । ସେମାନେ ସେଥିପ୍ରତି ସାମାନ୍ୟ ଆଗ୍ରହ ଦେଖାଇ ନାହାନ୍ତି । ପଣ୍ଡିତ କୁଳମଣି ଦାଶ କାବ୍ୟତୀର୍ଥ ଓ ଜଗନ୍ନାଥ ତ୍ରିପାଠୀ ନିଜ ନାମରେ ଦୁଇଗୋଟି ଛାତ୍ର-ଉପଯୋଗୀ ଅଭିଧାନ ପ୍ରକାଶ କରିଅଛନ୍ତି । ପଣ୍ଡିତ କୃଷ୍ଣଚନ୍ଦ୍ର କରଙ୍କ 'ତରୁଣ ଶବ୍ଦକୋଷ' ଗ୍ରନ୍ଥ ମଧ୍ୟ ପ୍ରହରାଜଙ୍କ ସାନ୍ନିଧ ଲାଭର ଅନ୍ୟ ଏକ ଫଳଶ୍ରୁତି । ଅଭିଧାନକାରମାନେ ଅବଶ୍ୟ ଆମ ଆବଶ୍ୟକତା ପୂରଣ କରିଛନ୍ତି । ମାତ୍ର ଆଧୁନିକ ପୃଥିବୀର କୋଷଗ୍ରନ୍ଥ ବିପଣୀ ଭିତରକୁ ପଶିଗଲେ, ବିପଣୀର ବିଭବ ଓ ବୈଚିତ୍ର୍ୟକୁ ଦେଖି ଯେକୌଣସି ଓଡ଼ିଆ ନିଜକୁ ବିଶ୍ୱାସ କରିପାରିବ ନାହିଁ । ନିଜକୁ ଭାରି ଦରିଦ୍ର, ଛୋଟ ମଣିବ । ଅନ୍ୟର ଛିଦ୍ର ଅନ୍ୱେଷଣ ଓ ଗଭୀର ସୁଷୁପ୍ତି ଜନିତ ସୁଖବିଭୋରତା ଯେପରି ଓଡ଼ିଆମାନଙ୍କର ଜାତୀୟ ଚରିତ୍ର । ଏଠାରେ ଉଲ୍ଲେଖ କରାଯାଇପାରେ ଯେ, ସାଧାରଣ ଜନତାର କ୍ରୟଶକ୍ତି ଓ ଆବଶ୍ୟକତା ପ୍ରତି ଦୃଷ୍ଟିଦେଇ ଅକ୍‌ସ୍‌ଫୋର୍ଡ଼, ଓଏବ୍‌ଷ୍ଟର ଆଦି ଅଭିଧାନଗୁଡ଼ିକର ସାଧାରଣ ଓ ଛାତ୍ର ସଂସ୍କରଣମାନ ପ୍ରକାଶପାଇଛି । ଏବଂ, ଏହି ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟ ସରକାରୀ ଓ ସ୍ୱେଚ୍ଛାସେବୀ ଅନୁଷ୍ଠାନଗୁଡ଼ିକର ଆର୍ଥିକ ଅନୁଦାନ ଓ ପାଠକୀୟ ଆଗ୍ରହଯୋଗୁଁ ସମ୍ଭବ ହୋଇପାରିଛି । ଓଡ଼ିଆମାନଙ୍କ ଚେତନାରେ ଅନୁରୂପ ଆବଶ୍ୟକତା ଏପର୍ଯ୍ୟନ୍ତ ଅଙ୍କୁରିତ ହୋଇନାହିଁ । ଏତଦ୍‌ବ୍ୟତୀତ, ଭାଷାକୋଷକୁ ଆଧାର କରି ସ୍ୱତନ୍ତ୍ର ରୂପରେ ଆଞ୍ଚଳିକ ଓଡ଼ିଆ  ଶବ୍ଦକୋଷ, ଲୌକିକ ଶବ୍ଦକୋଷ, ବୈଦେଶିକ ଶବ୍ଦକୋଷ, ପ୍ରାଚୀନ ତଥା ମଧ୍ୟଯୁଗୀୟ ଶବ୍ଦକୋଷ, ବୈଦ୍ୟକ କୋଷ ପରି ବହୁ କୋଷଗ୍ରନ୍ଥ ସଂକଳିତ ହୋଇପାରନ୍ତା । ଇତି ମଧ୍ୟରେ ଭାଷାକୋଷ ପ୍ରକାଶିତ ହେବାର ଦୀର୍ଘ ପ୍ରାୟ ସତୁରୀ ବର୍ଷ ଗତ ହୋଇଗଲାଣି । ଓଡ଼ିଆ ଭାଷା ବହୁ ନୂତନ ଶବ୍ଦରେ ନିଜକୁ ଶ୍ରୀମନ୍ତ କଲାଣି । ମାତ୍ର ବର୍ତ୍ତମାନର ଆବଶ୍ୟକତାକୁ ପୂରଣ କଲାପରି ଅଭିଧାନ ଖଣ୍ଡେ ମଧ୍ୟ ଆମ ହାତରେ ନାହିଁ । ଓଡ଼ିଆମାନେ ପୃଥିବୀର ସଭ୍ୟ ଦେଶର ଭାଷା ସାମ୍ରାଜ୍ୟକୁ ଅର୍ଥିତଙ୍କ ପରି ଅନେଇ ରହିଛନ୍ତି- ୧୯୪୦ ମସିହା ପରେ ଭାଷାକୋଷର ସୁବିପୁଳ ସ୍ତୂପ ଆଡ଼କୁ ପ୍ରହରାଜ ଯେମିତି ଅନେଇ ରହିଥିଲେ, ଠିକ୍ ସେମିତି ।

## ସାତ

ଭାଷାକୋଷର ମୁଦ୍ରଣ ଶେଷ ହୋଇଛି । ପ୍ରସବ ପରର ସୁଖଦ ମୁହୂର୍ତ୍ତକୁ ପ୍ରହରାଜ ପ୍ରାଣଭରି ଉପଭୋଗ କରିଛନ୍ତି- ଜୀବନର ପ୍ରାୟ ଦୀର୍ଘ ସତେଇଶ ବର୍ଷର ଅବିରାମ ସଂଗ୍ରାମ ଜନିତ ଅନୁଭବ । ପାଖରେ ସ୍ଥାବର-ଅସ୍ଥାବର ସମ୍ପତ୍ତି ନାହିଁ । ସବୁ ଶେଷ ହୋଇଯାଇଛି । ପତ୍ନୀ ନାହିଁ । ପୁତ୍ର ବି ନାହିଁ । ଝଗଡୁଥିବା ସହୃଦୟା ଶାଳୀ ପୀତାମ୍ବରୀ ଦେବୀ ମଧ୍ୟ ନାନା କାରଣରୁ ରୁଷ୍ଟା ହେଲେଣି । ଜୀବନ ସାରା ଉଭୟ ଶତ୍ରୁ ଓ ମିତ୍ରମାନଙ୍କ ପାଖରେ ଅବୋଧ ରହିଯାଇଥିବା ସୃଜନଶୀଳ ଏବଂ ନିଜ ଇଚ୍ଛାର ଈଶ୍ୱର ଜଣକ ଟିକିଏ ଶାନ୍ତିପାଇଁ ଭାଷାକୋଷ ପାଖରେ ପହଞ୍ଚିଛନ୍ତି ଏବଂ ସେଠି ମଧ୍ୟ ତାଙ୍କ ବର୍ତ୍ତମାନ ଓ ଭବିଷ୍ୟତପାଇଁ ଅପେକ୍ଷା କରି ରହିଛି ଆକାଶୋପମ ଅସନ୍ତୋଷ । ବନ୍ଧା ଓ ଅବନ୍ଧା ଅବସ୍ଥାରେ ବହିମାନେ ପଡ଼ିରହିଛନ୍ତି । ସେମାନଙ୍କପାଇଁ ରହିବାକୁ ଜାଗା ନାହିଁ । ସେମାନଙ୍କୁ କିଣିବାପାଇଁ ଗ୍ରାହକ ନାହାନ୍ତି । ଯେଉଁମାନେ ନେବାପାଇଁ କଥା ଦେଇଥିଲେ, ସେମାନେ ନିରବ ରହିଛନ୍ତି । ପଚାରିଲେ ଉଁ କି ଚୁଁ କରିନାହାନ୍ତି । ଗୋଦାମ ଘର ଖାଲି କରିବାପାଇଁ ବିଭିନ୍ନ ବିଦ୍ୟାଳୟ, ପାଠାଗାରକୁ କେବଳ ବନ୍ଧେଇ ମୂଲଦେଇ ଗ୍ରନ୍ଥ ନେବାପାଇଁ ସେ ଅନୁରୋଧ କରିଛନ୍ତି । କେଉଁ ଦୂର ଦୂରାନ୍ତରରୁ କଟକ ସହରକୁ ଆସି ବୋଝେ ଛପା କାଗଜ ନେବାପାଇଁ ମଧ୍ୟ ଶିକ୍ଷିତ ଓ ବୀର ଓଡ଼ିଆ ପୁଅମାନେ ରାଜି ହୋଇନାହାନ୍ତି । କ୍ରମଶଃ କାଗଜଗଦା ମୂଷା ଓ ଉଇମାନଙ୍କ ସୁଖାଦ୍ୟ ହୋଇଛି । ମୁଁ ଶୁଣିଛି- ଅବସ୍ଥା କାଳେ ଏତେ ଅଣାୟତ୍ତ ହୋଇଛି ଯେ, ଓଡ଼ିଶାର ସ୍ୱାଭିମାନ ଓ ଶବ୍ଦ କୋଣାର୍କ, ଅନାବଶ୍ୟକ କାଗଜ ଭାବରେ ବଜାରର ଠୁଙ୍ଗାବାଲାଙ୍କ ଅଭାବ ପୂରଣକରିଛି । ଏବଂ, ଶବ୍ଦ-ସ୍ଥପତି ପ୍ରହରାଜଙ୍କ ଖାଦ୍ୟରେ ବିଷପ୍ରୟୋଗଜନିତ ଅସ୍ୱାଭାବିକ ମୃତ୍ୟୁ (୧୯୪୫) ପରେ ସଂପତ୍ତିକୁ କେନ୍ଦ୍ର କରି କୁହୁଳୁ ଥିବା ଅହଂକାର, ଅଧିକାର, ପ୍ରତିହିଂସା ଓ ପ୍ରତିଶୋଧର ନିଆଁ ଭାଷାକୋଷ ଆଶ୍ରମକୁ ପୋଡ଼ି ଶେଷ କରିଦେଇଛି । ମାମଲା କୋର୍ଟକୁ ଯାଇଛି । ଆଶ୍ରମରେ ଗଦା ହୋଇଥିବା ବହି, କାଗଜ କେଉଁଆଡ଼େ କେମିତି ଚାଲିଗଲେ, ତାର ହିସାବ ରହିନି । ବିଶ୍ୱନାଥ କରଙ୍କ ଉତ୍କଳ ସହିତ୍ୟ ପ୍ରେସ୍ ମଧ୍ୟ ନିଜର ତେଜ ହରେଇଛି । ତାଙ୍କ ପୁଅ, ଝିଅମାନେ ସମ୍ପତ୍ତି ଓ ସୁଖ୍ୟାତିର ସଂରକ୍ଷଣରେ ସମର୍ଥ ହୋଇନାହାନ୍ତି । ଲାଳନପାଳନ ତ କାହିଁ କେତେ ଦୂରର କଥା । ଭାଷାକୋଷ ଯେ ଜଣେ ବ୍ୟକ୍ତିର ନୁହେଁ, ଜାତୀୟ ସଂପତ୍ତି, ଓଡ଼ିଆମାନେ ଏହା ଅନୁଭବ କରିପାରି ନାହାନ୍ତି । ଏବଂ, ସବୁଠାରୁ ଆଶ୍ଚର୍ଯ୍ୟର କଥା-ଯେଉଁମାନେ ପ୍ରହରାଜଙ୍କ ସହକର୍ମୀ ଥିଲେ, ସେମାନେ ମଧ୍ୟ ଭାଷାକୋଷର ବର୍ତ୍ତମାନ ଓ ଭବିଷ୍ୟତ ସଂକ୍ରାନ୍ତରେ ମଥା ଖେଳେଇ ନାହାନ୍ତି । ପୃଥିବୀର ଭଷା ପରିଚର୍ଚ୍ଚା ଇତିହାସରେ ପ୍ରହରାଜଙ୍କ ଭାଷାକୋଷକୈନ୍ଦ୍ରିକ ଘଟଣାବଳୀକୁ କେବଳ ଏକ ଅଭିନବ ମହାନାଟକ, ଏକ ବିଡ଼ମ୍ବନା ବ୍ୟତୀତ ଆଉ କିଛି କୁହାଯାଇ ନ ପାରେ ।

କେହି କେହି ହୁଏ ତ କହି ପାରନ୍ତି, ପାଳକୋଷକୁ ସମୟ ନିଆଁ ଖାଇଯାଇଛି, ଭଲ ହୋଇଛି । ମାତ୍ର ସତରେ କ'ଣ ଶେଷ ହୋଇଯାଇଛି ? ତାହା ହୋଇଥିଲେ ଆମେ ଆଧୁନିକ ସାମନ୍ତମାନେ ଜମାରୁ ତାକୁ ଏତେ ଖୋଜୁ ନଥାନ୍ତୁ । ଆଜି ଆମେ ଆମ ସଂସ୍କୃତି ଓ ଜୀବନକୁ

ଖୋଜିଲାବେଳେ, ଢଗଢମାଳି ଓ ଭାଷାକୋଷର ପୃଷ୍ଠା ଆଉଡ଼ୋଉ ନ ଥାନ୍ତୁ । 'ଇତରତା' - ଦୋଷଦୁଷ୍ଟ ତାହାର ବିପୁଳ କଳେବରକୁ ଅମୂଲ୍ୟ ବିଭବ ତୁଲ୍ୟ ଜ୍ଞାନକରୁ ନ ଥାନ୍ତୁ ।

ଭାଷାକୋଷ ସଂପର୍କରେ ଅଳ୍ପରେ ଏତିକି କୁହାଯାଇଛି ଯେ, ଏହାର ପରିକଳ୍ପନା ମୂଳରେ ରହିଛି, ବ୍ରିଟିସ୍ ଭାରତର ଭାଷା ମାଧ୍ୟମରେ ପ୍ରାକୃତିକ ଓଡିଶାର ସଂରଚନା, ଓଡିଆଜାତିର ଅସ୍ମିତା ପ୍ରତିଷ୍ଠା ଏବଂ ଏକ ପ୍ରାଚୀନ ଭାଷାର ଜନ୍ମ, ବିକାଶ ଓ ପ୍ରୟୋଗ- ବୈଚିତ୍ର ଚର୍ଚ୍ଚା । ଏହି ଆଭିମୁଖ୍ୟର ଅପବାଦମୁକ୍ତ ସଂପାଦନପାଇଁ ପ୍ରହରାଜ ଶବ୍ଦ- ସର୍ଜନ- ତତ୍ତ୍ୱ ଅନୁଗତ ହୋଇଛନ୍ତି । କାର୍ଯ୍ୟ ସମ୍ପାଦନରେ ତ୍ରୁଟି ଅବଶ୍ୟ ରହିଛି । ଏବଂ ଏହା ସ୍ୱାଭାବିକ । ପୃଥିବୀର ସକଳ ଭୂମିର ଭାଷାଚର୍ଚ୍ଚା କ୍ଷେତ୍ରରେ ଏହା ଏକ ଦୃଶ୍ୟମାନ ବିଲକ୍ଷଣ । ମାତ୍ର ଯେଉଁ କାରଣଗୁଡିକପାଇଁ ସଂକଳକଙ୍କୁ ଦାଣ୍ଡମଝିକୁ ଭିଡାଯାଇଛି, ତାହା ସମାଲୋଚକମାନଙ୍କ (ଛିଦ୍ରାନ୍ୱେଷୀ ଅବଶ୍ୟ କୁହାଯାଇପାରେ) ଶବ୍ଦ-ସାଧନ-ବିଦ୍ୟାର ଅନବଗାହିତା ଏବଂ, ସଂକଳକଙ୍କ ଦୁର୍ବୋଧ ଜୀବନଚର୍ଯ୍ୟା କୈନ୍ଦ୍ରିକ ଉନ୍‌ନାସିକତାର ଅଭିବ୍ୟକ୍ତି କହିଲେ, ଅସମୀଚୀନ ହେବ ନାହିଁ ।



## ନୋଟ୍ ଓ ଆକର ସୂଚୀ

୧. ମହାପାତ୍ର, ଗୋଦାବରୀଶ

(କ) ପୂର୍ଣ୍ଣଚନ୍ଦ୍ର ଓଡିଆ ଭାଷାକୋଷ ସମ୍ବନ୍ଧରେ କେତୋଟି କଥା / ସହକାର- ୧୪ଶ ଭାଗ / ୧୦ମ ସଂଖ୍ୟା, (ପୃ- ୯୩୫ରୁ ୯୧୪) ୧୧ଶ ସଂଖ୍ୟା ( ୧୦୫୪-୬୧), ଦ୍ୱାଦଶ ସଂଖ୍ୟା (୧୧୫୨-୫୭); ୧୫ଶ ଭାଗ/ ଦ୍ୱିତୀୟ ସଂଖ୍ୟା (ପୃ ୧୪୭- ୧୫୨) ଓ ୫ମ ସଂଖ୍ୟା (ପୃ ୪୪୪- ୪୪୭) ।

(ଖ) ନିଆଁଖୁଣ୍ଟା : ତା ୨.୬. ୧୯୩୮, ୨୩. ୩. ୧୯୩୮, ୧, ୧୦. ୩୮, ୨ୟ ବର୍ଷ ୧୪ଶ ସଂଖ୍ୟା, ୨୮ ଶତମ ସଂଖ୍ୟା ।

୨. ପ୍ରହରାଜ, ଗୋପାଳଚନ୍ଦ୍ର : (୧୯୩୬- ୩୭) ଭାଷାକୋଷପାଇଁ ସଫର; ଉତ୍କଳ ସାହିତ୍ୟ/ ବୈଶାଖ (ପୃ ୩୪- ୩୮), ଜ୍ୟେଷ୍ଠ (ପୃ. ୮୫- ୯୨), ଆଷାଢ (ପୃ ୧୪୬- ୧୫୫); ୧୩୪୪ ସାଲ ବୈଶାଖ (ପୃ. ୩୫- ୩୭), ଜ୍ୟେଷ୍ଠ (ପୃ ୭୪- ୭୬), ଆଷାଢ (ପୃ ୧୪୩- ୧୪୮): ୬ଗୋଟି ଭାଗରେ ପ୍ରକାଶିତ ।

୩. ପ୍ରହରାଜ, ଗୋପାଳଚନ୍ଦ୍ର : ଉତ୍କଳ ସାହିତ୍ୟ/ ୮ମ ଭାଗ/ ୫ମ ଭାଗ/ ୧୩୧୧ସାଲ (୧୯୦୪), ଦୁଇଖଣ୍ଡି ଓଡିଆ ପୁସ୍ତକ: (ଫକୀରମୋହନ ସେନାପତିଙ୍କ ଛ' ମାଣ ଆଠଗୁଣ୍ଠ ଓ ରାମଶଙ୍କର ରାୟଙ୍କ ଯୁଗଧର୍ମ ବହି ସଂକ୍ରାନ୍ତ ଆଲୋଚନା) ଉତ୍କଳ ସାହିତ୍ୟ ଷଷ୍ଠ ଭାଗ/ ୪ର୍ଥ ଓ ୬ଷ୍ଠ ସଂଖ୍ୟା/ ୧୩୧୦ ସାଲ (୧୯୦୩) ଏବଂ ଉତ୍କଳର କାହାଣୀ (୧୯୦୧), ଉତ୍କଳ ସାହିତ୍ୟ ପ୍ରେସ, ମୁଖବନ୍ଧ ଦ୍ରଷ୍ଟବ୍ୟ ।

୪. ପ୍ରହରାଜ, ଗୋପାଳଚନ୍ଦ୍ର (୧୯୧୩): ବାଇ ମହାନ୍ତି ପାଞ୍ଜି, କଟକ, ଉତ୍କଳ ସାହିତ୍ୟ ପ୍ରେସ୍ / ତ୍ରୟୋଦଶ ବିତା ଦ୍ରଷ୍ଟବ୍ୟ ।

୫. ପ୍ରହରାଜ, ଗୋପାଳଚନ୍ଦ୍ର (୧୯୦୩): ଭାଗବତ ଟୁଙ୍ଗୀରେ ସନ୍ଧ୍ୟା, କଟକ: ଉତ୍କଳ ସାହିତ୍ୟ ପ୍ରେସ୍/ ତୃତୀୟ ସନ୍ଧ୍ୟା ଦ୍ରଷ୍ଟବ୍ୟ ।

୬. ତତ୍ରୈବ: ଅଷ୍ଟମ ସଂଖ୍ୟା ଦ୍ରଷ୍ଟବ୍ୟ ।

୭. ଦ୍ରଷ୍ଟବ୍ୟ: ପୁସ୍ତକ ସୂଚୀ, ୩, (କ)

୮. ପ୍ରହରାଜ, ଗୋପାଳଚନ୍ଦ୍ର : (୧୯୩୫)

(କ) ଧାରତାବନ୍ଧାର ପୁଞ୍ଜିପାଣ୍ଡି/ ଉତ୍କଳ ସାହିତ୍ୟ/ ଜ୍ୟୈଷ୍ଠ, ଆଷାଢ ଓ ଶ୍ରାବଣ ସଂଖ୍ୟା/ ୧୩୪୨ ସାଲ (୧୯୩୫) ।

(ଖ) ବାଇନାନୀଙ୍କ ବୁଢ଼ୁଲି : ଉତ୍କଳ ସାହିତ୍ୟ/ ୨୪ଶ ଭାଗ- ୧୧ଶ, ୨୫ଶ ଭାଗ, ୧ମ, ୩ୟ, ୪ର୍ଥ, ୫ମ, ୭ମ, ୧୨ଶ, ୨୬ଶ : ୪ର୍ଥ, ୫ମ, ୭ମ, ୮ମ, ୧୧ଶ। ସଂଖ୍ୟା/ ୧୩୨୮- ୩୦ସାଲ (୧୯୨୧- ୨୩) ଦ୍ରଷ୍ଟବ୍ୟ ।

୯. ପ୍ରହରାଜ, ଗୋପାଳଚନ୍ଦ୍ର (୧୯୩୪) ଓଡିଆ ଭାଷାରେ କେତେକ ବିଭ୍ରାଟ : ନବଭାରତ / ୧ମ ବର୍ଷ / ୪ର୍ଥ ସଂଖ୍ୟା, (ପୃ ୩୦୫- ୦୬) ।

୧୦. ପ୍ରହରାଜ, ଗୋପାଳ ଚନ୍ଦ୍ର ଓ ପୀତାମ୍ବରୀ ଦେବୀ (୧୯୨୬, ୧୯୨୭) ଓଡିଆ ଲୌକିକ ପଦ ବା ଢଗଢମାଳି ବଚନ : ୧ମ ଓ ୨ୟ ଭାଗ, କଟକ, ଉତ୍କଳ ସାହିତ୍ୟ ପ୍ରେସ୍, ମୁଖବନ୍ଧ ଦ୍ରଷ୍ଟବ୍ୟ ।

୧୧. ସାହା, ମହାଦେବ ପ୍ରସାଦ (ସଂପାଦନା) ୧୯୬୮: ସିଲେକ୍‌ଟଡ୍ ପେପରସ୍: ରେଭରେଣ୍ଡ ଜେମିସ୍ ଲଙ୍ଗ୍, ଇଣ୍ଡିଆନଷ୍ଟଡିକ୍, ପାଷ୍ଟ ଏଣ୍ଡ ପ୍ରେଜେଣ୍ଟ, କ୍ରିଏନିଟା ।

୧୨. ଉତ୍କଳ ଦୀପିକା: ତା ୧୫, ଏପ୍ରିଲ୍ ୧୮୭୬

୧୩. ତତ୍ରୈବ ।

୧୪. ପୁସ୍ତକ ଟିପ୍‌ପଣୀ: ୧୦ ଦ୍ରଷ୍ଟବ୍ୟ: ପୃ. ୦୪

୧୫. ପୁସ୍ତକ ଟିପ୍‌ପଣୀ: ୧୦ ଦ୍ରଷ୍ଟବ୍ୟ: ୧୫

୧୬. ମିଶ୍ର, ଭାବଗ୍ରାହୀ (ସମ୍ପାଦନା): ୧୯୮୦, ଲେକ୍‌ସିକୋଗ୍ରାଫି ଇନ୍ ଇଣ୍ଡିଆ : ମହୀଶୂର, ଭାରତୀୟ ଭାଷା ସଂସ୍ଥାନ, ଗ୍ରନ୍ଥରେ ସଂଯୋଜିତ ବିଭିନ୍ନ ଭାଷାର ଅଭିଧାନ ଗ୍ରନ୍ଥ ସଂକ୍ରାନ୍ତ ଆଲୋଚନା ଗୁଡିକ ଦ୍ରଷ୍ଟବ୍ୟ ।

୧୭. ଉତ୍କଳ ଦୀପିକା: ତା ୧୬ ମଇ, ୧୯୦୩ ।

୧୮. ଉତ୍କଳ ସାହିତ୍ୟ ସମାଜର ବାର୍ଷିକ ବିବରଣୀ / ଉତ୍କଳ ସାହିତ୍ୟ/ ୮ମ ଭାଗ/ ୧୦ ସଂଖ୍ୟା (୧୯୦୫) ।

୧୯. ଦାଶ, ଗୌରାଙ୍ଗ ଚରଣ (୧୯୮୫): ଅଭିଧାନର ଇତିବୃତ୍ତ, କୋଣାର୍କ- ୫୬, ଭୁବନେଶ୍ୱର, ଓଡିଆ ସାହିତ୍ୟ ଏକାଡେମି ।

୨୦. ରାଓ, ଜଗନ୍ନାଥଙ୍କ ଉତ୍କଳ ଅଭିଧାନ (୧୮୯୨/ ୯୫) ଏବଂ ନନ୍ଦଶର୍ମା, ପଣ୍ଡିତ ଗୋପୀନାଥଙ୍କ ଶବ୍ଦତତ୍ତ୍ୱବୋଧ ଅଭିଧାନ (୧୯୧୬)ରେ ବହୁ ଶବ୍ଦର ଉତ୍ପତ୍ତି ଓ ବ୍ୟବହାର ସଂକ୍ରାନ୍ତରେ ଉଦାହରଣମାନ (ଉଭୟ ଓଡିଆ ଓ ସଂସ୍କୃତ ଭାଷାରେ) ପ୍ରଦତ୍ତ ।

୨୧. ଏହା ଏକ ଦ୍ୱିଭାଷୀ (ଓଡିଆ-,ଇଂରାଜୀ) ପୁସ୍ତିକା । ଏହାର ଶୀର୍ଷକ ରହିଛି- Prospectus, Specimen Form of the Quadrilingual Oria Bhasakosha (Dictionary of Oria language) ବିଶେଷ ଦ୍ରଷ୍ଟବ୍ୟ: ପ୍ରହରାଜ ଗ୍ରନ୍ଥାବଳୀ : ତୃତୀୟ ଭାଗ : (୨୦୦୮) କଟକ, ବିଦ୍ୟାପୁରୀ, ପୃଷ୍ଠା ୪୭୪- ୫୪୮

୨୨. ବଡାଳ, ହରିଶ୍ଚନ୍ଦ୍ର : (୧୯୩୪) ପୂର୍ଣ୍ଣଚନ୍ଦ୍ର ଓଡିଆ ଭାଷାକୋଷ, ଦି ବୈତରଣୀ; ୭ମ ଓ ୮ମ ସଂଖ୍ୟା ।

୨୩. ପ୍ରହରାଜ ଗୋପାଳଚନ୍ଦ୍ର :

(କ) ଦ୍ରଷ୍ଟବ୍ୟ; ଆକର ସୂଚୀ ୨ ।

(ଖ) ସ୍ୱପ୍ନରେ ରାଜଯୋଗ (୧୯୩୪- ୩୫) ନୀଳକଣ୍ଠ ଦାସଙ୍କ ସମ୍ପାଦିତ ନବଭାରତ, ୧ମ ଭାଗ/ ୪ର୍ଥ, ୫ମ, ୬ଷ୍ଠ ସଂଖ୍ୟା ଓ ଦ୍ୱିତୀୟ ଭାଗ/ ୪ର୍ଥ ଓ ୫ମ ସଂଖ୍ୟାରେ ପାଞ୍ଚଗୋଟି ଅଧ୍ୟାୟ, ରଙ୍ଗବ୍ୟଙ୍ଗ ବିଭାଗରେ ୧୩୪୧ ଓ ୪୨ ସାଲରେ ପ୍ରକାଶିତ । ଲେଖକଙ୍କ ଛଦ୍ମନାମ ଧୂର୍ମୁଷଧୁମା ।

୨୪. ପ୍ରହରାଜ ଆପଣା କୋଷଗ୍ରନ୍ଥ ସଂକଳନରେ ଯେଉଁ ଅଭିଧାନ, ଜ୍ଞାନକୋଷ ଓ ବିଭିନ୍ନ ବିଷୟିକ ଜ୍ଞାନବିଜ୍ଞାନ ଗ୍ରନ୍ଥର ସାହାଯ୍ୟ ନେଇଛନ୍ତି, ସେଗୁଡିକର ତାଲିକା ପ୍ରତ୍ୟେକ ଖଣ୍ଡର ଅବତରଣିକାରେ ମୁଦ୍ରିତ ହୋଇଛି । ବିଭିନ୍ନ ଖଣ୍ଡରେ ମୁଦ୍ରିତ ଏହି ତାଲିକାକୁ ଏକାଠି କଲେ, ପୁସ୍ତକଗୁଡିକର ସଂଖ୍ୟା କ୍ରମଶଃ ବଢିଛି, ପ୍ରଥମ ଭାଗରେ ଏହା ୨୦ ଥିଲାବେଳେ ସପ୍ତମଭାଗରେ ୪୪ । ସେ ନୋଆ ୱେବଷ୍ଟର ଓ ଅକ୍ସଫୋର୍ଡ ଡିକ୍‌ସିନାରିର ଶବ୍ଦ ଅଧ୍ୟୟନ ଆଦର୍ଶକୁ ମୁଖ୍ୟତଃ ଗ୍ରହଣକରିଛନ୍ତି ।

୨୫. ଓଡିଆ ଅଭିଧାନ ସଂକଳନ ଇତିହାସରେ ମୋହନ ପ୍ରସାଦ ଠାକୁର ଓ ଆମସ୍ ସଟନ ଦୁଇଜଣ ସ୍ମରଣୀୟ ବ୍ୟକ୍ତିତ୍ୱ । ଉଭୟଙ୍କ ଅଭିଧାନରେ ଶବ୍ଦଗୁଡିକ ବର୍ଣ୍ଣାନୁକ୍ରମରେ ସଜ୍ଜିତ । ମୋହନ ପ୍ରସାଦଙ୍କ ଓଡିଆ ଭୋକାବୁଲାରି ୧୮୧୧ ମସିହାରେ ପ୍ରକାଶ ପାଏ, ଏବଂ, ଏଥିରେ ଶବ୍ଦଗୁଡିକ ବିଷୟକ୍ରମରେ ସଂକଳିତ । ଅଣଓଡିଆମାନଙ୍କର ଆବଶ୍ୟକତା ପୂରଣ ଉଦ୍ଦେଶ୍ୟରେ ଓଡିଆ ଶବ୍ଦଗୁଡିକ ଇଂରାଜୀ ଅକ୍ଷରରେ ମଧ୍ୟ ଲିଖିତ । ମାତ୍ର ସଟନଙ୍କ ଅଭିଧାନ ତିନିଗୋଟି ଭାଗ, ଯଥା : ୧୮୪୧, Oriya Dictionary in Three Volumes : Vol I, Embracing an Introductory Grammar, An English and Oriya Dictionary and List of Official Terms (1841); Vol.II, Oriya Dictionary with Synonyms, ଓଡ଼ିଆ ଭାଷାର୍ଥାଭିଧାନ; Vol.III, Dictionary of Official

Terms, ସାଧୁଭାଷାଭିଧାନ (୧୮୪୩)ରେ ପ୍ରକାଶିତ । ଏବଂ, ପ୍ରତ୍ୟେକ ଭାଗରେ ଶବ୍ଦଗୁଡିକ ଅକ୍ଷରାନୁକ୍ରମେ ସଜ୍ଜିତ । ଏହି ଆୟାସସାଧ କାର୍ଯ୍ୟରେ ତାଙ୍କର ସହଯୋଗୀ ହୋଇଛନ୍ତି ଭୁବନାନନ୍ଦ ନ୍ୟାୟାଳଙ୍କାର । ମୋହନ ପ୍ରସାଦ ଓ ସଟନ, ଉଭୟଙ୍କ ଗ୍ରନ୍ଥରେ ଅକ୍ଷରାନୁକ୍ରମରେ ଶବ୍ଦଗୁଡିକର କେବଳ ଅର୍ଥ ଲିଖନ କରାଯାଇଥିଲେ ସୁଦ୍ଧା ସଟନଙ୍କ ଓଡିଆ ଭାଷାର୍ଥାଭିଧାନ ପ୍ରଥମ ଓଡିଆ ଅଭିଧାନର ମାନ୍ୟତା ଦାବିକରେ ।

୨୬. ନନ୍ଦଶର୍ମା, ଗୋପୀନାଥ (୧୯୧୬): ଶବ୍ଦତତ୍ତ୍ୱବୋଧ ଅଭିଧାନରେ ସଂଯୋଜିତ ଶବ୍ଦଗୁଡିକର ଏହା ଏକ ସ୍ୱଷ୍ଟ ବୈଚିତ୍ର୍ୟ ।

୨୭. ଦାଶ ଗୌରାଙ୍ଗ ଚରଣ (୨୦୦୩): ଶବ୍ଦତତ୍ତ୍ୱବୋଧ ଅଭିଧାନ ଓ ପଣ୍ଡିତ ଗୋପୀନାଥ ନନ୍ଦଶର୍ମା, ଏଷଣା, ଜୁନ୍ କଟକ, ଓଡିଆ ଗବେଷଣା ପରିଷଦର ମୁଖପତ୍ର । ନନ୍ଦଶର୍ମାଙ୍କ ଏହି ଗ୍ରନ୍ଥ ପ୍ରକାଶନ ପରେ ଶବ୍ଦଲିଖନ ଓ ଶବ୍ଦର ଉତ୍ସ ନିରୂପଣକୁ କେନ୍ଦ୍ର କରି ଓଡିଶାର ବିଦ୍ୱାନମାନଙ୍କ ମଧରେ ବିତର୍କ ଆରମ୍ଭ ହୋଇଛି ଏବଂ ଆଲୋଚକମାନେ ଅତ୍ୟନ୍ତ ଅଶାଳୀନ ଶବ୍ଦରେ ପରସ୍ପରକୁ ଆକ୍ଷେପ କରିଛନ୍ତି । ଶୀର୍ଷକ ଆଲୋଚନାରେ ସମକାଳରେ ପ୍ରକାଶିତ ବିତର୍କର ସକଳ ଉପାଦାନ ସଂଯୋଜିତ । ଏହି ଗ୍ରନ୍ଥରେ ସଂଯୋଜିତ କଟକର କର୍ତ୍ତୃତ୍ୱ, ଭାଷା ରାଜନୀତି ଓ ଗୋପୀନାଥ ନନ୍ଦଶର୍ମା ଆଲୋଚନା ଦ୍ରଷ୍ଟବ୍ୟ ।

୨୮. ପ୍ରହରାଜ, ଗୋପାଳଚନ୍ଦ୍ର (୧୯୨୧): ବର୍ଗ୍ୟ 'ବ', ବାରୁଣୀ, ପ୍ରଥମ ବର୍ଷ ୨ୟ ସଂଖ୍ୟା ।

୨୯. ମହାପାତ୍ର, ଖଗେଶ୍ୱର (୧୯୭୭): ଓଡିଆ ଲିପି, ଭାଷା ଓ ସାହିତ୍ୟ, କଟକ, ଗ୍ରନ୍ଥମନ୍ଦିର, ପୃ. ୩୦ ।

୩୦. ମହାପାତ୍ର, ବିଜୟ ପ୍ରସାଦ (----): ଓଡିଆ ଭାଷାତାତ୍ତ୍ୱିକ ପ୍ରବନ୍ଧ, କଟକ, ଗ୍ରନ୍ଥମନ୍ଦିର, ପୃ. ଏହି ସଂପର୍କରେ ଜାଣିବାପାଇଁ ଦ୍ରଷ୍ଟବ୍ୟ ।

୩୧. ମହାପାତ୍ର, ଗୋଦାବରୀଶ : ଦ୍ରଷ୍ଟବ୍ୟ, ପୁସ୍ତକ ସୂଚୀ ୧, (କ)

୩୨. ବେହୁରା, ବସନ୍ତ କୁମାର (୧୯୨୦): ପୂର୍ଣ୍ଣଚନ୍ଦ୍ର ଓଡିଆ ଭାଷାକୋଷରେ ଭୁଲ୍, ନବଭାରତ, ୫ମ ସଂଖ୍ୟା ।

୩୩. ସିଂ, ରାମ ପ୍ରସାଦ (୧୯୩୭): ଗଣ ସାହିତ୍ୟ ଓ ତାହାର ସମାଲୋଚନା, ସହକାର, ୧୧-୧୨ଶ ସଂଖ୍ୟା, ୧୩୪୪ ସାଲ, ପୃ ୧୦୪୨ ।

୩୪. ଦେବୀ, ସରଳା (୧୯୩୭): ଭାଷା ବ୍ୟବଧାନ, ସହକାର- ୧୧ଶ -୧୨ଶ ସଂଖ୍ୟା, ୧୩୪୪ ସାଲ, ପୃ. ୧୦୪୦- ୪୫ ।

୩୫. ମିତ୍ର, ରାଜେନ୍ଦ୍ର ଲାଲ୍ (୧୮୭୫, ୧୮୭୯) : ଆଣ୍ଟିକ୍ୟୁଟିକ ଅଫ୍ ଓଡିଶା, ଦୁଇ ଭାଗରେ ପ୍ରକାଶିତ । ଏହି ପୁସ୍ତକରେ ଓଡିଶାର ଭୌଗଳିକ ଅବସ୍ଥିତି, ରାଜନୀତିକ ଇତିହାସ ସହିତ, ସ୍ଥାପତ୍ୟ, ସଂଗୀତ, ନୃତ୍ୟ, ଧର୍ମଜୀବନ ସଂକ୍ରାନ୍ତରେ ଚର୍ଚ୍ଚା କରାଯାଇଛି । ଓଡିଆ ଜାତିର ଇତିହାସ ଚର୍ଚ୍ଚା କାଳରେ ସେ ସେମାନଙ୍କୁ ଭାରବାହକ, ପାଲିଙ୍କିବାହକ, ବ୍ୟାଧ (ଚଢେଇମାରୁ) ଇତ୍ୟାଦି ଶବ୍ଦରେ

ଚିତ୍ରଣ କରିଛନ୍ତି । ତାଙ୍କ ଭାଷାରେ- (a) Ud; to embrace, Undi; to soil with the affix raka, the country of the dirty people, (b) the land of hibiscus flower, (c) One who travels with a load, a porter, (d) Uriyas who are extensively emploed even to this day as load-carriers and palki-bearers (e) bird catcher (f) od is generally supposed to be a tribal designation and what is of greater importance, that this supposition is not a mere conjecture, but is fully borne out by tangible living evidence. P.3-4 ମାତ୍ର ସମକାଳରେ ଓଡିଆମାନେ ଏହି ଲେଖାର ପ୍ରତିବାଦ କରିନାହାନ୍ତି । Antiquities of Orissa, Vol.1, Published by Wiman & Company, 10 Hair Street, and S. Council House Street, Calcutta ଅନ୍ୟ ପକ୍ଷରେ, ନଗେନ୍ଦ୍ରନାଥ ବସୁଙ୍କ ବାଙ୍ଗ୍‌ଲା ବିଶ୍ୱକୋଷ ଓ ପ୍ରକୃତିମିତ୍ର ଅଭିଧାନରେ ଆମେ ରାଜେନ୍ଦ୍ରଲାଲଙ୍କ ବକ୍ତବ୍ୟର ପ୍ରତିଧ୍ୱନି ଶୁଣିବାକୁ ପାଉ । ଗୋପାଳଚନ୍ଦ୍ର ପ୍ରହରାଜ ଉତ୍କଳ ଶବ୍ଦର ବ୍ୟାଖ୍ୟା କାଳରେ ଏହି ଦୁଇ ଐତିହାସିକ ମନ୍ତବ୍ୟକୁ ହିଁ ଗ୍ରହଣ କରିଛନ୍ତି ।

୩୬. ଉତ୍କଳ ଦୀପିକା: ତା ୧୯. ୨. ୧୯୧୬ ପଣ୍ଡିତ ମୃତ୍ୟୁଞ୍ଜୟ ରଥଙ୍କ ଆଲୋଚନା ଦ୍ରଷ୍ଟବ୍ୟ ।

୩୭. ପ୍ରହରାଜ, ଗୋପାଳଚନ୍ଦ୍ର : ସତ୍ୟ ସମାଚାର ୨୪. ୭. ୧୯୩୫ ।

୩୮. ପ୍ରହରାଜ, ଗୋପାଳଚନ୍ଦ୍ର : ଭାଷାକୋଷପାଇଁ ସଫର, ଉତ୍କଳ ସାହିତ୍ୟ- ବୈଶାଖ / ୧୩୪୪ ସାଲ, ପୃ. ୩୫- ୩୭ ।

୩୯. ଦାସ, ନୀଳକଣ୍ଠ : ନବଭାରତ (ନୂତନ ପ୍ରସ୍ଥ), ଅକ୍‌ଟୋବର / ୧୩୪୬ ସାଲ ।



# ବାଜି ରାଉତ
# ଏକ ଆହ୍ୱାନର କାବ୍ୟାୟନ

## ଏକ

ପଢୁଆ ପିଲା ଓ ଶିକ୍ଷିତ ଓଡ଼ିଆମାନଙ୍କ ନିକଟରେ 'ବାଜିରାଉତ'ବେଶ୍ ପରିଚିତ ନାଁ । ଏ ଜାତିର ସାମାଜିକ, ରାଜନୀତିକ ଓ ସାହିତ୍ୟ-ଇତିହାସରେ ସେ ଏକ ବହୁ ଚର୍ଚ୍ଚିତ ଆତ୍ମା । ଚଷାଘରେ ଜନ୍ମ ହୋଇଥିଲା । ପୃଥିବୀରେ ଖୁବ୍ ଅଳ୍ପ ଦିନ, ଜମାରୁ ବା'ର-ତେର ବର୍ଷ (୧୯୨୬ ରୁ ୩୮) ଭୋଗ କରିଥିଲା । ୧୯୩୮ ମସିହା ଅକ୍ଟୋବର ମାସ ଏଗାର ତାରିଖ ଦିନ ଫଉଜମାନଙ୍କ ଗୁଳି ଚୋଟରେ ଚାଲିଗଲା । ଏକ ଅଧିକାର ପ୍ରମତ୍ତ ସମୂହ ଭିତରେ, ବିଶେଷ ଭାବରେ ଚାଲିଗଲା ବୋଲି ସେ ବୀର ହୋଇଗଲା । ଏବେ ବଂଚିଥିଲେ, ସେ କେମିତି ବଞ୍ଚୁଥା'ନ୍ତା, କ'ଣ କରୁଥା'ନ୍ତା, ଏତେ କଥା ଆମେ କଳ୍ପନା ବି କରିପାରିବା ନାହିଁ । ଏବଂ, ଏ କଥା ମଧ୍ୟ କହିପାରିବା ନାହିଁ ଯେ, ଅଳପ କାଳର ଜୀବନକୁ ସେ କେମିତି ବଞ୍ଚୁଥିଲା । ମାତ୍ର ଯେଉଁଦିନ ସେ ସମରଭୂମିରେ ସତକୁ ସତ *ରାଉତ* ହୋଇଗଲା, ଏମିତି ସେମିତି *ରାଉତ* ନୁହେଁ, *ବାଳୁତ-ମହା-ରାଉତ*, ତା'ପରେ ଯାଇଁ ଆମେ ତା'ର ଅତୀତକୁ ଖୋଜିଲୁ । ତା'ର ବୀରପଣର ପ୍ରତିଷ୍ଠାପାଇଁ କେତେ ଗପ, କବିତା, ନାଟକ, ଗୀତ, ଜୀବନ-କଥା ଲେଖିଲୁଁ, ଅନ୍ୟମାନଙ୍କୁ ତତେଇବାର ଏକ ଅଣୁଘଟକ ଭାବେ ତା ଜୀବନକୁ ଇସ୍ତମାଲ୍ କଲୁ । ସେ ଜନ୍ମିଥିବା ଏକ ଆୟତନ, ଯାହାକୁ ସେ କାଳରେ ଏ ଦେଶର ଅନ୍ଧାର ରାଇଜ ବୋଲି କୁହାଯାଉଥିଲା, ସେଠି କାଳେ ସ୍ୱାଭିମାନର ଦିହୁଡ଼ି ଜଳିଲା । ବାର ବରଷର ବାଜିଆ–*ବାଜି ରାଉତ* ପ୍ରତୀକଟିଏ ହୋଇଗଲା । ସେ ଦେବତା ହେଲା । ତା'ପାଇଁ ସ୍ମୃତିସ୍ତମ୍ଭ ଗଢ଼ାଗଲା । ତା' ଉତ୍ତରାଧିକାରୀମାନଂକୁ ତା'ରି ପରି ହେବାଲାଗି, ତା'ରି ପରି ଜୀବନ ବଞ୍ଚିବାଲାଗି ବିଶେଷ ବିଶେଷ ଉତ୍ସବରେ, କେତେ ରୀତିରେ ଆହ୍ୱାନ ଦିଆଗଲା । ମାତ୍ର, ବାଜି-କୈନ୍ଦ୍ରିକ ଏ ସକଳ ଆହ୍ୱାନ ଆମ ଚେତନାରେ ସତରେ କ'ଣ ବିଶ୍ୱାସ ସୃଷ୍ଟି କରିପାରିଛି ? ଆମକୁ ଏକ ରାସ୍ତାର ଚଉଛକିରେ ବିଚରା ଗୋଟି ହେବାର ଦୁର୍ଯୋଗ ଆଣି ଦେଇ ନାହିଁ ତ ?

ଯାବତୀୟ ସଂଶୟରୁ ମୁକ୍ତିପାଇଁ, ବାଜିରାଉତ ସଂକ୍ରାନ୍ତ ଏହି ଆଲୋଚନାରେ ଏ ଯାବତ୍ ଚଳିଆସୁଥିବା କାହାଣୀଗୁଡ଼ିକରୁ ଏକ ଗ୍ରହଣଯୋଗ୍ୟ ସତ୍ୟ ଆବିଷ୍କାର ଉଦ୍ୟମ କରାଯାଇଛି ।

## ଦୁଇ

ବାଜି ରାଉତର ଜୀବନକୁ କେନ୍ଦ୍ରକରି ଓଡ଼ିଶାର ସାଧାରଣ ଜନତାଙ୍କ ମଧରେ ଯେଉଁ କାହାଣୀ ଜୀବନ୍ତ ଅଛି, ତାହା ଏହିପରି : ଢ଼େଙ୍କାନାଳ ଜିଲ୍ଲାର ବ୍ରାହ୍ମଣୀ ନଈ କୂଳରେ ଏକ ଗାଁ ନୀଳକଣ୍ଠପୁର । ସେଇ ଗାଁରେ ବାଜିର ଘର । ଘରେ ତା'ର ବିଧବା ମା' । ଗାଁରେ କାମଧନ୍ଦା କରି ମା'ପୁଅ ଦୁହେଁ ଚଳିଯାଉଥିଲେ । ବାଜି ପିଲାବେଳେ ଗାଁରେ ଗାଈ ବି ଜଗୁଥିଲା ।

ତାହା ୧୯୩୮ ମସିହାର କଥା । ଢ଼େଙ୍କାନାଳର ରାଜା ଶଙ୍କରପ୍ରତାପଙ୍କ ଅପଶାସନରେ ପ୍ରଜାମାନେ ଆତଙ୍କିତ । ପ୍ରଜାଙ୍କ ଉପରେ ହଜାର ପ୍ରକାର ମାଗଣ ଆଉ କର । ଅନ୍ଧାରୀ ଶାସନରୁ ମୁକ୍ତିପାଇଁ ପ୍ରଜାମାନେ ଆନ୍ଦୋଳନ କରୁଥା'ନ୍ତି । ପ୍ରଜାମଣ୍ଡଳ ଗଠନ କରିଥା'ନ୍ତି । ନେତାମାନେ ରାଜାଙ୍କୁ କୌଣସି ପ୍ରକାର କର ନ ଦେବା ଓ ବେଠି ନ ଖଟିବାପାଇଁ ପ୍ରଜାମାନଙ୍କୁ ନାନା ଉପାୟରେ ସଚେତନ କରୁଥାଆନ୍ତି । ପ୍ରଜାମାନଙ୍କର ମେଳି ରାଜାଙ୍କ ଅହଂକାର ପ୍ରତି ଥିଲା ଏକ ଶକ୍ତ ଆଘାତ । ମେଳିଆମାନଙ୍କୁ ଦମନ କରିବାଲାଗି ସେ ଗୋରା ସରକାରଙ୍କର ସହାୟତା ଲୋଡ଼ିଲେ । ଫଳତଃ, ଢ଼େଙ୍କାନାଳ ଫଉଜମାନଙ୍କର ଛାଉଣୀରେ ପରିଣତ ହୋଇଗଲା । କେତେ ରାଜପ୍ରତିବାଦୀ ଗୁଳି ଚୋଟରେ ମଲେ, କେତେ ବନ୍ଦୀ ହେଲେ, କେତେ ଗାଁ ପ୍ରଜାଶୂନ୍ୟ ହୋଇଗଲା । ମାତ୍ର ରାଜାଙ୍କ ଜୁଲମ ଶେଷହେଲାନି ।

ତାହା ଅଶିଣ ମାସର କଥା । ଭୁବନ ଅଞ୍ଚଳରେ ଆନ୍ଦୋଳନ ଅଧିକ ସକ୍ରିୟ ଥାଏ । ଆନ୍ଦୋଳନକାରୀମାନଙ୍କୁ ଶିକ୍ଷା ଦେବାଲାଗି ପୁଲିସ୍ ଫଉଜ ଭୁବନ ଗାଁକୁ ଗଲେ । ଭୁବନ, ରାଇଜର ସବୁଠାରୁ ବଡ଼ ଗାଁ । ରାତି ଅଧରେ ଗାଁରେ ଆତଙ୍କ ସୃଷ୍ଟି କରି, କେତେ ଜଣ ସଂଗ୍ରାମୀଙ୍କୁ ହତ୍ୟାକରି ସେମାନେ ପହଞ୍ଚିଲେ ବ୍ରାହ୍ମଣୀ କୂଳର ନୀଳକଣ୍ଠପୁର ଗାଁର ଘାଟରେ । ଘାଟ ପାରିହୋଇ ଢ଼େଙ୍କାନାଳ ଚାଲିଯିବା ହିଁ ସେମାନଙ୍କର ଉଦ୍ଦେଶ୍ୟ ।

ଘାଟପାଖରେ ସେମାନେ ପହଞ୍ଚିଲାବେଳକୁ ରାତି ପ୍ରାୟ ପାହାନ୍ତା । ଆକାଶରେ ଆକାଶେ ମେଘ । ଝିପିଝିପି ବରଷା । ଶୀତୁଆ ପବନ । ଏବଂ, ଅନ୍ଧାର । ଘାଟପାଖରେ ପହଞ୍ଚି ସେମାନେ ଦେଖିଲେ, ନଈ ପାରିହେବାପାଇଁ ଡ଼ଙ୍ଗା ନାହିଁ । କିଛି ସମୟ ପରେ ସେମାନଙ୍କର ଆଖିରେ ପଡ଼ିଲା ନଈ ମଝିରେ ଡ଼ଙ୍ଗାଟିଏ । କୂଳକୁ ଡ଼ଙ୍ଗା ଆଣିବାପାଇଁ ସେମାନେ ନାଉରିଆକୁ ଆଦେଶଦେଲେ । ପ୍ରଥମେ ତ ଡ଼ଙ୍ଗା ଭିତରୁ କିଛି ଜବାବ ଆସିଲା ନାହିଁ । ଅନେକ ଧମକ ପରେ ଯେଉଁ ଉତ୍ତର ଆସିଲା, ତାହା ଥିଲା ଏହିପରି–ଏକ କଅଁଳ ତୁଣ୍ଡରେ ବଜ୍ରନିର୍ଘୋଷ, "ପ୍ରଜାମଣ୍ଡଳର ଆଦେଶ ନାହିଁ, ମୁଁ ଡ଼ଙ୍ଗା ନେଇପାରିବି ନାହିଁ ।" ଗୋରା ସିପାହୀ ତାକୁ ପୁଣି ଧମକ ଦେଇ କହିଲେ, "ଶୀଘ୍ର ଡ଼ଙ୍ଗା ନ ଆଣିଲେ ତୋତେ ମରିବାକୁ ପଡ଼ିବ ।" ମାତ୍ର ମେଞ୍ଚଡ଼ ଟୋକାର ତୁଣ୍ଡରେ ଥିଲା ସେଇ ଗୋଟିଏ କଥା–*ନାଆ ନେବିନାହିଁ, ଆଦେଶ ନାହିଁ* । ଅବାଧ ବଳଟେ ପିଲାର ଏ ସାହସ ପୋଲିସ୍ ପ୍ରତି ଥିଲା ଏକ ଭୟଙ୍କର ଚାଲେଞ୍ଜ । ସେମାନଙ୍କର ବନ୍ଧୁକର ଗୁଳି ଡ଼ଙ୍ଗାମଙ୍ଗରେ ଦର୍ପ ପ୍ରକାଶୁଥିବା ବାଜିର ମଥାରେ ବାଜିଲା । ସେ ସେଇଠି ଟଳି ପଡ଼ିଲା । ମାତ୍ର ତା କଅଁଳ କଣ୍ଠରୁ ପ୍ରସରି ଯାଉଥିଲା ପ୍ରତିବାଦର ମନ୍ଦ୍ର ସ୍ୱର– "ପ୍ରଜାମଣ୍ଡଳର ଲୋକେ, କିଏ କେଉଁଠି ଅଛ ? ଧାଇଁ ଆସ, ପୋଲିସ୍ ଆମ ଘାଟ ଉପରେ ।"

ଫଉଜ ଡଂଗା ଆଣି ଉପରେ ବସିଲେ । ତା' ଡ଼ାକ ଶୁଣି ପାଖରେ କେଉଁଠି ଲୁଚିରହିଥିବା ବୀରମାନେ କୂଳ ଉପରୁ ପାଣି ପାଖକୁ ଧାଇଁଆସିଲେ । ଡ଼ଙ୍ଗା ଦଉଡ଼ି ଓ ମଙ୍ଗ ଭିଡ଼ିଧରିଲେ । ଫଉଜ ଓ ସଂଗ୍ରାମୀମାନଙ୍କ ମଧ୍ୟରେ ଲଢ଼େଇଚାଲିଲା । ନଈ ଆର ପଟକୁ ଯଥା ଶୀଘ୍ର ଚାଲିଯିବାଲାଗି ଯୋଜନାକରିଥିବା ଫଉଜର ବନ୍ଧୁକଗୁଡ଼ିକ ଗର୍ଜିଉଠିଲେ । ଅନେକ ସଂଗ୍ରାମୀ ଗୁଳିର ଶିକାରହେଲେ । ବ୍ରାହ୍ମଣୀର ଫୁଲିଲା ଛାତି ସେମାନଙ୍କ ରକତରେ ଲାଲ ହୋଇଉଠିଲା ।

ବାଜି ନାମକ ବାରବର୍ଷ ବୟସର ବକଟେ ମଣିଷ ପିଲାର ଏ ବୀରତ୍ୱ ଆନ୍ଦୋଳନକାରୀମାନଙ୍କପାଇଁ ଥିଲା ରସଦ ପରି । ତା'ର ଶେଷ କେଇପଦ କଥା ଆନ୍ଦୋଳନକୁ ଅସଲ ବାଟ ଦେଖାଇବାରେ ସୁଯୋଗ ସୃଷ୍ଟିକଲା । ସେ ଏକ ଅନ୍ଧାରି ରାଇଜରେ, ରାଜନୀତିକ ଓ ସାମାଜିକ ପରିବର୍ତ୍ତନ ଆଣିବାର କାରଣ ହେଲା ।

ବାଜି ବିଷୟରେ କୁହାଯାଇଥିବା ଏ କଥାର ସତରେ କୌଣସି ପ୍ରାମାଣିକତା ଅଛି କି ? ପ୍ରାମାଣିକତା ସଂକ୍ରାନ୍ତ ପ୍ରଶ୍ନ ଆଜିର ନୁହେଁ, ପ୍ରାୟ ଦୀର୍ଘ ସତୁରୀ ବର୍ଷର । ଯୁକ୍ତିପ୍ରିୟମାନେ ପଚାରନ୍ତି, ଢେଙ୍କାନାଳ ନାମକ ଅନ୍ଧାରି ମୂଲକର ଗଡ଼ଜାତରେ ବାପଛେଉଣ୍ଡ ପିଲାଟି ଆପଣାର ମଣ୍ଡଳ ଓ ଅଧିକାର ସଂପର୍କରେ ସତରେ କ'ଣ ଏତେ ମାତ୍ରାରେ ସଚେତନ ଥିଲା ? ଏହା କ'ଣ ସମ୍ଭବ ? ଘାଟଜଗା ପାଳି ଥିଲା ବୋଲି ସେଦିନ ରାତିରେ ଆପଣାର ଏଡ଼େ ବକଟେ ପୁଅକୁ କୌଣସି ମା' କ'ଣ ନଈ କୂଳରେ ଏପରି ଅବସ୍ଥାରେ ଛାଡ଼ି ଦେଇପାରେ ? ତା'ର କ'ଣ ଭାଇ ବିରାଦର ନଥିଲେ ? ସଂଗ୍ରାମୀମାନେ କ'ଣ ପିଲାଟି ଉପରେ ଗୁରୁ ଦାୟିତ୍ୱ ନଦିଦେବାପାଇଁ ଉଚିତ୍ ମଣିଥିଲେ ? ରକ୍ତମୁଖା ସିପାହୀ ଓ ବାଜି ସତରେ କଣ ଏମିତି ଭାବରେ କଥା କଟାକଟି ହୋଇଥିଲେ ? ଘଟଣା କ'ଣ ସତରେ ଘଟିଥିଲା ସୁଲୁସୁଲିଆ ପବନ, ଝିପିଝିପି ବରଷା ଓ ଘନ ଅନ୍ଧାର ରାତିରେ ? ଏ ପ୍ରଶ୍ନଗୁଡ଼ିକ ଯେ ଏକାନ୍ତଭାବେ ଅମୂଳକ–ଏ କଥା ନୁହେଁ । ସେଗୁଡ଼ିକର ନିର୍ମୋହ ଓ ତଥ୍ୟଭିତ୍ତିକ ଚର୍ଚ୍ଚା କରାଯାଇପାରେ ।

## ତିନି

ବାଜିରାଉତ ସଂପର୍କରେ ଯୁକ୍ତବାଦୀମାନଙ୍କର ଯେଉଁ ପ୍ରଥମ ପ୍ରଶ୍ନ ଆମକୁ ଚକିତକରେ, ତାହା ତା'ର ଅଧିକାର-ସଚେତନ ମାନସିକତା ସଂକ୍ରାନ୍ତ । ତଥାକଥିତ ଜାତୀୟତାବାଦୀମାନଙ୍କର ଯୁକ୍ତି, ମାତ୍ର ବାର ବର୍ଷ ବୟସର ଏକ ବାଳକର ଅଧିକାର-ସଚେତନ ମାନସିକତାକୁ ଆମେ ପୂରାପୂରି ଭିତ୍ତିହୀନ ବୋଲି କହିପାରିବା ନାହିଁ । ଅଧିକାର ପ୍ରମତ୍ତମାନଙ୍କର ଦୌରାତ୍ମ୍ୟ ଯେତେବେଳେ ସେମାନଙ୍କ ଆୟତ୍ତ ଭିତରେ ନ ଥାଏ, ସେତିକି ବେଳେ ହିଁ ସମାଜ ଭିତରେ ଅନେକ ଅବିଶ୍ୱସନୀୟ ଘଟଣା ଘଟିଥାଏ । ବିପ୍ଳବର ଦେଶ ଭାରତ, ଗ୍ରୀସ୍, ଆମେରିକା, ଫ୍ରାନ୍ସ୍, ରୁଷ୍ ଆଦି ଦେଶଗୁଡ଼ିକରେ ସଂଘଟିତ ବିପ୍ଳବର ଇତିହାସ ଆମକୁ ସେହି କଥା କୁହେ । ବିପ୍ଳବରେ କେବଳ ବୟସ୍କମାନେ ଯେ ଆପଣା ଆପଣା ଜୀବନକୁ ବାଜି ଲଗାଇଥା'ନ୍ତି, ତାହା ନୁହେଁ । ବିପ୍ଳବୀର ବୟସ ନ ଥା'ଏ, ଜାତି ନ ଥା'ଏ, ଧର୍ମ ନ ଥା'ଏ, ବଂଶଗତ ସ୍ୱାଭିମାନ ବି ନ ଥାଏ । ତା'ର କେବଳ ଥାଏ ଗୋଟିଏ ପରିଚୟ, ସେ ସମାଜ ପରିବର୍ତ୍ତନର ସ୍ୱପ୍ନ ଦେଖୁଥିବା ଏକ ସଚେତନ ଓ ସଂଗ୍ରାମୀ ମଣିଷ ।

ବାଜି ରାଉତ ନାମକ ମଣିଷ ପିଲାଟି ଯେଉଁ ରାଜ୍ୟରେ ଜନ୍ମ ହୋଇଥିଲା, ଢେ଼ଙ୍କାନାଳ ନାମରେ ପରିଚିତ ସେହି ଆୟତନଟି ଚଳିତ ଶତାବ୍ଦୀର ଦ୍ୱିତୀୟ, ତୃତୀୟ ଓ ଚତୁର୍ଥ ଦଶକରେ ସାରା ଭାରତବର୍ଷରେ ଥିଲା 'ବର୍ବରତନ୍ତ୍ର'ର ଏକ ଚମତ୍କାର ଉଦାହରଣ । ଓଡ଼ିଶାର ଗଡ଼ଜାତ ମଧ୍ୟରେ ଢେ଼ଙ୍କାନାଳର ମହାରାଜା ଆପଣାକୁ ଏକାଙ୍ଗ ଚକ୍ରବର୍ତ୍ତୀ ବୋଲି ଜ୍ଞାନ କରୁଥିଲେ । ତେଣୁ ସେହି ନ୍ୟାୟରେ ସମଗ୍ର ରାଜ୍ୟ ଥିଲା ତାଙ୍କ ଉପଭୋଗର ସାମଗ୍ରୀ । ରାଜା, ତାଙ୍କ ପରିବାରୀ, କର୍ମଚାରୀ ଓ ତୋଷାମଦକାରୀମାନଙ୍କ ଦୌରାତ୍ମ୍ୟ ଏତେ ମାତ୍ରାରେ ରାଜକୀୟ ଥିଲା ଯେ, ତାହା ଶୁଣିଲେ କଳ୍ପକଥା ପରି ଲାଗେ । ରାଜ୍ୟରେ କରର ପ୍ରକାର ଓ ପରିମାଣ ଥିଲା ମାତ୍ରାଧିକ । ରାଜ ଆଦେଶକୁ ଅସ୍ୱୀକାର କରୁଥିବା ଦ୍ରୋହୀମାନଙ୍କପାଇଁ ଦଣ୍ଡର ବିଧି ମଧ୍ୟ ଥିଲା ବିଚିତ୍ର । ଅପରାଧୀମାନଙ୍କୁ ସ୍ୱମଳମିଶ୍ରିତ ପାଣି ପିଇବାକୁ ପଡୁଥିଲା । ସନ୍ନ୍ୟାସୀମାନଙ୍କୁ ଗଣିକାମାନଙ୍କ ଯୋନିରେ ମୁହଁ ଘସିବାକୁ ହେଉଥିଲା । ନିଶ ଓ ଦାଢ଼ୀଧାରୀମାନଙ୍କ ଲୋମଗୁଡ଼ିକୁ ବପୁବନ୍ତମାନଙ୍କ ହାତରେ ନିର୍ମୂଳ ହେବାକୁ ପଡୁଥିଲା ।[୧] ଏବଂ, ଶୁଣାଯାଏ, ରାଜ୍ୟର ପ୍ରଥମ ରଜୋବତୀ ସୁନ୍ଦରୀ ତରୁଣୀମାନେ ପ୍ରଥମେ ରାଜଭୋଗସାମଗ୍ରୀରେ ପରିଣତ ହେଉଥିଲେ । ରାଜକୀୟ ବିଳାସ ଓ ଔଦ୍ଧତ୍ୟର କରୁଣତମ ପ୍ରତୀକ ଥିଲା ଏକଶହ ଏକ କୋଠରୀ ବିଶିଷ୍ଟ ଯତନନଗର ନାମକ ଭବ୍ୟ ପ୍ରାସାଦ । ଆପଣା ରାଜ୍ୟର ପ୍ରଜାମାନଙ୍କୁ ବହିର୍ଜଗତର ସଂସ୍ରବରୁ ଦୂରରେ ରଖିବାଲାଗି ବାହାରକୁ ପଢ଼ିବାପାଇଁ ଯିବାକୁ ଅନୁମତି ଏତେ ସହଜରେ ମିଳୁ ନ ଥିଲା । ରାଜ୍ୟ ଭିତରକୁ ଖବରକାଗଜ ଆସୁ ନ ଥିଲା । ଜାତୀୟବାଦୀ ନେତାମାନଙ୍କୁ ରାଜ୍ୟରେ ପ୍ରବେଶର ଅଧିକାର ପ୍ରାୟ ମିଳୁ ନ ଥିଲା । ବୃଷଭ ଇବ ମହାରାଜା ସମଗ୍ର ରାଜ୍ୟକୁ ଆପଣାର ଏକ ପ୍ରକାର ଅବାଧ ବିହାର ଭୂମିରେ ପରିଣତ କରି ଦେଇଥିଲେ । ପ୍ରଜାମାନଙ୍କ ଯାତନା ଓ ଯନ୍ତ୍ରଣାର ସୀମା ନ ଥିଲା । ମଣିଷ ହୋଇ ସେମାନେ ଜନମ ହୋଇଥିଲେ, ମାତ୍ର ମଣିଷ ପରି ବଞ୍ଚୁ ନ ଥିଲେ ।

ଏପରି ଏକ ରାଇଜରେ ଶବପରି ପଡ଼ି ରହିଥିବା ମଣିଷମାନଙ୍କୁ ଶକ୍ତିମୟ କରିବାପାଇଁ ସେକାଳରେ ଯେଉଁମାନେ ଦୁଃସାହସ କରିଥିଲେ, ସେମାନଙ୍କ ମଧ୍ୟରେ ପ୍ରମୁଖ ଥିଲେ, ହରମୋହନ ପଟ୍ଟନାୟକ ଏବଂ ବୈଷ୍ଣବ ଚରଣ ପଟ୍ଟନାୟକ । ସେତେବେଳେକୁ ସେମାନଙ୍କର ବୟସ ପ୍ରାୟ ଚବିଶ । ଉଭୟ ରେଭେନ୍‌ସା କଲେଜର ଛାତ୍ର । ରହୁଥା'ନ୍ତି ତଳତେଲେଙ୍ଗା ବଜାରରେ । ତାହା ୧୯୩୮ ମସିହା ଜାନୁଆରି ମାସର ୧୯ ତାରିଖ । ଦୁଇ ବନ୍ଧୁ ବସାଘର ପାଖରେ ଥିବା ବତୀଖୁଣ୍ଟ ତଳେ ଢେ଼ଙ୍କାନାଳ ରାଜ୍ୟରେ ଏକ ମଣ୍ଡଳ ଗଢ଼ିବାର ସ୍ୱପ୍ନ ଦେଖିଲେ ଏବଂ ଯଥାଶୀଘ୍ର ତାହାକୁ କାର୍ଯ୍ୟକାରୀ କରିବାପାଇଁ ସିଦ୍ଧାନ୍ତନେଲେ । ସେମାନଙ୍କ ସହ ଯୋଗ ଦେଲେ ଲକ୍ଷ୍ମୀଧର ସାହୁ । ହରମୋହନ ପଟ୍ଟନାୟକ ସଭାପତି, ଲକ୍ଷ୍ମୀଧର ସାହୁ ସମ୍ପାଦକ ଭାବେ ମନୋନୀତ ହେଲେ । ମହେଶ୍ୱର ସୁବାହୁସିଂ, ବୈଷ୍ଣବ ଚରଣ ପଟ୍ଟନାୟକ, ପୂର୍ଣ୍ଣଚନ୍ଦ୍ର ମହାପାତ୍ର, କୃତ୍ତିବାସ ପ୍ରଧାନ ସମେତ ଆହୁରି ଆଠଜଣ ସଭ୍ୟ ରହିଥିଲେ । ସଂଗଠନର ପରାମର୍ଶଦାତା ରହିଲେ ଭଗବତୀଚରଣ ପାଣିଗ୍ରାହୀ, ନବକୃଷ୍ଣ ଚୌଧୁରୀ, ମାଳତୀଦେବୀ ଚୌଧୁରୀ, ସାରଙ୍ଗଧର ଦାସ ଏବଂ ଗୌରାଙ୍ଗ ଚନ୍ଦ୍ର ଦାସ । ଢେ଼ଙ୍କାନାଳ ପ୍ରଜାମଣ୍ଡଳ ସଂଗଠନ ବିଧିବଦ୍ଧଭାବେ ଜନ୍ମ ନେଲା ୧୯୩୮ ମସିହା ସେପ୍ଟେମ୍ବର ମାସ ୨ ତାରିଖରେ, କଟକ ଜିଲ୍ଲାର କେନାପୁରଠାରେ "ସର୍ବଭାରତୀୟ କୃଷକ ଦିବସ" ପାଳନ ଅବସରରେ ।[୨]

ଓଡ଼ିଶାର ଚବିଶ ଗଡ଼ଜାତ ରାଜ୍ୟରେ ମହତି ମହିପତିମାନଙ୍କର ପ୍ରଜାମାନଙ୍କ ଉପରେ ଅମାନବୀୟ ଅତ୍ୟାଚାର କିଛି ନୂଆ କଥା ନଥିଲା । ପ୍ରଜାମାନେ ଥିଲେ କର୍ତ୍ତୃତ୍ୱର ଭୋଗସାମଗ୍ରୀ । ବିଶେଷତଃ, ଇଂରେଜ ଶାସନ କାଳରେ ସେମାନଙ୍କର ସମସ୍ୟା ବହୁଗୁଣିତ ହୋଇଗଲା । ସେମାନେ ଅବଶ୍ୟ ପ୍ରତିବାଦ କରୁଥିଲେ, ମାତ୍ର ଶୋଷିତମାନଙ୍କର ସଂଗଠନ ନଥିବାରୁ ଆନ୍ଦୋଳନ ଦାନା ବାନ୍ଧିପାରୁ ନଥିଲା । ୧୯୨୧ ମସିହାରେ ଭାରତୀୟ ଜାତୀୟ କଂଗ୍ରେସର ଇଂରେଜ ପ୍ରଶାସନ ସହ ସକଳ କ୍ଷେତ୍ରରେ ଅସହଯୋଗ କରିବାପାଇଁ ବିଭିନ୍ନ ଗୋଷ୍ଠୀର ଜନସାଧାରଣଙ୍କୁ ଆଶ୍ରା ମିଳୁ ନଥିଲା । ଏହି ଆହ୍ୱାନରୁ ଜନ୍ମ ହୋଇଥିଲା କୃଷକ ଓ ଶ୍ରମିକମାନଙ୍କର ସ୍ୱତନ୍ତ୍ର ସଂଗଠନ ଏବଂ ତାହା ପରବର୍ତ୍ତୀ କାଳରେ ଭାରତୀୟ ଜାତୀୟ କଂଗ୍ରେସ ସମାଜବାଦୀ ଗୋଷ୍ଠୀର ଉଦ୍ଭବର କାରଣ ହୋଇଥିଲା । ଭାରତର ଆତ୍ମା ବୋଲି କୁହାଯାଉଥିବା ଗ୍ରାମଗୁଡ଼ିକରେ ଜମିମାଲିକ, ପ୍ରଶାସକ ଓ ରାଜାମାନଙ୍କ ଶୋଷଣର ଶିକାରହେଉଥିବା ସାଧାରଣ ମଣିଷର ସମସ୍ୟାଗୁଡ଼ିକ ପ୍ରତି ଉଦାସୀନ ରହି ରାଜନୀତିକ ସ୍ୱାଧୀନତା ଯେ ହାସଲ କରାଯାଇ ନ ପାରେ–କଂଗେସ ନେତାମାନଙ୍କର ଚେତନାରେ ଏହି ଧାରଣା ସୃଷ୍ଟି ହୋଇଥିଲା ।[୩] ଉତ୍ତର ଭାରତର ପ୍ରତାପଗଡ଼ ଓ ରାଇବରେଲି ଅଞ୍ଚଳରେ ଜମିମାଲିକମାନଙ୍କ ବିରୋଧରେ କୃଷକମାନଙ୍କର ସଂଗଠିତ ଆନ୍ଦୋଳନ ସକ୍ରିୟ ହୋଇଉଠିଲା । ଗୋରା ପ୍ରଶାସନ, ତାଲୁକଦାର ଓ ରାଜାମାନଙ୍କ ଚକ୍ରବ୍ୟୂହକୁ ଭେଦିବାରେ ସେମାନେ ସମର୍ଥ ହେଲେ । ୧୯୧୭ ମସିହାରେ ପ୍ରତାପଗଡ଼ ଜିଲ୍ଲାର ପଟ୍ଟି ତହସିଲ୍ ଅନ୍ତର୍ଗତ ଛରେ ନାମକ ଛୋଟ ଗ୍ରାମର ଶ୍ରୀ ଝିଙ୍ଗୁରା ସିଂହ ଓ ସହଦେବ ସିଂହଙ୍କ ଉଦ୍ୟମରେ ପ୍ରଥମ କିଷାନ ସଭା ଗଠିତ ହେଲା । ମଦନ ମୋହନ ମାଲବ୍ୟ ମଧ୍ୟ ଅନୁରୂପ ଏକ ସଂଗଠନର ଆବଶ୍ୟକତା ଏବଂ ଏହାର ପ୍ରସାରଣ ଉପରେ ଗୁରୁତ୍ୱ ଦେଇଥିଲେ ।

କୃଷକ ଆନ୍ଦୋଳନକୁ ସକ୍ରିୟ ଓ ସମ୍ପ୍ରସାରିତ କରିବାରେ ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ପଦକ୍ଷେପ ନେଇଥିଲେ ଶ୍ରୀଯୁକ୍ତ ରାମଚନ୍ଦ୍ର । ସମାଜର ସକଳ ଜାତି, ବର୍ଣ୍ଣ ଓ ଗୋଷ୍ଠୀର ମଣିଷମାନଙ୍କୁ କୃଷକ ସଭାର ଆୟତନକୁ ଆଣିଲେ ଏବଂ ଏଥିପାଇଁ ତୁଳସୀଦାସଙ୍କ 'ରାମଚରିତମାନସ' ଗ୍ରନ୍ଥରେ ପ୍ରତିଫଳିତ ସନ୍ଥମାନସିକତାକୁ ସେ ଅସ୍ତ୍ର ଭାବରେ ଗ୍ରହଣ କରିଥିଲେ । ମାତ୍ର ଦୁଇ ବର୍ଷ ମଧ୍ୟରେ (୧୯୧୮–୨୦) କିଷାନ ସଭାର ସଂଖ୍ୟା ଉତ୍ତର ଭାରତର କେତୋଟି ଜିଲ୍ଲାରେ ପ୍ରାୟ ୩୦୦କୁ ଟପିଯାଇଥିଲା ।[୪] ରାମଚନ୍ଦ୍ର ଇତି ମଧ୍ୟରେ ବାବା ରାମଚନ୍ଦ୍ରରେ ରୂପାନ୍ତରିତ ହୋଇଯାଇଥିଲେ । ତାଙ୍କ ସାଙ୍ଗଠନିକ ଶକ୍ତିରେ ଆତଙ୍କିତ ବ୍ରିଟିଶ୍ ସରକାର ତାଙ୍କୁ ବହୁବାର ବନ୍ଦୀକରି ମଧ୍ୟ ଆନ୍ଦୋଳନର ଦମନରେ ସଫଳ ହୋଇ ପାରି ନ ଥିଲା । ୧୯୨୧ ମସିହା ଜାନୁଆରି ମାସରେ ରାଇବରେଲୀର ସାଇ ନଦୀ କୂଳରେ ଶାସକ ଓ ନିପୀଡ଼ିତମାନଙ୍କ ମଧ୍ୟରେ ସଂଘଟିତ ବିଦ୍ରୋହ ଥିଲା ଭାରତ ଇତିହାସରେ ଅନ୍ୟତମ ପ୍ରମୁଖ ଘଟଣା । ଏଥିରେ ଅହିଂସ କୃଷକମାନେ ଅଧିକାରପ୍ରମତ୍ତ ଇଂରେଜ ପ୍ରଶାସନ ଓ ଜମିଦାରଙ୍କ ଗୁଳିର ଶିକାର ହୋଇଥିଲେ । ସେମାନଙ୍କ ସରଳତା ବାପୁଜୀ ଓ ଜବାହରଲାଲ୍‌ଙ୍କୁ ମଧ୍ୟ ଚକିତ ଓ ଅଭିଭୂତ କରିଥିଲା ।[୫] ଉତ୍ତର ଭାରତରେ ଚଳିତ ଶତାବ୍ଦୀର ଦ୍ୱିତୀୟ ଦଶକର ଶେଷ ପର୍ଯ୍ୟାୟରେ ଆରମ୍ଭ ହୋଇଥିବା "କୃଷକ ସଭା" ଏବଂ ପରବର୍ତ୍ତୀ କାଳରେ 'ଅଲ୍ ଇଣ୍ଡିଆ ଷ୍ଟେଟ୍‌ସ୍ ପିପୁଲ୍ କନ୍‌ଫରେନ୍‌ସ୍'ରେ ଚିହ୍ନିତ ହୋଇଥିଲା ଏବଂ ତାହାର ଏକ ଶାଖା ତୃତୀୟ ଦଶକରେ ପ୍ରଥମ

ପାଦରେ ଓଡ଼ିଶାର ମାଟିରେ ଅଙ୍କୁରିତ ହୋଇଥିଲା । କେବଳ ମୋଗଲବନ୍ଦୀ ଅଞ୍ଚଳ ନୁହେଁ, ଗଡ଼ଜାତର ମଦମତ୍ତ ଶାସକମାନଙ୍କର ଅପଶାସନରେ ଅତିଷ୍ଠ ପ୍ରଜାମାନେ ମଧ୍ୟ ପ୍ରଶାସନ ବିରୋଧରେ ପ୍ରତିବାଦ କରିବାକୁ ଆଗେଇ ଆସିଲେ । ଭାରତବର୍ଷରେ ଇଂରେଜମାନଙ୍କର ପ୍ରତ୍ୟକ୍ଷ ଶାସନର ଅଧୀନରେ ନ ଥିବା ରାଜ୍ୟଗୁଡ଼ିକ ପ୍ରତି ଭିନ୍ନ ପ୍ରକାରର ମାନସିକତା ପୋଷଣ କରୁଥିବା ବାପୁଜୀ ମଧ୍ୟ ଓଡ଼ିଶାର ସମ୍ବଲପୁରଠାରୁ ଆରମ୍ଭ କରି ଢ଼େଙ୍କାନାଳ ରାଜ୍ୟ ପର୍ଯ୍ୟନ୍ତ ପଦଯାତ୍ରା (୧୯୩୪ ମସିହା ମେ ମାସ ପ୍ରଥମ ସପ୍ତାହ) କରିଥିଲେ । ତାଙ୍କ ଯାତ୍ରା, ଏ ଭୂମିର ବଞ୍ଚିତ ମାନଙ୍କପାଇଁ ଥିଲା ରସଦ ସଦୃଶ ।

ଓଡ଼ିଶାରେ 'ପିପୁଲ୍ସ୍ କନଫରେନ୍ସ୍' ଜନ୍ମ ନେଇଥିଲା ୧୯୩୧ ମସିହା ଜୁନ୍ ମାସ ୨୦ ତାରିଖରେ, କଟକଠାରେ । ବ୍ରଜସୁନ୍ଦର ଦାସ ଓ ବାଲୁଙ୍କେଶ୍ୱର ଆଚାର୍ଯ୍ୟ ଯଥାକ୍ରମେ ଏହାର ସଭାପତି ଓ ସମ୍ପାଦକ ଭାବରେ ମନୋନୀତ ହୋଇଥିଲେ ଏବଂ ରାଧାନାଥ ରଥ, ଭୁବନାନନ୍ଦ ଦାସ, ଗୋବିନ୍ଦଚନ୍ଦ୍ର ମିଶ୍ର, ମଧୁସୂଦନ ପଟ୍ଟନାୟକ ପ୍ରମୁଖ ସଂଗ୍ରାମୀ ଏହାର ସଦସ୍ୟ ଥିଲେ । ପ୍ରଜାମାନଙ୍କୁ ବେଠି ଓ ବେଗାରୀରୁ ମୁକ୍ତକରିବା ଥିଲା ଏହି ସଙ୍ଗଠନର ଆହ୍ୱାନ । ସମକାଳରେ ଓଡ଼ିଶାର ଅନ୍ୟ ଏକ ଐତିହାସିକ ଘଟଣା ଥିଲା ନବକୃଷ୍ଣ ଚୌଧୁରୀଙ୍କର ପତ୍ନୀ ମାଳତୀ ଦେବୀ ଚୌଧୁରୀ, ଗୌରାଙ୍ଗ ଚରଣ ଦାସ ଓ ଅନ୍ୟ ସଂଗ୍ରାମୀମାନଙ୍କ ସହଯୋଗରେ ଜଗତ୍‌ସିଂପୁରର ତରିକୁନ୍ଦଠାରେ ଟଲ୍‌ଷ୍ଟୟ ଫାର୍ମ ପ୍ରତିଷ୍ଠା । କେବଳ ସ୍ୱାଧୀନତା ଆନ୍ଦୋଳନ ନୁହେଁ, ଜାତି, ଧର୍ମ, ବର୍ଣ୍ଣ ଓ ବୃତ୍ତିକୈନ୍ଦ୍ରିକ ସାମାଜିକ ବ୍ୟବସ୍ଥାରେ ଥିବା ଯାବତୀୟ ବୈଷମ୍ୟକୁ ଦୂରକରିବାପାଇଁ ସଂଗଠନ ଗଢ଼ଣ ଏବଂ ଉପର୍ଯ୍ୟୁକ୍ତ ବିଚାରକୁ ଲୋକଙ୍କ ପାଖରେ ପହଞ୍ଚାଇବାଲାଗି ନବକୃଷ୍ଣଙ୍କ 'ସାରଥି' (୧୯୩୩) ପତ୍ରିକା ପ୍ରକାଶ ପାଇଲା । ମାତ୍ର ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ, ନିର୍ବାଚନ ଆଦି ବିଶେଷ ଘଟଣା ସମାଜବାଦୀ ଆନ୍ଦୋଳନକୁ ମନ୍ଦୀଭୂତ କରିଦେଇଥିଲା । ସଂଗଠନ ପୁଣି ଢ଼େଙ୍କାନାଳର ସାରଙ୍ଗଧର ଦାସଙ୍କ ଉଦ୍ୟମରେ ସକ୍ରିୟ ହୋଇଥିଲା ଏବଂ ଜନ୍ମର ପ୍ରାୟ ଛଅ ବର୍ଷ ପରେ କଟକଠାରେ, ୧୯୩୭ ମସିହା ଜୁନ୍ ମାସ ୨୩ ଓ ୨୪ ତାରିଖରେ, ଏହାର ସର୍ବଭାରତୀୟ ସମ୍ମିଳନୀ ଅନୁଷ୍ଠିତହେଲା । ଆଠଗୋଟି ରାଜ୍ୟର ପ୍ରତିନିଧି ଏଥିରେ ଅଂଶଗ୍ରହଣ କରିଥିଲେ । ପ୍ରଜାମାନଙ୍କୁ ରସଦ, ମାଗଣ, ବେଠି ଓ ବେଗାରୀରୁ ମୁକ୍ତକରିବାପାଇଁ ସଂଗଠନ ତରଫରୁ ପ୍ରଶାସନକୁ ଅନୁରୋଧ କରାଯାଇଥିଲା । ସଂଗଠନର ରାଜ୍ୟସ୍ତରୀୟ କମିଟିରେ ପି. ପଟ୍ଟାଭିସୀତାରାମାୟା ଏବଂ ସାରଙ୍ଗଧର ଦାସ ଯଥାକ୍ରମେ ସଭାପତି ଓ ସମ୍ପାଦକ ଥିଲେ ଏବଂ ଢ଼େଙ୍କାନାଳର ହରମୋହନ ପଟ୍ଟନାୟକ ଥିଲେ ଅନ୍ୟତମ ସଦସ୍ୟ । ଓଡ଼ିଶାର ଗଡ଼ଜାତର ପ୍ରଜାମାନଙ୍କର ସମସ୍ୟା ପ୍ରତି କଂଗ୍ରେସ ନେତୃମଣ୍ଡଳୀର ସହୃଦୟତାର ଏହା ଥିଲା ଖୋଲା ଇସ୍ତାହାର । ୧୯୩୮ ମସିହାର ମେ ମାସରେ କୈଳାସଚନ୍ଦ୍ର ମହାନ୍ତି ଓ ବନମାଳୀ ଦାସଙ୍କ ନେତୃତ୍ୱରେ ପ୍ରଥମ କରି ନୀଳଗିରି ରାଜ୍ୟରେ ଗଡ଼ିଆମାଳ ନାମକ ଏକ ଛୋଟ ଗାଁରେ ପ୍ରଜାମଣ୍ଡଳ ଗଠିତହେଲା ।[୬]

ଭାରତୀୟ ଜାତୀୟ କଂଗ୍ରେସରେ ନବକୃଷ୍ଣ ଚୌଧୁରୀଙ୍କ ସମାଜବାଦୀ ଚିନ୍ତନର ସ୍ୱୀକୃତି, ଓଡ଼ିଶାର ନେତୃମଣ୍ଡଳୀକୁ ମଧ୍ୟ ପ୍ରଭାବିତ କଲା । ୧୯୩୩ ମସିହାରେ କଂଗ୍ରେସ ସମାଜବାଦୀ ଗୋଷ୍ଠୀ ଓଡ଼ିଶାରେ ଗଠିତହେଲା । 'ସାରଥି' ରେ ଦୁନିଆର ଶ୍ରମିକମାନଙ୍କ ସଂଗୋଷ୍ଠୀକରଣର ପ୍ରଚାର କରୁଥିବା ଚୌଧୁରୀ ୧୯୩୮ ମସିହା ବେଳକୁ କୃଷକମାନଙ୍କର ସଂଗଠନ ଗଢ଼ଣ ଉପରେ

ଗୁରୁତ୍ୱଦେଲେ । ମାଓ-ସେ-ତୁଂ ତାଙ୍କ ବିଚାରର ଥିଲେ ଅନ୍ୟତମ ଆଦର୍ଶ । ସମଗ୍ର ଭାରତରେ ଗଢ଼ିଉଠିଥିବା "କିଷାନ ସଭା" ଏବଂ ଏହାର ଆଭିମୁଖ୍ୟ ସମ୍ପର୍କରେ ମଧ ସେ ସଚେତନ ଥିଲେ । "କୃଷକ" ନାମକ "ସାପ୍ତାହିକୀ ସମ୍ବାଦପତ୍ର" ପ୍ରକାଶକଲେ ୧୯୩୮ ମସିହାରେ ଏବଂ ଏହାର ଆଭିମୁଖ୍ୟ ଥିଲା କୃଷକମାନଙ୍କୁ ସଙ୍ଗଠିତକରିବା । ସର୍ବଭାରତୀୟ "କୃଷକ ଦିବସ" ପାଳନ ଅବକାଶରେ 'କଟକ ଜିଲ୍ଲାର କୃଷକ ସଂଘ' ଆନୁକୂଲ୍ୟରେ ୧୯୩୮ ମସିହା ସେପ୍ଟେମ୍ବର ୧ ତାରିଖରେ କଟକର ଜେନାପୁରଠାରେ ଏ ସମ୍ମିଳନୀର ଆୟୋଜନ କରାଗଲା । "ଓଡ଼ିଶା ଷ୍ଟେଟ୍ ପିପୁଲ୍ସ୍ କନଫେରେନ୍ସ୍" ମଧ ଏହାର ଅନ୍ୟତମ ସହଯୋଗୀ ଥିଲା । ସମ୍ମିଳନୀର ଦ୍ୱିତୀୟ ଦିବସ ଥିଲା "ଢେଙ୍କାନାଳ ଦିବସ" । ହଜାର ହଜାର ମୁକ୍ତିକାମୀ ମଣିଷ ଆଗ୍ରହରେ ଏହି ସମ୍ମିଳନୀରେ ଯୋଗ ଦେଇଥିଲେ ଏବଂ ହରମୋହନ ପଟ୍ଟନାୟକ, ଲକ୍ଷ୍ମୀଧର ସାହୁ, ବୈଷ୍ଣବ ଚରଣ ପଟ୍ଟନାୟକ ଓ ଅନ୍ୟମାନେ ଏହାର ନେତୃତ୍ୱ ନେଇଥିଲେ ।[୭]

ପ୍ରଜାମାନଙ୍କର ମଣ୍ଡଳାୟନ ଏବଂ ଏକତାନିକ ପ୍ରତିବାଦ ଢେଙ୍କାନାଳ ନାମକ ବକଟେ ଆୟତନର ଈଶ୍ୱରମନସ୍କ ଅଧୀଶ୍ୱରଙ୍କ ପ୍ରତି ଏକ ଅସ୍ୱାଭାବିକ ଆହ୍ୱାନ ଥିଲା । ପ୍ରଜାମାନେ କେବଳ ତୁଣ୍ଡରେ ପ୍ରତିବାଦ କଲେନି, ସେପ୍ଟେମ୍ବର ମାସର ଛ' ତାରିଖରେ ପଡ଼ିଥିବା 'ନବବର୍ଷ' (ନୁଆଁଖିଆଁ) ଭେଟି ମଧ ବନ୍ଦକରିଦେଲେ । ଚତୁର ରାଜା ସମସ୍ୟାର ଅପୋଷ ସମାଧାନ ଉଦ୍ଦେଶ୍ୟରେ ନେତାମାନଙ୍କୁ ଉଆସକୁ ଡ଼ାକିଲେ । ତାହା ଥିଲା ସେପ୍ଟେମ୍ବର ମାସ ଏଗାର ତାରିଖ । ମାତ୍ର ଘଟଣା ଘଟିଲା ଅନ୍ୟ ପ୍ରକାରର । ସନ୍ଧ୍ୟାରେ ସଂଗଠନର କର୍ମକର୍ତ୍ତାମାନଙ୍କୁ ବନ୍ଦୀ କରାଗଲା । ନେତାମାନଙ୍କର କାରରୁଦ୍ଧ ସମ୍ବାଦ ବନାଗ୍ନି ପରି ପ୍ରସରିଯାଇଥିଲା ସମଗ୍ର ରାଜ୍ୟରେ । ଦୁର୍ଯୋଗକୁ ତା'ପରଦିନ ଗଡ଼ ପଛ ହାଟପାଳି, ସେପ୍ଟେମ୍ବର ମାସ ୧୨ ତାରିଖ । ହଜାର ହଜାର ନିପୀଡ଼ିତ ପିମ୍ପୁଡ଼ି ଧାର ପରି ରାଜବାଟୀ ଆଡ଼କୁ ଛୁଟିଆସିଲେ । ପ୍ରାୟ ଷାଠିଏ ହଜାର ଲୋକ ଉଆସକୁ ଅବରୋଧ କଲେ । ରାଜଦ୍ରୋହୀମାନଙ୍କୁ ଘଉଡ଼ାଇବାପାଇଁ ପ୍ରଶାସନ ବନ୍ଧୁକ ଓ ଲାଠିର ସାହାଯ୍ୟ ନେଲେ । ଚାରିଜଣଙ୍କର ପତ୍ତା ମିଳିଲାନି । ମାତ୍ର ପ୍ରଜାମାନେ ଲାଠି ଓ ବନ୍ଧୁକ ଆଗରେ ମଥା ନୁଆଁଇ ନ ଥିଲେ । ଅବାଧ ପ୍ରଜାଙ୍କୁ ତୁଷ୍ଟକରିବାପାଇଁ ପ୍ରଶାସନ ବନ୍ଦୀମାନଙ୍କୁ ମୁକ୍ତକରିବାକୁ ବାଧହେଲେ ଏବଂ ସେପ୍ଟେମ୍ବର ୨୦ ତାରିଖରେ ଯାବତୀୟ ସମସ୍ୟାର ସମାଧାନ କରିବାପାଇଁ ପ୍ରତିଶ୍ରୁତିଦେଲେ ।[୮]

ରାଜାଙ୍କର ପ୍ରତିଶ୍ରୁତି ବାସ୍ତବରେ ଥିଲା ରାଜକୀୟ । ବିଦ୍ରୋହ ଦମନପାଇଁ ସେ ବ୍ରିଟିଶ୍ ସରକାରଙ୍କ ସାହାଯ୍ୟନେଲେ । ସେପ୍ଟେମ୍ବର କୋଡ଼ିଏ ତାରିଖ ମଧରେ କେ.ଓ.ଏସ୍.ବି. (King's Own Scottish Boarders) ଅଧୀନରେ ଥିବା ପ୍ରାୟ ଦୁଇଶହ ସଂଖ୍ୟକ ସିପାହୀ ଢେଙ୍କାନାଳ ରାଜ୍ୟରେ ଛାଇ ହୋଇଗଲେ । ସେମାନଙ୍କ ମଧରେ ଥିଲେ ପଞ୍ଜାବୀ, ଡ଼ୋଗ୍ରା, ଛତିଶଗଡ଼ ପଲଟଣର ବଛା ବଛା ସିପାହୀ । ସେମାନଙ୍କ ନେତୃତ୍ୱ ନେଇଥିଲେ ବେଜେଲ୍‌ଗେଟ୍ । ବ୍ରିଟିଶ୍ ଶାସନ କାଳରେ ଏତେ ସଂଖ୍ୟକ ସିପାହୀ ଅନ୍ୟ କୌଣସି ଗଡ଼ଜାତକୁ ଯାଇଥିବାର ନଜିର ନାହିଁ । ଗୋରା ପଲଟଣ ବ୍ୟତୀତ ଅନ୍ୟ ଗଡ଼ଜାତର ଅଧିପତିମାନେ ମଧ ବନ୍ଧୁତ୍ୱ ସୂତ୍ରରେ ଢେଙ୍କାନାଳକୁ ଆପଣାର ସୈନ୍ୟ ପଠାଇଲେ । ତୃଷିତ ସିପାହୀମାନେ ରାଜ୍ୟସାରା ଖେଦିଗଲେ । ଘରଘର ପଶି ବିଦ୍ରୋହୀମାନଙ୍କୁ

ଖୋଜିଲେ, ବନ୍ଦୀ କଲେ । ରାଜ୍ୟରେ ପୋଲିସ୍‌ର ଆତଙ୍କରାଜ ଚାଲିଲା । ପ୍ରଜାମଣ୍ଡଳକୁ ବେଆଇନ୍ ଘୋଷଣା କରାଗଲା । ଲକ୍ଷ ସଂଖ୍ୟକ ପ୍ରଜା ରାଜ୍ୟଛାଡ଼ି ଅନ୍ୟ ରାଜ୍ୟ ଓ ମୋଗଲବନ୍ଦୀ ଅଞ୍ଚଳକୁ ପଳାଇଗଲେ । ରାଜ୍ୟର ଚବିଶଗୋଟି ପ୍ରଗଣା ମଧ୍ୟରୁ ପାଞ୍ଚଗୋଟି ପ୍ରାୟ ପୁରୁଷଶୂନ୍ୟ ହୋଇପଡ଼ିଥିଲା ।[୮] ଜେନାପୁର, ସୁକିନ୍ଦା, ଦର୍ପଣୀ, ଅନୁଗୋଳ ଆଦି ରାଜ୍ୟ ସେମାନଙ୍କୁ ଆଶ୍ରୟ ଦେଇଥିଲା । ପ୍ରକାଶ ଥାଉକି, ଗଡ଼ଜାତ ଶାସନ ସହିତ କଂଗ୍ରେସର ପ୍ରତ୍ୟକ୍ଷ ସଂପୃକ୍ତିକୁ ଗାନ୍ଧିଜୀ ଉଚିତ ମଣୁ ନ ଥିଲେ ମଧ୍ୟ, ଓଡ଼ିଶାର ରାଜମାନଙ୍କର ଜନସାଧାରଣଙ୍କ ପ୍ରତି ଅମାନବୀୟ ଆଚରଣ ତାଙ୍କୁ ବ୍ୟଥିତ କରିଥିଲା । ନିଜ ଆଖିରେ ଅସହାୟମାନଙ୍କର ଅବସ୍ଥା ଦେଖିବା ପାଇଁ ଓଡ଼ିଶା ଆସିଥିଲେ ଏବଂ 'ହରିଜନ' ପତ୍ରିକାରେ ଗଡ଼ଜାତ ସଂକ୍ରାନ୍ତ ଅନୁଭବ ଓ ବିଚାର ପ୍ରକାଶ କରିଥିଲେ ।

ବେଜେଲ୍‌ଗେଟ୍, କି ଗୋରା ପଲଟଣ ରାଜ୍ୟରେ ଅଧିକ ଦିନ ରହି ନ ଥିଲେ । ରାଜ୍ୟର ନିରାପତ୍ତା ବ୍ୟବସ୍ଥାକୁ ଶୃଙ୍ଖଳିତକରି ସେମାନେ ଫେରିଯାଇଥିଲେ । ଏପରି ସୁଯୋଗର ଅପେକ୍ଷାରେ ଥିବା ଆନ୍ଦୋଳନକାରୀମାନେ ଅଧିକ ଉତ୍ସାହରେ ନିଜ କାମରେ ଲାଗିପଡ଼ିଲେ । ଅନନ୍ତ ପଟ୍ଟନାୟକଙ୍କ ରକ୍ତତତା ଗୀତ 'ମୁକ୍ତିସଂଗୀତ' (ଚାଲରେ ଚାଲରେ ଚାଲ), 'ମାଗୁ ସେ ଯେତେ ଗୁଳି'; ସାରଙ୍ଗଧର ଦାସଙ୍କ ଲେଖା "ଆମେ ଯୁଗଯୁଗ ଧରି ମଲା ଅବସ୍ଥାରେ ଥିଲେ; ମାଡ଼ ଖାଇଲେ, ବେଇଜ୍ଜତ ହେଲେ, କିମ୍ବା ଆମ ଉପରେ ବେଆଇନ ଭାବରେ ପଚିଶ ରକମ କର ବସିଲେ ମଲାକାଠ ଭଳିଆ ସବୁ ସହି ନେଉଥିଲେ, କିନ୍ତୁ ସେହି ମଲାକାଠ ଆଜି ଜୀଇଁ ଉଠୁଛି । ବ୍ରହ୍ମଣ କ'ଣ, ହାଡ଼ିପାଣ କ'ଣ, ସମସ୍ତେ ଏକାଠି ହେଲେ ପ୍ରଜାମଣ୍ଡଳକୁ ମୁଖ୍ୟ ବୋଲି ମାନି ଆନ୍ଦୋଳନ ଚଳାଇଲେ, ସମସ୍ତଙ୍କର ମୁକ୍ତି ନିଶ୍ଚିତ,"[୯] ଗୁରୁଚରଣ ପଟ୍ଟନାୟକ, ନବକୃଷ୍ଣ ଚୌଧୁରୀଙ୍କ ଆହ୍ୱାନ ଓ କୃଷକ ପତ୍ରିକାର ପ୍ରଚୋଦନା ଭୀରୁ ପ୍ରଜାମାନଙ୍କ ଚେତନାରେ ନବ ଉନ୍ମାଦନା ସୃଷ୍ଟିକଲା । ରାଜନିପୀଡ଼ନକୁ ସେମାନେ ଆଉ ଭୟ କଲେନି । ରାଜପୋଷିତମାନଙ୍କର ଶ୍ୟେନଦୃଷ୍ଟିକୁ ମଧ୍ୟ ପ୍ରତିହତ କରିବାରେ ସେମାନେ ସମର୍ଥହେଲେ । ଉଭୟ ଦେଶୀ ଓ ବିଦେଶୀ ଫଉଜମାନଙ୍କ ଆଖିରେ ଧୂଳି ଦେଇ, ଭୂଆଁ ବୁଲେଇ ଲୋକମାନଙ୍କୁ ଏକଜୁଟ କଲେ । ଗାଁ ଗାଁରେ ପ୍ରଜାମଣ୍ଡଳର ଶାଖାମାନ ଗଢ଼ିଲେ । ପ୍ରଧାନମାନଙ୍କର ଖମାର ଲୁଣ୍ଠନ; ମାଗଣ, ରସଦ, ବେଠି ଓ କର ପ୍ରତ୍ୟାଖ୍ୟାନ ରାଜାଙ୍କର ଅହଂକାର ପ୍ରତି ଥିଲା ଏକ ଅସହ୍ୟ ପ୍ରତିବାଦ । ସେମାନଙ୍କ ଆହ୍ୱାନ ପଡ଼ୋଶୀ ତାଳଚେର ରାଜ୍ୟକୁ ମଧ୍ୟ ବ୍ୟାପିଗଲା । ଦାଶରଥୀ ପାଣି, ପବିତ୍ର ମୋହନ ପ୍ରଧାନଙ୍କ ନେତୃତ୍ୱରେ ପରିଚାଳିତ ତାଳଚେର ପ୍ରଜାମଣ୍ଡଳର ସଂଗ୍ରାମୀମାନେ ସେପ୍‌ଟେମ୍ବର ୨୦ ତାରିଖରେ ରାଜବାଟୀ ଅବରୋଧ କଲେ । ଗୁଳି ଚାଲିଲା । ଜଣେ ମଲେ, ପାଞ୍ଚଜଣ ଆହତ ହେଲେ । ପ୍ରଜାମଣ୍ଡଳକୁ ବେଆଇନ୍ ଘୋଷଣା କରାଗଲା । ଏବଂ, ହଜାର ହଜାର ପ୍ରଜା ଆତ୍ମରକ୍ଷାପାଇଁ ପଡ଼ୋଶୀ ଗଡ଼ଜାତ ରାଜ୍ୟ ଓ ଅନୁଗୋଳରେ ଆଶ୍ରୟ ନେଲେ ।[୧୦]

ଏଠାରେ ପ୍ରଶ୍ନ ଉଠେ, ଆପଣା ଘର ଓ ଗାଁ ଭିତରେ ରାଜତନ୍ତ୍ରର କୁହାଟ ଓ ପ୍ରଜାମାନଙ୍କ ପ୍ରତିବାଦ ସକଳକୁ ଆତଙ୍କିତ କରି ରଖିଥିଲାବେଳେ, ବାରବର୍ଷ ବୟସର ଗାଈଜଗା ପିଲା ବାଜିଆ ମନରେ କୌଣସି ପ୍ରତିକ୍ରିୟା ଦେଖାଦେଉ ନ ଥିଲା ବୋଲି ଆମେ ମନା କରିପାରିବା କି ?

## ଚାରି

ଢେଙ୍କାନାଳ ରାଜାଙ୍କପାଇଁ ଗୁରୁତର ସମସ୍ୟା ସୃଷ୍ଟିକରିଥିଲା ରାଜ୍ୟର ବୃହତ୍ତମ ଗ୍ରାମ ଓ ବାଣିଜ୍ୟ-ପେଣ୍ଠ ଭୁବନ । ରାଜା ଅରଣା ପ୍ରଜାମାନଙ୍କୁ ବାଟକୁ ଆଣିବାପାଇଁ ରାଜ୍ୟର ସବୁଠାରୁ ଦକ୍ଷ ପୋଲିସ୍ ଅଧିକାରୀ ବିନୟ ଘୋଷଙ୍କୁ ମାଜିଷ୍ଟ୍ରେଟ୍‌ର କ୍ଷମତାଦେଇ ଭୁବନକୁ ପଠାଇଲେ । ତାଙ୍କ ସହିତ ଥିଲେ ମାତ୍ର କୋଡ଼ିଏ ପଚିଶ ଜଣ ଦେଶୀ ସିପାହୀ । ଦଶ ତାରିଖ ରାତିରେ ଦମନକାରୀମାନେ ବିଦ୍ରୋହୀମାନଙ୍କୁ ଅତର୍କିତ ଆକ୍ରମଣକରିବା ଉଦ୍ଦେଶ୍ୟରେ, ସିଧା ରାସ୍ତାରେ ନ ଯାଇ, ଚଷାପଡ଼ା ଘାଟରୁ ନିଜିଗଡ଼ ବାଟଦେଇ ଚାଷ ଡ଼ଙ୍ଗାରେ ପହଞ୍ଚିଲେ ଭୁବନ ଗ୍ରାମରେ । ସେଦିନ ପ୍ରଜାମାନେ ଗ୍ରାମର କଚେରୀକୁ ମଧ୍ୟ ପୋଡ଼ି ଦେଇଥା'ନ୍ତି । ବିନୟ ଘୋଷ ଭୁବନ ଗ୍ରାମରେ ପାଦଦେଲା ମାତ୍ରକେ ଆରମ୍ଭ କରିଦେଲେ ଦମନଲୀଳା । ଘର ଭିତରେ ପଶି ପିଲା ଓ ନାରୀମାନଙ୍କୁ ବାହାରକୁ ଟାଣିଆଣିଲେ । ଆନ୍ଦୋଳନକାରୀମାନଙ୍କୁ ନିସ୍ତୁକ ମାଡ଼ଦେଲେ ଓ ବନ୍ଦୀକଲେ । ଗୋଟିଏ ପଟରେ ଠେଙ୍ଗା, ଟାଙ୍ଗିଆ, କଟୁରି, ବର୍ଚ୍ଛା ଓ ପ୍ରଜାମଣ୍ଡଳ-ଜିନ୍ଦାବାଦ୍; ଅନ୍ୟ ପଟରେ ଲାଠି ଓ ବନ୍ଧୁକ । ପୋଲିସ୍‌ର ମାଡ଼ରେ ରଘୁ ନାୟକ ସବୁଦିନପାଇଁ ଟଳିପଡ଼ିଲା । ଜଣେ ସାଥୀର ମୃତ୍ୟୁ ସମବେତ ଜନତାକୁ ଅଧିକ ଉତ୍ୟକ୍ତ କରିଥିଲା । ଅଳ୍ପସଂଖ୍ୟକ ପୋଲିସ୍ ଉତ୍ତେଜିତ ଜନତାର ଘେରରେ ଅଧିକ ସମୟ ରହିବାପାଇଁ ନିରାପଦ ମଣି ନ ଥିଲା । ସେମାନେ ବନ୍ଦୀକରିଥିବା ଚଉଦଜଣ ବିଦ୍ରୋହୀ (କାମପାଳ ମିଶ୍ର, ଦାମପାଳ ମିଶ୍ର, ନରିଆ ତେଲି, କୁଶା ସାହୁ, ଧୁସା ସାହୁ, ବୀରବର ସାହୁ, ଚଣ୍ଡାଳୀ ବୈଶାଖି ଓ ଅନ୍ୟମାନେ)ଙ୍କୁ ଧରି ପ୍ରଚଣ୍ଡପୁର ଘାଟ ଦେଇ, ନଈ ଆରପଟକୁ ଚାଲିଯିବାପାଇଁ ଯୋଜନାକଲେ । ରଘୁର ଶବକୁ ଭଲକରି ହେଁସରେ ବାନ୍ଧି କାନ୍ଧରେ ଥୋଇଲେ । ଶବକୁ ନଈ ପାଣିରେ ଫିଙ୍ଗିଦେବା ସେମାନଙ୍କର ଉଦ୍ଦେଶ୍ୟ ଥିଲା ।

ଭୁବନ ଗାଁରୁ ପ୍ରଚଣ୍ଡପୁର ଘାଟର ଦୂରତା ପ୍ରାୟ ତିନି ମାଇଲ୍ । ମଝିରେ ରଗଡ଼ି ନାଳ, ବ୍ରାହ୍ମଣୀର ଉପନଦୀ । ରଗଡ଼ି ନାଳ ଓ ଭୁବନ ମଝିରେ ମଣିପୁର ଓ ରଙ୍ଗମାଟିଆ ଗାଁ । ରଙ୍ଗମାଟିଆ ଗାଁ ପାଖରେ ରଗଡ଼ି ନାଳ ବ୍ରାହ୍ମଣୀରେ ମିଶିଛି । ଲୋକେ ରଙ୍ଗମାଟିଆ ଘାଟ ପାରିହୋଇ ପ୍ରଚଣ୍ଡପୁର ଘାଟକୁ ଯାଆନ୍ତି । ପ୍ରଚଣ୍ଡପୁର ଘାଟ ଏହି ଅଞ୍ଚଳ ଅଧିବାସୀମାନଙ୍କ ଯାତାୟତ ଓ ବେପାର ବଣିଜର କେନ୍ଦ୍ର ଜାଗା । ଘାଟରୁ ଲୋକେ ଡ଼ଙ୍ଗା ଯୋଗେ ପ୍ରାୟ ବା'ର /ଚଉଦ କିଲୋମିଟର ଦୂରରେ ଥିବା ଚଉଷଠିପଡ଼ା ଘାଟ (କେନାପୁର ଘାଟ) ପର୍ଯ୍ୟନ୍ତ ଯାଆନ୍ତି । ସେଠାରୁ ରେଳ, ବସ୍ ଯୋଗେ ସମ୍ପର୍କ ରଖିଥାଆନ୍ତି ଉପକୂଳବର୍ତ୍ତୀ ଅଞ୍ଚଳ ସହିତ । ତେଣୁ ପ୍ରାୟ ସବୁ ସମୟରେ ପ୍ରଚଣ୍ଡପୁର ଘାଟରେ ବେପାରୀ ଓ ଯାତ୍ରୀବାହୀ ଡ଼ଙ୍ଗାଗୁଡ଼ିକର ଭିଡ଼ ଜମିଥାଏ । ପ୍ରଚଣ୍ଡପୁରର ଆରପଟରେ ମନ୍ଦାର ଗାଁ', ଢେଙ୍କାନାଳ ରାଜାଙ୍କର ନିରାପଦ ଆୟତନ । ବିନୟବାବୁ ଏବଂ ତାଙ୍କର ସିପାହୀମାନେ ଯଥାଶୀଘ୍ର ନଈ ପାରହୋଇ ଉତ୍ୟକ୍ତ ଜନତାର ଘେରରୁ ଖସିଯିବାପାଇଁ ଏହି ବାଟକୁ ହିଁ ଅଧିକ ସୁଗମ ଓ ନିରାପଦ ମଣିଥିଲେ ।

ମାତ୍ର ଭୁବନରେ ପୋଲିସ୍‌ର ପୈଶାଚିକ ଲୀଳା ଚାଲିଥିଲା ବେଳେ, କେହି ଜଣେ ଆନ୍ଦୋଳନକାରୀ ଖସିଆସି, ଆଖପାଖ ଗାଁ (ପୁରୁଷୋତ୍ତମପୁର, ମହୁଲପାଳ, ମୃଦଙ୍ଗା)ରେ ଏହି

ଖବର ପହଞ୍ଚାଇ ଦେଇଥିଲା । କୋଡ଼ିଏ/ପଚିଶ ଜଣ ସିପାହୀ ଓ ଚଉଦଜଣ ବନ୍ଦୀ ରଙ୍ଗମାଟିଆ ଘାଟ ପାଖରେ ପହଞ୍ଚିବା ବେଳକୁ ପୂର୍ବଦିଗ ଫର୍ଚ୍ଚା ହୋଇଆସିଲାଣି ଏବଂ ଘାଟ ପାଖରେ ମଣ୍ଡଳର ସୈନିକମାନଙ୍କର ଭିଡ଼ ଜମିଗଲାଣି । ସିପାହୀମାନେ ପ୍ରଥମେ ରଙ୍ଗମାଟିଆ ଘାଟରେ ବିପ୍ଳବୀମାନଙ୍କର ସମ୍ମୁଖୀନ ହେଲେ । ଉଭୟ ଗୋଷ୍ଠୀ ମଧ୍ୟରେ ବହୁ ସମୟ ଧରି ଉଚ୍ଚବାଚ ଚାଲିଲା । ଆକାଶରୁ ଅନ୍ଧାର ଯେତିକି ଲିଭିଲିଭି ଆସୁଥାଏ, ଗହଳି ବଢ଼ି ଚାଲିଥାଏ ସେତିକି ବେଶି । ବିପ୍ଳବୀମାନଙ୍କର କଡ଼ା ମୁକାବିଲାକରି ସେମାନେ ରଙ୍ଗମାଟିଆ ଘାଟ ପାରିହୋଇ ଏପଟକୁ ଆସିଲେ । ସେଠାରୁ ପ୍ରଚଣ୍ଡପୁର ଘାଟର ଦୂରତା ପ୍ରାୟ ଦେଢ଼ କିଲୋମିଟର । ପ୍ରଚଣ୍ଡପୁର ଘାଟକୁ ଲାଗି ନୀଳକଣ୍ଠପୁର ଗାଁ । ଘାଟମୁଣ୍ଡରେ ପହଞ୍ଚିଲା ବେଳକୁ ଆନ୍ଦୋଳନକାରୀମାନଙ୍କ ସଂଖ୍ୟା ବହୁଗୁଣିତ ହୋଇଗଲାଣି । ସୂର୍ଯ୍ୟ ବି ଉଠି ଆସିଲେଣି ଦିଗନ୍ତର ବହୁ ଉପରକୁ । ଭୁବନ ଗାଁରୁ ପଟିରେ ଗୁଡ଼ାହୋଇ ଆସିଥିବା ରଘୁର ଶବ ଓ ଗୁଳିମାଡ଼ଖିଆ ଆଉ ଜଣେ ବିପ୍ଳବୀର କରୁଣ ଆଖି ଜନତାକୁ ଏକ ପ୍ରକାର ଅରଣା କରିଦେଉଥାଏ ।

ଘାଟ ପାଖରେ ପହଞ୍ଚିଲା ପରେ ସିପାହୀମାନଙ୍କର ଚେତା ବୁଡ଼ିଗଲା । ସେତେବେଳକୁ ଘାଟରେ ସରକାରୀ କିଂବା ବେପାରୀ, କାହାରି ଡ଼ଙ୍ଗା ନ ଥିଲା । ସଂଗଠନର ନିର୍ଦ୍ଦେଶ ଅନୁସାରେ ବିପ୍ଳବୀମାନେ ଡ଼ଙ୍ଗାଗୁଡ଼ିକୁ ପାଣିରେ ବୁଡ଼ାଇ ଦେଇଥାଆନ୍ତି । ମାତ୍ର ଘାଟଠାରୁ ଟିକିଏ ଦୂରରେ ଖଟା ହୋଇଥିଲା ଡ଼ଙ୍ଗାଟିଏ, ଭୁବନ ଗ୍ରାମର ଜୁଆରିଆ ମାରୁଆଡ଼ିର ବେପାରଡ଼ଙ୍ଗା । ଲୋକେ ନିଜର ବ୍ୟବହାରପାଇଁ ସମ୍ଭବତଃ ତାକୁ ସଜାଡ଼ି ରଖିଥିଲେ । ସେହି ଡ଼ଙ୍ଗା ହିଁ ସେମାନଙ୍କପାଇଁ କାଳହେଲା । କୌଣସି ମତେ ନଈ ପାରିହେବାପାଇଁ ଉତ୍ୟକ୍ତ ଜନତା ଆଡ଼କୁ ବନ୍ଧୁକ ମୁନ ଦେଖାଇ ସିପାହୀମାନେ ଡ଼ଙ୍ଗା ଉପରକୁ ଚଢ଼ିଗଲେ । ମାତ୍ର ଛୁରୀରେ ଡ଼ଙ୍ଗାର ସୂତିଆକୁ କାଟିବାପାଇଁ ଉପକ୍ରମ କଲା ମାତ୍ରକେ, 'ପ୍ରଜାମଣ୍ଡଳ କି ଜୟ' ଡ଼ାକଦେଇ କେତେକ ସାହସୀ ବିପ୍ଳବୀ ବିରୁଡ଼ି ପରି ଘେରିଗଲେ ଡ଼ଙ୍ଗା ଦେହରେ । ସିପାହୀମାନେ ବାରମ୍ବାର କାଟୁଥା'ନ୍ତି ଡ଼ଙ୍ଗାର ସୂତିଆ ଏବଂ ବିପ୍ଳବୀମାନେ ଅଧିକ ଉତ୍ସାହରେ ଭିଡ଼ିଧରୁଥା'ନ୍ତି ଡ଼ଙ୍ଗା ଓ ସୂତିଆ । ପାଣିପାଖ ଓ ଅତଡ଼ା ଉପରେ ଶତସଂଖ୍ୟକ ମଣ୍ଡଳସୈନ୍ୟ ଓ ଦେଖଣାହାରୀ ।

ସେହି ଡ଼ଙ୍ଗାରେ ଥିଲେ ଭୁବନ ଗ୍ରାମର ଜନୈକ ବ୍ରାହ୍ମଣ ଶିକ୍ଷକ ଓ ରାଜ-ଅନୁଗତ (ନାମ ଜାଣିଥିଲେ ମଧ୍ୟ ଏଠାରେ ପ୍ରକାଶ କରିବାକୁ ଉଚିତ୍ ମଣୁନି) । ସେ ବିନୟ ବାବୁଙ୍କୁ କହିଲେ, "ଆପଣମାନେ ସଂଖ୍ୟାରେ ବହୁତ କମ୍ । ଲେକମାନେ ରକ୍ତମୁଖା । ଏତେବେଳେ ଦେଖିଲା କାମ ନ କଲେ, ଏମାନଙ୍କ କ୍ରୋଧରୁ ବଞ୍ଚିବା ସମ୍ଭବ ହେବନି ।" ଗୋସେଇଁଙ୍କର *ଦେଖିଲା କାମ*ର ଅର୍ଥ ବୁଝିବା ବିନୟବାବୁଙ୍କପାଇଁ ଅସହଜ ହେଲାନି । ବିନୟବାବୁଙ୍କର ନିର୍ଦ୍ଦେଶ କ୍ରମେ ପୋଲିସ୍ ପ୍ରଥମେ ଫାଙ୍କା ଗୁଳି ଚାଳନାକଲେ । ପ୍ରଥମେ ସେମାନଙ୍କର ଉଦ୍ଦେଶ୍ୟ ମଧ୍ୟ ସଫଳହେଲା । ଗୁଳି ଭୟରେ ପାଣି ପାଖରେ ଓ ଭିତରେ ଠିଆ ହୋଇଥିବା ବଡ଼ ମଣିଷ ଓ ସାନ ସାନ ପିଲାମାନେ ଉପରକୁ ଉଠିଗଲେ । ମାତ୍ର ଏଇ ସୁଯୋଗରେ ପୋଲିସ୍ ସୂତିଆ କାଟିବା ମାତ୍ରକେ, କେତେକ ସାହସୀ ସଂଗ୍ରାମୀ ସଦର୍ପରେ ଧାଇଁଆସିଲେ ପାଣି ଭିତରକୁ । ସେମାନେ ଡ଼ଙ୍ଗା ଓ ସୂତିଆକୁ ଭିଡ଼ିଧରିଲେ । ସେମାନଙ୍କ ଦାଢ଼ରୁ ସହଜରେ ମୁକୁଳିବାର ସମ୍ଭାବନା ନ ଦେଖି ସିପାହୀମାନେ

ସେମାନଙ୍କ ଉପରକୁ ସତକୁ ସତ ବନ୍ଧୁକରୁ ଗୁଳି ଚଳାଇଲେ । ବନ୍ଧୁକଗୁଡ଼ିକ ବିପ୍ଳବୀ ବନ୍ଦୀମାନଙ୍କର କାନ୍ଧରେ ଥାଇ ଗର୍ଜି ଉଠୁଥିଲା । କୂଳ ଉପରେ ଟଳି ପଡ଼ିଲେ ହୃରୁଷୀ, ନଟ, ଗୁରି । ପାଣି ଭିତରେ ଟଳି ପଡ଼ିଲେ ଲକ୍ଷ୍ମଣ ମଳିକ । ଆପଣାର ସାଥିମାନଙ୍କର କରୁଣ ପରିଣତିକୁ ସହି ନ ପାରି ବାଜ ମଳିକ ବୀର ଦର୍ପରେ କୂଳ ଉପରୁ ତଳକୁ ଧାଇଁ ଆସୁଥିଲା ବେଳେ ଗେଞ୍ଜି ହୋଇଗଲେ ଭୁତିଆରୀ ଲଟି ଗହଳରେ । ବାଜ ମଳିକର ପଛରେ ଥିଲା ବାଜି । ସେ ବି ଅତଡ଼ାରୁ ତଳକୁ ଖସିଆସିଥିଲା ଏବଂ ବନ୍ଧୁକ ନଳୀରୁ ଛୁଟି ଆସୁଥିବା ଗୁଳିଟିଏ ବାଜିଲା ତା'ର କଅଁଳ ଖପୁରିରେ । ସେ ସେଇଠି ଟଳି ପଡ଼ିଲା । ଗୁଳିଟି 'ବାଜି ପାଇଁ' କି 'ବାଜ ପାଇଁ', ଯାହା ଉଦ୍ଦେଶ୍ୟରେ ଆସିଥାଉ ନା କାହିଁକି, ସେ ତା' କାମକରି ଚାଲିଗଲା । ବନ୍ଧୁକର ଫାଙ୍କା ଆବାଜରେ ଚମକି ପଡ଼ି ଅତଡ଼ା ଉପରକୁ ଉଠିଯାଇଥିବା ବାଜି, ଦ୍ୱିତୀୟ ଥରପାଇଁ କାହାର ଡ଼ାକରେ, କେଉଁ ପୁଲକରେ ଧାଇଁଆସିଥିଲା ତଳକୁ, ତାହାର ରହସ୍ୟ ଆମେ ଫେଡ଼ିପାରିବା ନାହିଁ । ମାତ୍ର ସେ ତଳକୁ ଖସିଆସିଥିଲା ଏବଂ ଏହି ଖସିଆସିବା ହିଁ ତା'ପାଇଁ କାଳହେଲା । ମରଣ ସମ୍ଭବତଃ ତାକୁ ହାତଠାରି ଡ଼ାକୁଥିଲା । ସେ ଆରପାରିକି ଗଲା । ଗଲାନି, ବରଂ ବଞ୍ଚିରହିଲା ।

ରାଜଦ୍ରୋହୀମାନଙ୍କୁ ପାଠ ପଢ଼େଇ, ଦେଶୀ ସିପାହୀମାନେ ଡ଼ଙ୍ଗା ଆରପାରିକୁ ଛାଡ଼ିଦେଲେ । ଡ଼ଙ୍ଗାରେ ଆହୁଲା କି କାତ, କିଛି ନ ଥିଲା । ହାତକୁ ସେମାନେ ଆହୁଲା କରିଥିଲେ । ନଈର ସୁଅରେ ଡ଼ଙ୍ଗା ଭାସିଯାଇ ପ୍ରାୟ ତିନି କିଲୋମିଟର ଦୂରରେ ବାଘୁଆ ଛନ୍ଦାରେ ଲାଗିଲା । ଡ଼ଙ୍ଗା କୂଳରେ ବାନ୍ଧି ସେମାନେ ଚାଲିଗଲେ ନିଜିଗଡ଼କୁ । ସେଠୁ ଢ଼େଙ୍କାନାଳର ବନ୍ଦୀଶାଳା ।

ନୀଳକଣ୍ଠପୁରରେ ସେଦିନ ସବୁଦିନପାଇଁ ଶୋଇ ପଡ଼ିଥିଲେ ହୃଷୀ ପ୍ରଧାନ, ନଟ ରାଉତ, ଲକ୍ଷ୍ମଣ ମଳିକ, ଗୁରି ସାହୁ ଓ ବାଜି ରାଉତ ଆଦି ପାଞ୍ଚଜଣ ବୀର । ଗୁଳିମାଡ଼ରେ ଅନେକ ମରଣ ସହ ସଂଗ୍ରାମ ମଧ୍ୟ କରୁଥିଲେ । ସିପାହୀମାନେ ଚାଲିଗଲା ପରେ ସଂଗ୍ରାମୀମାନେ ଶବ ଓ ମୁମୂର୍ଷୁମାନଙ୍କୁ କଟକ ବଡ଼ ଡ଼ାକ୍ତରଖାନା ନେବାର ଆୟୋଜନରେ ଲାଗିପଡ଼ିଲେ । ଆରପାରି ବାଘୁଆଛନ୍ଦାରୁ ଡ଼ଙ୍ଗା ଆସିଲା । ସମସ୍ତଙ୍କୁ ଡ଼ଙ୍ଗାରେ ଶୁଆଇଦେଇ ସେମାନେ ଘାଟ ଆଡ଼କୁ ଚାଲିଲେ । ଜେନାପୁରରୁ ରେଲ ଯୋଗେ କଟକ । ସେତେବେଳେକୁ ନୀଳକଣ୍ଠପୁରର ଏହି ଗଣହତ୍ୟା ଘଟଣା ଆଖପାଖ ଗାଁରେ ବିଜୁଳି ଭଳି ଖେଳିଗଲାଣି । କେହି କେହି ଡ଼ଙ୍ଗା ଓ କେହି ଅନ୍ୟ କେଉଁ ବାଟେ ଜେନାପୁର ଆଡ଼କୁ ଚାଲିଲେ । ପ୍ରଜାମଣ୍ଡଳ ଆନ୍ଦୋଳନର ନେତୃତ୍ୱ ନେଉଥିବା ହରମୋହନ ପଟ୍ଟନାୟକ ସେତେବେଳେ ଜେଲ୍‌ରେ । ଡ଼ଙ୍ଗା ଠିକଣା ଜାଗାରେ ପହଞ୍ଚିଲା ବେଳକୁ ଗେପାନରେ ସଂଗ୍ରାମ ପରିଚାଳନା କରୁଥିବା ପ୍ରାୟ ଚବିଶ ବର୍ଷ ବୟସ୍କ ବୈଷ୍ଣବ ଚରଣ ପଟ୍ଟନାୟକ ମଧ୍ୟ ସେଠି ପହଞ୍ଚି ସାରିଥିଲେ । ସେମାନଙ୍କ ଗହଣରେ ଥିଲେ ସଂଗ୍ରାମୀ ରବି ଘୋଷ, କୁଳମଣି ଆଚାର୍ଯ୍ୟ ଓ ବଳଦେବ ଲାଲା । ଦୈବ ଯୋଗକୁ ମାଲଗାଡ଼ିଟିଏ ଅଟକି ରହିଥିଲା ପୋଲ ପାଖରେ । ଅନେକ ମାଲଗାଡ଼ି ଉପରକୁ ଉଠିଯାଇଥିଲେ ଏବଂ ବଳଦେବ ଲାଲା ଡ୍ରାଇଭରକୁ ଖଜାଖିଆ ଓ ଭଡ଼ାରେ ସନ୍ତୁଷ୍ଟକରିଥିଲେ ।

କଟକ ରେଳ ଷ୍ଟେସନରେ ସେଦିନ ନାହିଁ ନ ଥିବା ଭିଡ଼ । ଢ଼େଙ୍କାନାଳର ଅନ୍ଧାରି ଶାସନକୁ ପ୍ରତ୍ୟକ୍ଷ କରିବାପାଇଁ ଏହା ଯେପରି ଥିଲା କଟକବାସୀଙ୍କର ଅପୂର୍ବ ସୁଯୋଗ । ଛ' ଛ' ଟି

ଶବକୁ ରେଳଗାଡ଼ିରୁ ଓହ୍ଲାଗଲା । ଛ'ଟି ଶଗଡ଼ ଅଣାଗଲା । ଶବଗୁଡ଼ିକୁ ଡ଼େରିକରି ଶଗଡ଼ରେ ବସେଇ ଦିଆଗଲା । ଶବ ଆଗରେ ଉଡ଼େଇ ଦିଆଗଲା ତ୍ରିରଙ୍ଗା ପତାକା । ପ୍ରତ୍ୟେକ ଶଗଡ଼ର ବାହକହେଲେ ସ୍ୱାଧୀନତା ସଂଗ୍ରାମର ବଛାବଛା ବୀର । ଶୋଭାଯାତ୍ରା ଆରମ୍ଭ ହେଲା ରେଳ ଷ୍ଟେସନରୁ । ପ୍ରଥମ ଶଗଡ଼ର ସାରଥି ଥିଲେ ବୈଦ୍ୟନାଥ ରଥ ଏବଂ ପଛକୁ ପଛ ଥିଲେ ଅନନ୍ତ ପଟ୍ଟନାୟକ, ବିଶ୍ୱନାଥ ପଶାୟତ, ଗୋବିନ୍ଦ ଚନ୍ଦ୍ର ମହାନ୍ତି, ମୋତିଲାଲ ତ୍ରିପାଠୀ, ସଚ୍ଚି ରାଉତରାୟ, ରବି ଘୋଷ ଓ ବୈଷ୍ଣବ ଚରଣ ପଟ୍ଟନାୟକ । ଶୋଭାଯାତ୍ରାର ଶେଷ ଶବ ଥିଲା ବାଜି ରାଉତର । କଟକ ବଡ଼ ଡ଼ାକ୍ତରଖାନାରେ ଶବମାନଙ୍କର ମାଇନା ପରେ ଶେଭାଯାତ୍ରା ସହର ପରିକ୍ରମା କରିଥିଲା । ଚୌଧୁରୀ ବଜାରରୁ ଫଟୋଗ୍ରାଫର ଡ଼ାକି ସେମାନଙ୍କର ଫଟୋ ଉଠା ଯାଇଥିଲା । ସେଦିନର ଶେଭାଯାତ୍ରା ସହରପାଇଁ ଥିଲା ଏକ ଐତିହାସିକ ଓ ସ୍ମରଣୀୟ ଘଟଣା । ଦେଖଣାହାରୀମାନଙ୍କର ଭିଡ଼ ଦଶହରା ଭସାଣିକୁ ମଧ୍ୟ ବଳିଯାଇଥିଲା । ଶହର ପରିକ୍ରମା କରି ଶୋଭାଯାତ୍ରା ପହଞ୍ଚିଥିଲା ଖାନନଗର ମଶାଣିରେ । ଛ' ଛ' ଟି ଶବକୁ ଗୋଟିଏ ଜୁଇରେ ଦାହ କରାଗଲା । ଜୁଇ ପାଖରେ ଠିଆ ହୋଇ ସଂଗ୍ରାମୀମାନେ ଭାଷଣ ଦେଇଥିଲେ । ପନ୍ଦର ତାରିଖରେ, କଟକ ବାଲିଯାତ୍ରା ପଡ଼ିଆରେ ଏକ ସଭାର ଆୟୋଜନ ହୋଇଥିଲା । ଏଥିରେ ସଭାପତିତ୍ୱ କରିଥିଲେ ସାରଙ୍ଗଧର ଦାସ । ଏବଂ, କୁହାଯାଏ, ସେଦିନ ଶ୍ରୀଯୁକ୍ତ ନବକୃଷ୍ଣ ଚୌଧୁରୀଙ୍କ ଭାଷଣ ଥିଲା ସର୍ବୋତ୍ତମ । ସେହି ଚିତାରୁ ସମ୍ଭବିଥିଲା ନୂଆ ଚେତନାର କବିତା ।[୧୧]

## ପାଞ୍ଚ

ସେଦିନ, ଅକ୍ଟୋବର ମାସ ଏଗାର ତାରିଖ ସକାଳ । ସୂରୁଯଙ୍କ ଲୁହ-ସଜଳ ଆଖି ଏବଂ ସଂଗ୍ରାମୀମାନଙ୍କ ତତଲା ରକତ ବ୍ରାହ୍ମଣୀର ଗୋଳିଆ ପାଣିରେ ଏକ ଅଭିନବ ରଙ୍ଗ ଓ ତରଙ୍ଗ ସୃଷ୍ଟି କରିଥିଲା । ସେଦିନ ରାତିରେ ଗୋଟିଏ ସଙ୍ଗାଡ଼ିରେ ଛ' ଛ' ଟି ଶବର ସମୂହ ସଂସ୍କାର ଖାନନଗର ମଶାଣିର ଆକାଶକୁ କିମ୍ଭୂତ ବର୍ଣ୍ଣରେ ଚିତ୍ରମୟ କରିଥିଲା । ମାତ୍ର ଅଭିନବ ରଙ୍ଗ ଓ ଚିତ୍ରରେ ଯେଉଁ ମୁହଁ ସକଳଙ୍କୁ ଅଭିଭୂତ କରିଥିଲା, ତାହା ଥିଲା ଏକ ଚପଳ ବାଳକ ବାଜି ରାଉତର ଚେତନା । ତା' ପାଖରେ ବଡ଼ମାନେ ଭାରି ସାନ ସାନ ଦିଶିଲେ । ଅଳପ, ମାତ୍ର 'ବାର' ବରଷର ବୟସ ହିଁ ତା'ର ବଡ଼ପଣର କାରଣ ହୋଇଥିଲା । ବାର ବର୍ଷ ଯେପରି ବୀର ହେବାର ବୟସ ! ବଡ଼ମାନଙ୍କ ଆଖି ଆଗରେ ପୁରାଣ, କାବ୍ୟ ଓ କିମ୍ବଦନ୍ତୀର ଅଭିମନ୍ୟୁ, ଧ୍ରୁବ, ପ୍ରହଲାଦ, ଧର୍ମପଦ ଆଦି ପିଲାମାନଙ୍କର ତେଜିଲା ରୂପ ଉଜଳିଉଠିଲା । ସହିଦ୍ ବାଜିଆ ବୀରତ୍ୱର ଏକ ଅଦ୍ଭୁତ ପ୍ରତୀକର ମାନ୍ୟତା ପାଇଲା ଏବଂ, ତା'ର ସ୍ୱୀକୃତ ଶହିଦତ୍ୱ କଳ୍ପନାର ପ୍ରଲେପରେ କ୍ରମଶଃ ବିକୃତାୟିତ ହେବାରେ ଲାଗିଲା । ଏ ବିକୃତାୟନ ପ୍ରକ୍ରିୟା ଆରମ୍ଭ ହୋଇଥିଲା – ସେଇଦିନ ରାତିରେ । ସେ ଯେ ବୀର ହୋଇଯିବ, ଏ କଥା ତା' ଶବର ପାଦ ପାଖରେ ଠିଆ ହେବା ସଂଗ୍ରାମୀମାନେ ମଧ୍ୟ ସେତେବେଳେ କଳ୍ପନା କରି ନ ଥିଲେ ।

ବାଜି ରାଉତର ବୀରତ୍ୱର ପ୍ରଥମ କାବ୍ୟିକ ଉଚ୍ଚାରଣ ଥିଲା–କବି ସଚ୍ଚିଦାନନ୍ଦ ରାଉତରାୟଙ୍କ ଲିଖିତ 'ବାଜି ରାଉତ' କବିତା । ଏହା ପ୍ରଥମେ 'ସହକାର' ପତ୍ରିକାର ଊନବିଂଶ ଭାଗର ନବମ

ସଂଖ୍ୟାରେ ୮୪୦ ଓ ୮୪୧ ପୃଷ୍ଠାରେ ମୁଦ୍ରିତ । ଏହାର ଆକାର ଥିଲା ମାତ୍ର ପଞ୍ଚସ୍ତରୀ ଧାଡ଼ି ବିଶିଷ୍ଟ । ଆରମ୍ଭରେ ଏକ ସଂକ୍ଷିପ୍ତ ସୂଚନା ସହିତ କବିତା ଏହିପରି

"ବାଜି ରାଉତ ୧୨ ବର୍ଷର ପିଲା । ଢେଙ୍କାନାଳ ଅନ୍ତର୍ଗତ ନୀଳକଣ୍ଠପୁରରେ ଏକ ଗରିବ ନାଉରୀ ଘରେ ତାର ଜନ୍ମ । ଭୁବନ ଗାଁରେ ଗୁଳି ଫାଏର କରି ଦରବାରର ପୁଲିସ ଫଉଜ ସେଦିନ ଝଡ଼ ରାତିରେ ରକ୍ତମୁହାଁ ହୋଇ ଫେରି ଆସୁଥିଲା । ବାଜି ରାଉତକୁ ନଈ ପାର ହେବା ପାଇଁ ପୁଲିସ ଡଙ୍ଗା ମାଗିଲା । ବାଜି ରାଉତ ଉତ୍ତର ଦେଲା– "ପ୍ରଜାମଣ୍ଡଳର ହୁକୁମ ନାହିଁ, ମୁଁ ଡଙ୍ଗା ଛାଡ଼ିବି ନାହିଁ ।" ଫଳରେ ତା'ଉପରେ ଚାଲିଲା ଗୁଳି । ମଲା ପଛକେ ସେ ପୁଲିସକୁ ଡଙ୍ଗା ଦେଲାନାହିଁ । ଢ଼େଙ୍କାନାଳର ଅନ୍ୟାନ୍ୟ ଶହୀଦମାନଙ୍କ ଶବ ସଙ୍ଗେ ସେଦିନ ବାଜିରାଉତର ଶବକୁ କଟକରେ ପଟୁଆର ଏବଂ ଡାକ୍ତର ମାଇନା ହେବା ପରେ ଅନନ୍ତ ପଟ୍ଟନାୟକ (ବର୍ତ୍ତମାନ ଢ଼େଙ୍କାନାଳ ଜେଲ୍‌ରେ), ରବି ଘୋଷ, ମୁଁ ଓ ଅନ୍ୟାନ୍ୟ କେତେକ ବନ୍ଧୁ ଖାନ୍‌ନଗର ମାଣିରେ ପୋଡ଼ିଦେଇ ଆସିଥିଲୁଁ । ସେଦିନ ସେହି ଭୟାବହ ରାତିରେ ବାଜିର ଚିତାନଳ ପାଖରେ ବସି ଯେଉଁସବୁ ଭାବନା ମନରେ ଉଇଁଥିଲା, ତାରି ସ୍ମରଣରେ...)

ନୁହେ ବନ୍ଧୁ, ନୁହେ ଏହା ଚିତା,
ଏ ଦେଶ ତିମିର ତଳେ
ଏ ଅଳିଭା ମୁକତି ସଳିତା !!
ନୁହେ ଏହା ଜଳିଯିବା ପାଇଁ
ଏହାର ଜନମ ଏଥି ଜାଳିପୋଡ଼ି
ଦେବାକୁ ଧସାଇ.... ।
ଏ ଶିଖା ଦେଇଛି ଆଜି ଇତିହାସେ ହାତଟେକି ଦାନ
ଶତାବ୍ଦୀର ଶ୍ରେଷ୍ଠ ଫୁଲ, ମୁକୁଳିତ ମୃତ୍ୟୁହୀନ ପ୍ରାଣ !
ନିରନ୍ନ ଏ ଜନତାକୁ ଦେଇଚି ଏ ତାହାର ଚାଳକ
କ୍ଷୁଦ୍ର ଏ ନାଉରୀ ବାଳକ ।
ବାହିବାକୁ ଏ ଦେଶର ତରୀ,
ବାରବରଷର ବାଜି ମରି ବି ତ ନାହିଁ ସେହୁ ମରି !!
ପଛୁ କିଏ ଡାକୁଛି ତୁହାଇ.......
"ରହରହ ଆରେ ଶିଶୁ,
ଛିଡ଼ା ହୁଅ ବାରେ ଯାଆ ନାହିଁ ।
ଅଛି ଝଡ଼, ଅଛି ରାଜା, ଅଛି ପୁଣି ରାଜାର ସଇନ
ଗରଜୁଛି କଳା ମେଘ, ଝଡ଼ ରାତି, ହୋଇନାହିଁ ଦିନ ।

ଫୁଲି ଫୁଲି ନାଚେ ନଈ ପାଣି
ଅନ୍ଧାରରେ ଖାଲ ବିଲ କିଛି ହିଁ ତ ହେଉନାହିଁ ଜାଣି ।"
"ଏଡ଼ିକି ସେ ଅମାନିଆ ପିଲା
ଫଉଜର ଗୁଳିଗୁଳା, ରାଜା, ଝଡ଼ କିଛି ନ ମାନିଲା ।"
ଧୂଳିଖେଳ ଛାଡ଼ି
ଗୁଳି ଆଗେ ଜୀବନକୁ ହସିହସି ଦେଲା ସିନା ବାଡ଼ି ।
ଝଡ଼ଠାରୁ ସେ ଯେ ବଡ଼,
ମେଘଠାରୁ ଆହୁରି ସେ କଳା
ସାନ ଦେହେ ଖେଳେ ତା'ର
ଜୀବନର ଅଲିଭା ଚପଳା !!
ରାତି ପରି ହୁଏ ବାଟ ବଣା,
ପଥ ଭୁଲି ଏଣେ ତେଣେ
ବୋହିଯାଏ ସେ ପରା ଝରଣା !!
ଛୋଟ ପୁଣି ଏଡ଼େ ସେ ବିରାଟ !
ଜୀବନ ପାରିଲା ନାହିଁ ରଖି ତାକୁ;
ମୃତ୍ୟୁ ତା'ରେ ଛାଡ଼ି ଦେଲା ବାଟ ।
ଲୁହାର ଫଉଜ ଗଲେ ଫାଟି
ମାଟିର କଙ୍କାଳ ସେ ଯେ, କାହିଁଗଲା ?
ମାଟି ଖାଲି ମାଟି !
ଏ ଦେଶର ମାଟି
କାହାକୁ ସେ ଭଲପାଏ ତାହାଲାଗି
ନୂଆ ବାରବାଟି
ଗଢ଼ିଲା ସେ ହାଡ଼ମାଂସେ,
ନିଃଶ୍ୱାସରେ ଦେଲା ଜୀବନ୍ୟାସ,
ହଳଦୀଘାଟରୁ ବଡ଼
ଗଢ଼ିଗଲା ନୂଆ ଇତିହାସ..... ।
ଲହୁ ଢ଼ାଳି ତହିଁ ପରେ ଲେଖିଲା ସେ ମୁକତିର ଛବି
ଛବି ନୁହେଁ, ତୁଳୀ ନୁହେଁ, ନୁହେଁ ରଙ୍ଗ,
ସେ ରକ୍ତ କରବୀ !
ଏ ମାଟିର ସ୍ତନ୍ୟ ପିଇ ଗାଇଲା ସେ ଏ ମାଟିର ଜୟ
ବିଶ୍ୱର ଦୁରନ୍ତ ଶିଶୁ, ମୃତ୍ତିକାର ଚିର ସ୍ତନନ୍ଧୟ !!!
ଚମ୍ପକ ସମ ସେ ଯେ ସଉରଭ ରଖି ଗଲା ମରି

ମରଣ ପାରିଲା ନାହିଁ କଦାପି ତ ଛୋଟ ତାକୁ କରି ।
ପଦଚିହ୍ନ ତାର
ଶମଶାନେ କଲା ତୀର୍ଥ, ଦେବାଳୟ ହେଲା ଶବାଧାର ।
ଭାଙ୍ଗିବାର କବି
ଗଢ଼ିବାର ପର୍ବ ଶେଷେ ଗାଇଲ କି ମରଣ ଭୈରବୀ ।
ନିଜର ଶୋଣିତ ଢ଼ାଳି ଲେଖିଗଲ ଏ ଯେଉଁ କବିତା
ସନ୍ଧ୍ୟାର ତୋରଣେ ଥରେ ତାହା ଦେଖି
ଭୟରେ ସବିତା,
ହସି ଉଠେ କଳା ରାତି, ଫିଟିପଡ଼େ ଝଡ଼ର କବରୀ,
ଆଗାମୀ କାଳର ବାର୍ତ୍ତା ଜନ୍ମ ଲଭେ ଭ୍ରୂଣ ପରି ଥରି ।
ଯା ଆସିବ, ତାହା ଲାଗି ଚାରିଦିଗେ
ଲାଗେ ଅଭିସାର
ନବ ନ୍ୟାୟ-ଅନୁଷ୍ଠାନେ ଅତୀତର
ନିଷ୍ଠୁର ବିଚାର.....
ହୋଇଲାଣି ଶେଷ
ଶାସ୍ତି ତାର ମୃତ୍ୟୁର ଆଦେଶ ।
ତୁମରି କବିତା ଆଜି ବୋହିଆଣେ ଅବା ସେ ଘୋଷଣା
ମୃତ୍ୟୁର କରାଳ ହାସ୍ୟ ତହିଁ ବାଜେ ଯେସନ ବାଜଣା
ଆହେ ବିଚାରକ !
ଅତୀତର ମୃତଦେହେ ରଖ ତବ ସ୍ୱାକ୍ଷର ସ୍ମାରକ ।
ଦୂରେ ଡାକେ ଉଦାର ଅନ୍ଧାର !
କାଠଯୋଡ଼ି କଥା କହେ, କଥା କହ
ଆଜି ହେ ମୃର୍ଦ୍ଧାର ! !
X X X
ନୁହେଁ ବନ୍ଧୁ ନୁହେଁ ଏହା ଚିତା,
ସେ ତୁମର କ୍ଷମାହୀନ–ମୃତ୍ୟୁମିଶା
ଅମର କବିତା ।
ସହକାର, ୧୯ଶ ଭାଗ, ପୌଷ ୧୩୪୬ ସାଲ, ନବମ ସଂଖ୍ୟା

ତା ୯.୩.୪୧ ରିଖରେ କଟକରୁ 'ବାଜିରାଉତ' କବିତା ବହିର ପ୍ରଥମ ସଂସ୍କରଣ ଏବଂ ଏହାର ପରିବର୍ଦ୍ଧିତ ଦ୍ୱିତୀୟ ସଂସ୍କରଣ କଲିକତା ଓ ତୃତୀୟ ସଂସ୍କରଣ ପୁରୀରୁ ଯଥାକ୍ରମେ ୧୯୪୩ ଓ ୧୯୪୮ ମସିହାରେ ପ୍ରକାଶ ପାଇଥିଲା । ତୃତୀୟ ସଂସ୍କରଣ ପ୍ରକାଶିତ ହେଲା ବେଳକୁ କବି ରାଉତରାୟ କଲିକତାରେ ବୁଦ୍ଧିଜୀବୀ । ବହିର ଚତୁର୍ଥ ସଂସ୍କରଣ ପ୍ରକାଶ ପାଇଲା

କଟକରୁ, ଗ୍ରନ୍ଥମନ୍ଦିର ଆନୁକୂଲ୍ୟରେ ୧୯୬୪ ମସିହାରେ । ଏବଂ, ମାତ୍ର ପଞ୍ଚସ୍ତରୀ ଧାଡ଼ି ବିଶିଷ୍ଟ କବିତା ୧୯୬୪ ମସିହାରେ ପାଞ୍ଚଗୋଟି ସର୍ଗ ପ୍ରାୟ ପରବର୍ତ୍ତୀ କାଳରେ । ପ୍ରାୟ ଏକହଜାର ଧାଡ଼ିରେ ପରିବର୍ଦ୍ଧିତ ହୋଇଛି, ଖଣ୍ଡକାବ୍ୟର ରୂପ ନେଇଛି ଏବଂ ପ୍ରଥମ କବିତା ଖଣ୍ଡକାବ୍ୟର ପ୍ରଥମ ସର୍ଗରେ ବିଭିନ୍ନ ସ୍ଥାନରେ ସଂଯୋଜିତ ହୋଇଛି । ସରୋଜିନୀ ନାଇଡୁଙ୍କ ସାନଭାଇ ସାଥୀ ହାରୀନ୍ଦ୍ରନାଥ ଚଟ୍ଟୋପାଧ୍ୟାୟ ବାଜିରାଉତ ଓ ଅନ୍ୟ କେତେକ କବିତାର ଇଂରାଜୀ ଅନୁବାଦ କରିଛନ୍ତି । ଏହା "The Boatman Boy and Other Poems" ନାମରେ କଲିକତାରୁ ପ୍ରକାଶ ପାଇ ଭାରତରେ ସର୍ବତ୍ର ପ୍ରଶଂସିତ ହୋଇଛି । ଏହି ଖଣ୍ଡକାବ୍ୟକୁ ଉତ୍ସର୍ଗ କରାଯାଇଛି "ଲାଲ ଓଡ଼ିଶାର ବୀର ସେନାପତି, ଓଡ଼ିଶା ଗଡ଼ଜାତ ପ୍ରଜା ଆନ୍ଦୋଳନର ଅନ୍ୟତମ ଜନନେତା ସାଥୀ ଭଗବତୀଚରଣ ପାଣିଗ୍ରାହୀ"ଙ୍କୁ (୧୯୪୨ ମସିହା) ।[୧୨] ବସୁଧା ଚକ୍ରବର୍ତ୍ତୀଙ୍କଦ୍ୱାରା ସମ୍ପାଦିତ "Sachi Routray : A Poet of the People" (୧୯୫୫) ଗ୍ରନ୍ଥରେ ମଧ୍ୟ ବାଜି ରାଉତ ଓ ସଚ୍ଚି ରାଉତରାୟଙ୍କର ପ୍ରଗତିବାଦୀ କାବ୍ୟ ଚେତନା ସମ୍ପର୍କରେ କେତେକ ଉଲ୍ଲେଖନୀୟ ଆଲୋଚନା ପ୍ରକାଶ ପାଇଛି ।[୧୩] ଆଲୋଚକମାନେ କବିଙ୍କ ପ୍ରଶଂସାରେ ଶତମୁଖ ।

ରାଉତରାୟଙ୍କ (୧୯୪୩ ମସିହାରେ ପ୍ରକାଶିତ) ବାଜିରାଉତ ବହିର ମୁଖବନ୍ଧ ଗୁରୁତ୍ୱପୂର୍ଣ୍ଣ । ପ୍ରଥମ କବିତାର ପ୍ରାୟ ପାଞ୍ଚବର୍ଷ ପରେ ଲିଖିତ ଏହି ବହିରେ କବି କେତେକ ନୂତନ ତଥ୍ୟ ଅବତାରଣା କରିଛନ୍ତି । ତାହା ଏହିପରି: 'ନାୟକ: ବାଜି ରାଉତ ନାମକ ଏକ ଛୋଟ ବାର ବର୍ଷର ନାଉରୀ ପିଲା । xxx ନୀଳକଣ୍ଠପୁର ଗରିବ ଖଣ୍ଡାୟତ ଘରେ ତା'ର ଜନ୍ମ । xxx ବୁଢ଼ୀ ଧାନକୁଟି ପେଟ ପୋଷେ । ଅକ୍ଟୋବର ଦଶ, ଅନ୍ଧାର କିଟିକିଟି ଶୀତ ରାତି । ମେଘ, ବର୍ଷା, ଘଡ଼ଘଡି, ବିଜୁଳି–ତିନି ଦିନ ଧରି ଝଡ଼ିବର୍ଷା xxx ଘାଟ ଡ଼ଙ୍ଗା ଜଗି ଚାଳ ଘରେ ହାଲିଆ ହୋଇ ଶୋଇଛି–ପ୍ରଜାମଣ୍ଡଳର ସିପାହୀ । ପହରା ଦେବାର ପାଳି, ଅନ୍ଧାର ରାତିରେ ଫଉଜ ତାକୁ ଡ଼ଙ୍ଗା ମାଗିଲେ । ପ୍ରଜାମଣ୍ଡଳର ହୁକୁମ ନାହିଁ ଡ଼ଙ୍ଗା ଛାଡ଼ିବି ନାହିଁ । ବନ୍ଧୁକ କୁନ୍ଦାର ମାଡ଼ରେ ମୁଣ୍ଡ ଫାଟି ଦି'ଫାଳ ହୋଇଗଲା । ତୁଠକୁ ଡ଼େଇଁ ପଡ଼ି କହିଲା–କିଏ କେଉଁଠି ଅଛ ଧାଇଁ ଆସ, ପୋଲିସ୍ ଆମ ଘାଟ ଉପରେ' ଇତ୍ୟାଦି । ୧୯୩୮ ଓ ୧୯୪୩ ମସିହାରେ ସଚ୍ଚି ରାଉତରାୟଙ୍କ ପ୍ରଦତ୍ତ ସ୍ୱୀକାରୋକ୍ତିକୁ ବିଶ୍ଳେଷଣ କଲେ ବହୁ ବିରୋଧାଭାସର ସୂଚନା ମିଳେ । କାବ୍ୟକୃତି ଦୃଷ୍ଟିରୁ ବିଚାର କଲେ ବାଜିରାଉତକୁ 'ଚମତ୍କାର' କହିବାରେ କୌଣସି ପାଠକ ଏତେ ଟିକିଏ 'କିନ୍ତୁ' ପ୍ରକାଶ କରିବ ନାହିଁ । ମାତ୍ର ଏହାର ଐତିହାସିକତା ବିଚାର କଲେ– ସିପାହୀଙ୍କ ଗୁଳିରେ ବାଜି ରାଉତ ମୃତ୍ୟୁ ବରଣ କରିଥିଲା, ମାତ୍ର ଏତିକି ବ୍ୟତୀତ ସଚ୍ଚି ରାଉତରାୟଙ୍କ ପ୍ରଦତ୍ତ ତଥ୍ୟ "ଇତିହାସକୁ ପରିହାସ" ବୋଲି କୁହାଯାଇପାରେ । ଏପରି କି କାବ୍ୟରେ ଅନେକତ୍ର *କାବ୍ୟିକ ସତ୍ୟର ସ୍ୱୀକାରୋକ୍ତି*, କଳ୍ପନାର ଯାଦୁଘର ପରି ମନେହୁଏ ।

ସେତେବେଳେ ପ୍ରଜାମଣ୍ଡଳ ଓ କୃଷକ ଆନ୍ଦୋଳନର ନେତୃତ୍ୱ ନେଉଥିବା କୃଷକ ପତ୍ରିକା ଭୁବନ ଗୁଳିକାଣ୍ଡକୁ ନିମ୍ନୋକ୍ତ ଶବ୍ଦରେ ହିଁ ବର୍ଣ୍ଣନା କରିଛି:

> ବାଜିରାଉତ ବା'ର ବର୍ଷର ପିଲା, କିନ୍ତୁ ତା' ମନରେ ଅସୀମ ଦମ୍ଭ ଓ ଛାତିରେ ସାହସ ପୂରି ରହିଥିଲା । ସେ ରାତିରେ ଡଙ୍ଗା ଜଗି ଶୋଇଥିଲା । ପୁଲିସ୍ ତାକୁ

ସଙ୍ଗୀନମୁନ ଦେଖାଇ ଡଙ୍ଗା ଦେବାକୁ କହିଲା । ସେ ସେଥିରେ ମଙ୍ଗିଲା ନାହିଁ । ଏତିକିବେଳେ ବୀର ହୁରୁଷୀ ପ୍ରଧାନ ଆସି ଡଙ୍ଗାର ଦଉଡ଼ି ବନ୍ଧା ହୋଇଥିବା କୀଳା ଧରି ପୁଲିସ୍‌କୁ କହିଲା, "ଏ ଆମ ଡ଼ଙ୍ଗା, ଆପଣଙ୍କୁ ନେହୁରା ହୋଇ କହୁଛୁ, ଏ ଡଙ୍ଗା ଦେବାକୁ ଆମ ଭାଇମାନଙ୍କର ଆଦେଶ ନାହିଁ । ଘାଟ ଡଙ୍ଗା ଅଛି, ଆପଣ ସେଥିରେ ଯାଆନ୍ତୁ ।

ଏତିକିରେ ପୁଲିସ୍ ତା' ଡ଼ାହାଣ ହାତରେ ସଙ୍ଗୀନ ଭୁଷିଦେଲା । ସେ ବାଁ ହାତରେ କୀଳା ଧରିପକାଇ କହିଲା, "ମାରିପକା ପଛକେ ମୁଁ ଛାଡ଼ିବି ନାହିଁ ।" ପୁଲିସ୍‌ମାନେ ଡଙ୍ଗା ଉପରକୁ ଉଠିଯାଇ ଦଉଡ଼ିଟାକୁ କାଟିଦେଇ ଡଙ୍ଗାରୁ ଗୁଳିକରି ହୁରୁଷୀ ପ୍ରଧାନ ଓ ବାଜି ରାଉତକୁ ମାରିଦେଲେ । ହୁରୁଷୀ ପ୍ରଧାନ ପ୍ରଜା ମଣ୍ଡଳର ଜଣେ ସାହସୀ ଓ ନିର୍ଭୀକ କର୍ମୀ ଥିଲେ ।

ଏହି ସମ୍ବାଦ ପାଖରେ ଜୁଇର ଫଟୋଚିତ୍ର ମଧ୍ୟ ମୁଦ୍ରିତ ହୋଇଛି ।

ଅନ୍ୟ ଏକ ସମ୍ବାଦ :

ଢେଙ୍କାନାଳ ଦରବାର ନରହତ୍ୟା ରେ କୁହାଯାଇଛି–ଅକ୍ଟୋବର ଦଶ ତାରିଖ ରାତି ବାରଟା ଚାଳିଶରେ ଭୁବନ ଗ୍ରାମରେ ତିନିଟା ପର୍ଯ୍ୟନ୍ତ ପୋଲିସ ଦମନଲୀଳା ଚଳାଇଲା । ଦୁଇଟି ମୃତଲୋକଙ୍କ ଶବ ଧରି ସେମାନେ ନୀଳକଣ୍ଠପୁର ଗାଁ ପାଖ ନଈକୂଳରେ ପହଞ୍ଚିଲେ । ଦୁଇଟି ନାହା ମାଗିଲେ । ଲୋକେ ମନାକଲେ । ରାତି ୪ଟା ବେଳକୁ ଦଶଜଣ ପୋଲିସ୍ ନାହା ଉପରକୁ ଚଢ଼ିଗଲେ, ଆହୁରି ୪୦ଜଣ । ନାଉରି ଦୁଇଜଣ ସେମାନଙ୍କ ଦଉଡ଼ି ଟାଣିଧରି ନାହା ଦେବାକୁ ମନାକଲେ । ଲୋକଙ୍କୁ ସାହାଯ୍ୟ କରିବାକୁ ଅନୁରୋଧ କଲେ । ମାତ୍ର ଲୋକେ କିଛି ନକରି କେବଳ କାବା ହୋଇ ଠିଆ ହୋଇଥା'ନ୍ତି । ତା'ପରେ ପୁଲିସ୍‌ବାଲା ଛୁରୀରେ ଦଉଡ଼ିକୁ କାଟିଦେଇ ନାହା ଛାଡ଼ିଦେଲେ । ନାହା କୂଳରୁ ପାଣିକୁ ୧୦/୧୨ ହାତ ଚାଲିଯିବାପରେ ପୁଲିସବାଲାମାନେ ଅନ୍ଧାରରେ ଗୁଳି ଫାଏର କଲେ । ଲୋକଙ୍କୁ ପଳେଇଯିବାକୁ ମଧ୍ୟ କୌଣସି ପ୍ରକାରେ ସୁବିଧା ଦିଆଯାଇ ନଥିଲା ।" ସେଇ ସଂଖ୍ୟାର ସମ୍ପାଦକୀୟରେ ଶୀର୍ଷକ ରହିଛି: 'ଢେଙ୍କାନାଳ ଜଢ଼େଇର ନୂଆଫର୍ଦ୍ଦ' । ଏବଂ, ଏହି ଗୁଳିଚାଳନାକୁ ରାଜା, ଆତ୍ମରକ୍ଷାପାଇଁ ଉଦ୍ଦିଷ୍ଟ ବୋଲି ସଫେଇ ଦେଇଛନ୍ତି ।[୧୪]

ରାଉତରାୟ ଏହି ସତ୍ୟକୁ ଜାଣି ସୁଦ୍ଧା ବାଜିରାଉତର ମୃତ୍ୟୁକୁ ଅବଶିଷ୍ଟମାନଙ୍କପାଇଁ 'ଏକ ଆହ୍ୱାନ' ଭାବରେ ଗ୍ରହଣ କରିଛନ୍ତି । ଶ୍ରେଣୀ ସଂଘର୍ଷରେ ବଳି ପଡ଼ିଥିବା ବାଳକକୁ ଗଣ ହାତରେ ଟେକି ଦେଇଛନ୍ତି । ତାକୁ ବ୍ୟକ୍ତିରୁ ଏକ ଚେତନାରେ ରୂପାନ୍ତରିତ କରି ଦେଇଛନ୍ତି । ତାକୁ *ଶତାବ୍ଦୀର ଶ୍ରେଷ୍ଠ ଫୁଲ, ମୁକୁଳିତ ପ୍ରାଣହୀନ ଭାଷା, ଝଡ଼ଠାରୁ ବଡ଼, ମେଘଠାରୁ କଳା, ଜୀବନର ଅଳିଭା ଚପଳା, ରକ୍ତ କରବୀ, ରକ୍ତ ଯୌବନ, କ୍ରାନ୍ତିର ସାରଥି, ଜନତାର ମୂକ କବି, ମାଳ ଅଞ୍ଚଳର ନବୀନ ଅଙ୍କୁର, ଦିବ୍ୟ ସବ୍ୟସାଚୀ* ଆଦି କେତେକେତେ ଭାବରେ ସମ୍ବୋଧନ କରିଛନ୍ତି ।

କହିଛନ୍ତି, *ମୃତବତ୍ସା ଏ ଶତାବ୍ଦୀର, ସ୍ଥବିର ଜନତାର ଚେତନାରେ ସଂଗଠିତ ବିଦ୍ରୋହର ମନ୍ତ୍ର ହୋଇ ସେ ଆସିବ । ତାହା ହାତରେ ଥିବ ପ୍ରଳୟର ବିଷାଣ, ଗୈରିକ ନିଶାଣ* । କେବଳ ସେତିକି ନୁହେଁ, କଳ୍ପନାବିଳାସୀ କବିମାନଙ୍କୁ ମଧ୍ୟ ରାଉତରାୟ ସମାଜର ବାସ୍ତବ ଚିତ୍ର ଆଙ୍କିବାପାଇଁ ଆହ୍ୱାନ ଦେଇଛନ୍ତି । ଗଣଚେତନାରେ ମୁକ୍ତିର ମନ୍ତ୍ର ସଂଚାରଣପାଇଁ ପ୍ରୟାସକରିଛନ୍ତି ।

ମାତ୍ର 'ବାଜି ରାଉତ'ର ସର୍ବଶେଷ ସଂସ୍କରଣରେ କବିଙ୍କର ସ୍ୱପ୍ନଭଙ୍ଗର ବିକଳ ମାନସିକତାର ସଂକେତ ରହିଛି । ତାଙ୍କ ଅନୁଭବରେ, ଦେଶ ସ୍ୱାଧୀନ ହୋଇଛି । ଗଡ଼ଜାତରୁ ଅନ୍ଧାରି ଶାସନର ବିଲୋପ ଘଟିଛି । 'ବାଜି ରାଉତ' ନାମକ ଏକ ଆହ୍ୱାନ କ୍ରମଶଃ କିମ୍ବଦନ୍ତୀରେ ରୂପାନ୍ତରିତ ହୋଇଛି । ବାଜି ଆପଣା ଭୂଇଁରେ ଅପରିଚିତ ହୋଇଯାଇଛି–

ରାତିର ରହସ୍ୟ ପରି ଯାଇଛି ସେ ଆପଣାକୁ ଲେଖି
ଦର୍ଶକର ଗୁପ୍ତ ମର୍ମପଟେ,
ଦେଇନାହିଁ ଧରା ସେତ ବାହାରର
ଖୋଲା ଦୃଷ୍ଟି ପଥେ । (ବାଜି ରାଉତ : ୧୯୬୪)·

ଖାନନଗର ମଶାଣି, ଯାହା ବିପ୍ଲବୀପାଇଁ ଏକ ତୀର୍ଥଭୂମି, ସେଠି ତା'ର ସମାଧି ମନ୍ଦିର ମଧ୍ୟ ତିଆରି ହୋଇ ପାରିନାହିଁ । ବାଜି ରାଉତ ନାମକ ଏକ ଚେତନାର ରାଜନୀତୀକରଣ ହୋଇଛି । ମାତ୍ର ରାଉତରାୟ ତଥାପି ଆଶା ରଖିଛନ୍ତି–ସେ *ଆସିବ ଆସିବ ଫେରି ଧନଞ୍ଜୟ ଦିବ୍ୟ ସବ୍ୟସାଚୀ* ।

କେବଳ ରାଉତରାୟ ନୁହନ୍ତି, ସମକାଳୀନ ବହୁ କବି-ପ୍ରାଣକୁ ବାଜି ରାଉତ ଆନ୍ଦୋଳନ କରିଛି । କାଳିନ୍ଦୀ ଚରଣ ପାଣିଗ୍ରାହୀ, ଏସ୍. ହମିଦ୍ (ଢ଼େଙ୍କାନାଳର ନରହତ୍ୟା), ଶରତଚନ୍ଦ୍ର ମିଶ୍ର (ବାଜି ରାଉତ), ହରେକୃଷ୍ଣ ମହତାବ (ସ୍ୱାଧୀନତାର ଚଲାପଥେ), ଘନଶ୍ୟାମ ମହାନ୍ତି (ଦଶହରା ଭେଟି), ରାଧାମୋହନ ଗଡ଼ନାୟକ, ଅନନ୍ତ ପଟ୍ଟନାୟକ ଓ ମନମୋହନ ମିଶ୍ରଙ୍କ କବିତାଗୁଡ଼ିକୁ ଏଠାରେ ସ୍ମରଣ କରାଯାଇପାରେ ।[୧୫] କବିତାଗୁଡ଼ିକ ମଧ୍ୟରେ କାଳିନ୍ଦୀଚରଣ, ରାଧାମୋହନ, ଅନନ୍ତ ଓ ମନମୋହନଙ୍କ କବିତା ସେକାଳରେ ପ୍ରାୟ ପ୍ରତ୍ୟେକ ବିପ୍ଲବୀଙ୍କୁ ଆଚ୍ଛନ୍ନ କରି ରଖିଥିଲା । କାଳିନ୍ଦୀଚରଣଙ୍କ କବିତା 'କୃଷକ' ପତ୍ରିକାରେ (୧୮୩୮) 'ବନ୍ଦୀ ସୈନିକ' ଛଦ୍ମ ନାମରେ ପ୍ରକାଶିତ ।[୧୬] କବିତାର ଭାଷା ଓ ଛନ୍ଦ ଏତେ ସାବଲୀଳ ଥିଲା ଯେ, ଲୋକ ତୁଣ୍ଡରେ ତାହା ବସା ବାନ୍ଧିଥିଲା–

ଝାଳ ଦେଇ ତୁ ରେ ଗଢ଼ିଲୁ ରାଇଜ ରଜା
ଲୁହ ଢ଼ାଳି ତୋର ହତିଆର, ତୋର ପଜା
ବେଳ ଏହି ବେଳ ଏହି
ଗଢ଼ିଥିଲୁ ଯା'କୁ, ତଡ଼ିବୁ ତାହାକୁ, ନ ଶୁଅରେ ଆଉ ଚେଇଁ ।
ବଜାଇଲୁ ତୁ ତ ଦୁନିଆ ଉପରେ ବାଜା
ଛାତିକୁ ଫୁଲାଇ, ନାହିଁ ରାଜା ନାହିଁ ରାଜା ।

କବିତାଟି ଇଂରାଜୀ ଭାଷାରେ ମଧ୍ୟ ଅନୂଦିତ ହୋଇଥିଲା । କବିତାରେ ହିଂସାର ମାର୍ଗକୁ ଗୁରୁତ୍ୱ ଦିଆଯାଇଛି ବୋଲି ଗାନ୍ଧିଜୀଙ୍କୁ ସେକାଳରେ ଅବଗତ କରାଯାଇଥିଲା ଏବଂ ଗାନ୍ଧିଜୀଙ୍କ ଅନ୍ୟତମ

ବିଦେଶୀ ଶିଷ୍ୟା ମିସ୍ ଆଗାଥା ହ୍ୟାରିସନ୍‌ଙ୍କୁ ଏହାର ବ୍ୟକ୍ତିଗତ ତଦନ୍ତ କରିବାପାଇଁ କଟକ ଆସିବାକୁ ପଡ଼ିଥିଲା ।[୧୭] ଆଜି ମଧ୍ୟ ବଞ୍ଚିଥିବା ସେ କାଳର ମଣିଷମାନଙ୍କ ସହ କଥା ହେଲା ବେଳେ ଅନନ୍ତ ଓ ମନମୋହନଙ୍କ କବିତାଗୁଡ଼ିକୁ ଅତି ଭାବପ୍ରବଣ ହୋଇ ସେମାନେ ଗାଉଥିବାର ଏହି ଲେଖକ ଶୁଣିଛି ।

ଯୁଦ୍ଧ ସରି ନାହିଁ, ଅରି ଫେରି ନାହିଁ
ଆସ ମୋ କୁଟୀରେ ଆସ ଭାଇ ।
ମରିବୁ ପଛେ ଛାଡ଼ିବୁ ନାହିଁ
ଆମେ ଢେଙ୍କାନାଳିଆ ପିଲାରେ ।

କିମ୍ବା ଆମେ ଢେଙ୍କାନାଳିଆ ଜାଗିବା
ମରୁଛେ ତ ନିତି ଭୋକ ଉପାସରେ
ଦିନେ ହେଲେ ତାଙ୍କୁ ମାରିବା,
ଆମ ଝିଅ ବୋହୂ ଇଜ୍ଜତ ମହତ
ଚୋରି କଲେ ଯେ, ଧନୀ ବପୁବନ୍ତ
ତାଙ୍କରି ଶାସନ ଶୋଷଣ ଉପରେ ତାଙ୍କରି ସମାଧି ଗଢ଼ିବା ।

ଅନନ୍ତ ପଟ୍ଟନାୟକଙ୍କ 'ବାଲୁତ ବୀର ସେ' କବିତାର କେତୋଟି ଧାଡ଼ି–

ବାଲୁତ ବୀର ସେ ବାଜି ରାଉତର
ତତଲା ରକତ ଧାର
ଦଳିତ ଜାତିର ଲଲାଟେ ଲେଖିଲା
ମୁକ୍ତି ସମରେ ଆଦ୍ୟ ବିଜୟ ଗାର ।

ଜନତାକୁ ଉତ୍ତେଜିତ କରୁଥିଲା ।[୧୮]

୧୯୩୮ ମସିହା ଅକ୍ଟୋବର ୨୫ ତାରିଖରେ, ବାଜି ରାଉତର ଅମୃତ ମଣୋହି ସଭା କଟକରେ ଅନୁଷ୍ଠିତ ହୋଇଥିଲା । ସଚ୍ଚି ରାଉତରାୟ ସେଠାରେ କବିତାଟିଏ ପଢ଼ିଥିଲେ । ତାହା ଏହିପରି : ଆମେ ମଣିଷର ଯୁଗ ଆଣିବୁ

ତମେ ମାର'ଯେତେ ଆଜି ମାରିବ
ନିତି ଯେ ମରଇ ବେଠି ବେଗାରିରେ
ଦିନେ ମରିବାକୁ ସେ କି ଡରିବ ?

ଆସିଅଛ ଆଜି ମୁଠା କରି ଟାଣ
ପଳାଅନା ଲୁଚି ନେବୁନାହିଁ ପ୍ରାଣ
ମାଛିପରି ଯାକୁ ଘୃଣା କରୁ ଆମେ
ଛୁଇଁବନି ତାକୁ ଜାଣିବ ।[୧୯]

ନୀଳକଣ୍ଠପୁର ଗୁଳିକାଣ୍ଡ ପରେ ବହୁସଂଖ୍ୟକ ସଂଗ୍ରାମୀ ମୋଗଲବନ୍ଦୀର ବାଡ଼ ଡେଇଁ ଗଡ଼ଜାତର ସୀମା ଭିତରକୁ ଆସିଥିଲେ । ଢେଙ୍କାନାଳ ରାଜ୍ୟରେ ପ୍ରଥମ ମୋଗଲ ବନ୍ଦୀ ସୈନିକ

ଥିଲେ ନବକୃଷ୍ଣ ଚୌଧୁରୀ । ଚୌଧୁରୀଙ୍କ ଅନୁଗାମୀ ଥିଲେ ଅନନ୍ତ ପଟ୍ଟନାୟକ, ଭଗବତୀ ଚରଣ ପାଣିଗ୍ରାହୀ, ଗୌରାଙ୍ଗ ଚନ୍ଦ୍ର ଦାସ, ମାଳତୀ ଦେବୀ ଚୌଧୁରୀ । ସେମାନେ ଢେଙ୍କାନାଳକୁ ଆପାତତଃ ଆପଣାର ଅନ୍ୟତମ ଘର ଭାବରେ ଗ୍ରହଣ କରି ନେଇଥିଲେ । ଅନନ୍ତ ପଟ୍ଟନାୟକ, ହରମୋହନ ପଟ୍ଟନାୟକ, ବୈଷ୍ଣବ ଚରଣ ପଟ୍ଟନାୟକଙ୍କ ପରି ନେତୃସ୍ଥାନୀୟ ସଂଗ୍ରାମୀମାନେ ରାଜାଙ୍କ କାରାଗାରକୁ ସତେ ଯେପରି ପଟ୍ଟା କରିନେଇଥିଲେ । ଗାଁ ଗାଁ, ଘର ଘର ବୁଲି ରାଜତନ୍ତ୍ରର ଅହଂକାରରେ ତ୍ରସ୍ତ ଲୋକମାନଙ୍କୁ ଆପଣାର ଅଧିକାର ସମ୍ପର୍କରେ ସଚେତନ କରାଉଥିଲେ । ପ୍ରଚାରପତ୍ର, ଖବରକାଗଜ, ଲିଥୋକରା 'ରଣଭେରୀ' ପତ୍ରିକା (୧୯୩୮) ବାଣ୍ଟୁଥିଲେ, ସଭାସମିତି କରୁଥିଲେ । ମୁକ୍ତି ପ୍ରତ୍ୟାଶୀ ସମୂହର ସଂକଳ୍ପ ସଫଳ ହୋଇଥିଲା; ଏବଂ ବାଜି ଥିଲା ସେହି ସଂକଳ୍ପର ସାକାରୀକରଣ, ଅନ୍ୟତମ ଶକ୍ତିଶାଳୀ ରସଦ । ପରବର୍ତ୍ତୀ କାଳରେ ନବକୃଷ୍ଣ ଚୌଧୁରୀ ଓ ମାଳତୀ ଦେବୀ ଚୌଧୁରୀ ଅନୁଗୋଳଠାରେ ବାଜିରାଉତ ଛାତ୍ରାବାସ (୧୯୪୮) ପ୍ରତିଷ୍ଠା କରିଥିଲେ ଏବଂ ଏହା ଥିଲା ବାଜିର ବୀରତ୍ୱ ସ୍ୱୀକୃତିର ଅନ୍ୟତମ ମଣିଷ ଗଢ଼ଣ ଆୟତନ ।

ମାତ୍ର ଏକଦା ଯେଉଁ ବାଜି ଗଣଚେତନାରେ ଏକ 'ଆହ୍ୱାନ', ସମାଜ ପରିବର୍ତ୍ତନ କ୍ଷେତ୍ରରେ ଏକ 'ନବୀନ ଅଙ୍କୁର' ଥିଲା, ବିପ୍ଳବର ଶୀତଳୀକରଣ ପରେ ତା'ର ବୀରତ୍ୱକୁ ସଂଶୟର ଗୁଳିରେ କ୍ଷତାକ୍ତକରିବା ଚରମ ବିଡ଼ମ୍ବନା ବ୍ୟତୀତ ଆଉ କ'ଣ ବା ହୋଇପାରେ ? ବାଜିର ଏ କରୁଣ ବର୍ତ୍ତମାନର କାରଣ ଭାବରେ ଆମେ ସତ୍ୟାନ୍ୱେଷୀ ଓ କଳ୍ପନାବିଳାସୀ ଉଭୟଙ୍କୁ ସମାନ ରୂପରେ ଦାୟୀ କରିପାରିବା ।

## ଛଅ

ସଚ୍ଚିଦାନନ୍ଦ, ଅନନ୍ତ ଚରଣ, କାଳିନ୍ଦୀଚରଣ, ମନମୋହନ, ରାଧାମୋହନ, ହରେକୃଷ୍ଣ ଆଦି ସମକାଳୀନ ସ୍ରଷ୍ଟା ବାଜି ସମ୍ପର୍କରେ ପ୍ରାୟ ଗୋଟିଏ କଥା ହିଁ କହିଛନ୍ତି । *ସେଦିନ ଅକ୍ଟୋବର ମାସ ଦଶ ତାରିଖ ରାତିରେ ସେ ଏକୁଟିଆ ଘାଟ ଡ଼ଙ୍ଗାରେ ଶୋଇପଡ଼ିଥିଲା । ସିପାହୀମାନେ ଆରପାରିକୁ ଯିବାଲାଗି ଡ଼ଙ୍ଗା ମାଗିଲେ । ସେ ମନା କଲା । ବନ୍ଧୁକର ଗୁଳି ଓ କୁନ୍ଦାର ମାଡ଼ରେ ତା କଅଁଳ ମଥା ସେମାନଙ୍କ ଅହଂକାରର ଉତ୍ତର ଦେଲା ।* ମାତ୍ର ପୋଲିସ୍ ଗୁଳିରେ ମରିବା ବ୍ୟତୀତ, ଅନ୍ୟ ସମସ୍ତ ବୃତ୍ତାନ୍ତ ଯେ ଅସତ୍ୟ, କଳ୍ପନା-ପ୍ରସୂତ; ଆପଣାର କଳ୍ପନାକୁ କୌଣସି କବି, କବିତା ରଚନା ଏବଂ ପରବର୍ତ୍ତୀ କାଳରେ ସ୍ୱୀକାର କରିନାହାନ୍ତି । ସେମାନେ ସମ୍ଭବତଃ ପାସୋରି ପକାଇଛନ୍ତି–ସେକାଳର 'ବାଜି ମରଣ' ସତ୍ୟକୁ ରାଜତନ୍ତ୍ର ପ୍ରତି ଏକ ଆହ୍ୱାନ, ବିପ୍ଳବର ରସଦରେ ରୂପାନ୍ତର କରିଦେବାପାଇଁ 'କଳ୍ପନା' ଥିଲା ଏକ ଆବଶ୍ୟକତା । ତାହା ଶତ ପ୍ରାଣରେ ସତ୍ୟର ପ୍ରତ୍ୟୟ ସୃଷ୍ଟିକରିଥିଲା । ତେଣୁ, ସମକାଳୀନ ସ୍ରଷ୍ଟାମାନଙ୍କ ବିଚାର (କାବ୍ୟିକ ସତ୍ୟ)କୁ ପାଦରେ ସ୍ୱୀକାର କରିବା ଆଦୌ ସତ୍ୟର ଅପଳାପ ନୁହେଁ, ବରଂ ସତ୍ୟପ୍ରତି ଶ୍ରଦ୍ଧାଞ୍ଜଳି ।

ମାତ୍ର ସଚେତନ ସ୍ରଷ୍ଟାମାନଙ୍କର ଅତି-ପୁଲକତା କିପରି ସେମାନଙ୍କ ବିଚାର ଓ ସୂକ୍ଷ୍ମ ଦୃଷ୍ଟିର ଦୁର୍ବଳତାକୁ ପ୍ରମାଣକରେ 'ବାଜିରାଉତ' ଖଣ୍ଡକାବ୍ୟରେ ପ୍ରକାଶିତ କବି ସଚ୍ଚି ରାଉତରାୟଙ୍କ ମୁଖବନ୍ଧ ତାହାର ପ୍ରମାଣପତ୍ର । ରାଉତରାୟଙ୍କ ପରି ଜଣେ ସ୍ରଷ୍ଟା, ଯିଏ ଆପଣାକୁ ପ୍ରଗତିବାଦୀ

ଚେତନାର କର୍ଣ୍ଣଧାର ବୋଲି ଦାବିକରନ୍ତି, ସେ ବାଜିରାଉତର ଜାତି ନିର୍ଣ୍ଣୟ ଉପରେ ଗୁରୁତ୍ୱ ଦେଇଛନ୍ତି । ତା' ପରିବାରର କଥା ମଧ୍ୟ କହିଛନ୍ତି । ୧୯୩୮ ମସିହାରେ ପ୍ରକାଶିତ କବିତାର ସୂଚନାରେ ସେ ତାକୁ '*ଏକ ଗରିବ ନାଉରୀ ଘରେ*' ଏବଂ ୧୯୪୩ ରେ ପ୍ରକାଶିତ ମୁଖବନ୍ଧରେ '*ଗରିବ ଖଣ୍ଡାୟତ ଘରେ ଜନ୍ମ*' ବୋଲି ଉଲ୍ଲେଖ କରିଛନ୍ତି । ତା'ର ବୁଢ଼ୀମା ଧାନକୁଟି ପେଟ ପୋଷେ, ସେ ଘାଟ ଜଗି ଚାଳ ଘରେ ଶୋଇଥିଲା, ଝଡ଼ବର୍ଷା ରାତି, ପୋଲିସ୍‌ର ବନ୍ଧୁକର କୁନ୍ଦାରେ ତା' ମଥା ଫାଟି ଯାଇଥିଲା ବୋଲି ଯାହା କହିଛନ୍ତି, ଏହାର କୌଣସି ସତ୍ୟତା ନାହିଁ । ସେଦିନ ନୀଳକଣ୍ଠପୁର ଓ ଭୁବନ ଅଞ୍ଚଳର ଲୋକେ ରାଉତରାୟଙ୍କ ଏହି ବର୍ଣ୍ଣନା ଶୁଣି ହସିଥିବେ ଏବଂ କବିତାରେ ଏମିତି ସବୁ ଲେଖା ଯାଇଥାଏ ଭାବି ନିରବ ରହିଥିବେ ।

ବଡ଼ବଡ଼ କବିମାନଙ୍କର କଳ୍ପନାଲୋକ, ଅନ୍ୟ କବିମାନଙ୍କୁ କିପରି ଅତିକଳ୍ପନାର ଅନ୍ଧାରରେ ବାୟା କରିଦିଏ, ତାହାର ଚମତ୍କାର ଉଦାହରଣ ଅଦ୍ୱୈତଚନ୍ଦ୍ର ରାଉତଙ୍କ ଏକ କବିତା *ଶହିଦ ବାଜି ରାଉତ* । ବାଜି ରାଉତ ସ୍ମୃତି ପରିଷଦ, ନୀଳକଣ୍ଠପୁର ପ୍ରକାଶିତ ଏହି ବହିରେ 'ବୀର ବାଜି'-ସେଇ ବାଳୁତ, ଗ୍ରାମରେ ଗଠିତ ବାନର ସେନା ଦଳର ନେତୃତ୍ୱ ନେଇଥିଲା, ତା'ର ବୀରତ୍ୱର ପ୍ରେମରେ କାଳେ ପଡ଼ିଥିଲା ରୂପଗୁଣରେ ଅନୁପମା ଚାନ୍ଦ ନାମକ ଏକ କିଶୋରୀ ଏବଂ ଘାଟ ଜଗିବାକୁ ଯିବା ପୂର୍ବରୁ ଶାସ୍ତ୍ରୀୟ ନାୟକ ପରି ଚାନ୍ଦଠାରୁ ସେ ଅନୁମତି ଭିକ୍ଷା କରିଥିଲା, ଆଦି କେତେ କଥା ଲେଖାଯାଇଛି ।[୨୦] ବାଜିକୁ ଅସାଧାରଣ ବୋଲି ପ୍ରମାଣ କରିବାପାଇଁ ଯେଉଁ ବିଚିତ୍ର ମାନସିକତା ୧୯୩୮ ମସିହାରେ ରାଉତରାୟଙ୍କ ଚେତନାରେ ଅଙ୍କୁରିତ ହୋଇଥିଲା, ଅଦ୍ୱୈତଙ୍କ କବିତାକୁ ତାହାର ପଲ୍ଲବନ-ପର୍ଯ୍ୟାୟ ବୋଲି ଆମେ କହିପାରିବା ।

ବାଜିର କଳ୍ପନାୟନ ଅପେକ୍ଷା ଅଧିକ ଭୟଙ୍କର ତା'ର କୁନି ଜୀବନର କରୁଣ ପରିଣତିକୁ ଅସ୍ୱୀକାର କରିବା । ବାଜି ବିରୋଧୀମାନେ, *ସେ ଘାଟ କୂଳରେ ନ ଥିଲା, କୋଉ ଗଛ ଆଢୁଆଳରେ ରହି ସିପାହୀ ଓ ବିପ୍ଳବୀମାନଙ୍କ ମଧ୍ୟରେ ଚାଲିଥିବା ଯୁଦ୍ଧକୁ ଉପଭୋଗ କରୁଥିବା ବେଳେ ଗୁଳିଟାଏ ଛିଟିକି ଆସି ତା ମଥାରେ ବାଜିଲା ବୋଲି* କହିଥା'ନ୍ତି । ଏପରିକି ସୁରେନ୍ଦ୍ର ମହାନ୍ତି ମଧ୍ୟ ଆପଣାର ଆତ୍ମଜୀବନୀ 'ପଥ ଓ ପୃଥିବୀ', ଗ୍ରନ୍ଥରେ ଏହାକୁ ଏକ 'ସାହିତ୍ୟିକ କଳ୍ପନା' ବୋଲି ପ୍ରକାଶ କରିଛନ୍ତି । ମହାନ୍ତିଙ୍କ ଭାଷାରେ

> "ମନେପଡୁଛି—ଗାଁ ଦାଣ୍ଡ ମଝିରେ ଗୋଟିଏ ଚାଳଘର । ବାଜି ରାଉତର ବୋଉ ସଙ୍ଗରେ ଦେଖା ହେଲା । ବାଜି ରାଉତର ଜଣେ ଭାଇକୁ ମଧ୍ୟ ସେଠାରେ ଦେଖିଲି । XX ମନେ ପଡୁଛି—ବସନ୍ତରେ ତା'ର ଗୋଟାଏ ଆଖି ଡ଼ୋଳା ନଷ୍ଟ ହୋଇ ଯାଇଛି । ବାଜିକୁ ପୋଲିସ୍ ଫଉଜ କିପରି କୋଉଠି ଗୁଳି ମାରିଲେ ପଚାରିବାରୁ ତା' ବୋଉ କହିଲେ— "ବାଜି ଘାଟ ଡ଼ଙ୍ଗାକୁ ଯାଇ ନ ଥିଲା କି ଡ଼ଙ୍ଗା ଦଉଡ଼ି ଅଟକାଇ ନ ଥିଲା । ଆମ ବାଡ଼ିରେ ପଣସ ଗଛ ମୂଳରେ ନଈ ଅତଡ଼ା ଉପରେ ଠିଆହୋଇ ଗାଁ ଲୋକେ ଡ଼ଙ୍ଗା ଦଉଡ଼ି ଟାଣି ଅଟକାଇ ରହିଥିବା ସେ ଦେଖୁଥିଲା । ବଢ଼ିଲା ନଈ । ସୁଅରେ ଡ଼ଙ୍ଗା ପଡୁଥାଏ, ଉଠୁଥାଏ । ପୋଲିସ ଫଉଜ ଗୁଳି କଲା ବେଳେ ଗୁଳିଟା ଛିଟିକି ଯାଇ ବାଜି ଦେହରେ ଲାଗିଗଲା । ବାଜି ସେଇଠି ଟଳି

ପଡ଼ିଲା । ମୁଁ ନଈ ଅତଡ଼ା ଉପରେ ସେହି ପଣସ ଗଛ ମୂଳକୁ ମଧ୍ୟ ଯାଇଥିଲି । ତେଣୁ ପୋଲିସ୍ ଫଉଜକୁ ପ୍ରତିରୋଧ କରିବାକୁ ଯାଇ ବାଜିରାଉତ ଯେ ଗୁଳି ଚୋଟରେ ଶହୀଦ ହୋଇ ଯାଇଛି—ଏହା ଏକ ସାହିତ୍ୟିକ କଳ୍ପନା ମାତ୍ର ।"[୨୧]

୧୯୮୬ ମସିହାରେ ମହାନ୍ତିଙ୍କ ଆତ୍ମଜୀବନୀ ପ୍ରକାଶପାଇଲା ପରେ ମାତ୍ର ସତର ଧାଡ଼ିର ତାଙ୍କ ମନ୍ତବ୍ୟକୁ କେନ୍ଦ୍ର କରି—ଓଡ଼ିଶାର ବାଜିବିଶ୍ୱାସୀମାନେ ତାଙ୍କ ଉପରେ ଷଣ୍ଢଆସୀ ଆକ୍ରମଣ କରିଥିଲେ । ସମାଜ, ପ୍ରଜାତନ୍ତ୍ର ଓ ସମ୍ବାଦ ଆଦି ସମ୍ବାଦପତ୍ର ପୃଷ୍ଠାରେ ମହାନ୍ତିଙ୍କୁ ରାଜତନ୍ତ୍ରର ଦଲାଲ ବା ଏଜେଣ୍ଟ ରୂପେ ଚିତ୍ରଣ କରାଯାଇଥିଲା । ତାଙ୍କ ବକ୍ତବ୍ୟକୁ ତୁଚ୍ଛା ମିଛି ପରିବର୍ତ୍ତେ, ଅବଶ୍ୟ, ଅର୍ଦ୍ଧସତ୍ୟ କୁହାଯାଇପାରେ । ମାତ୍ର ସତ୍ୟ ଓ ମିଥ୍ୟା ଅପେକ୍ଷା ଏ ଅର୍ଦ୍ଧସତ୍ୟ ଅଧିକ ବିପଦଜନକ । ରାଉତରାୟ କଟକରେ ରହି ସତ୍ୟ ସମ୍ପର୍କରେ କଳ୍ପନା କରିଥିଲେ । ମିଥ୍ୟାର ଲେପ ଦେଇଥିଲେ । ଅନ୍ୟ ପକ୍ଷରେ ମହାନ୍ତି, ବାଜିରାଉତକୁ ଖୋଜିବାକୁ ଯାଇ ନାହାନ୍ତି ନୀଳକଣ୍ଠପୁର ଗାଁକୁ । ରାଜତନ୍ତ୍ରର ପ୍ରଚାରକର ବେଶରେ ବୁଲୁବୁଲୁ ସେ ସେଠାରେ ପହଞ୍ଚି ଯାଇଛନ୍ତି । ତାଙ୍କ ସ୍ରଷ୍ଟାପ୍ରାଣ ସ୍ୱାଭାବିକ ରୀତିରେ ସତ୍ୟ-ସଚେତନ ହେବାକୁ ଆଗ୍ରହ ପ୍ରକାଶକରିଛି । ମାତ୍ର ଶଙ୍କର ପ୍ରତାପ ମହେନ୍ଦ୍ର ବାହାଦୂରଙ୍କ ପାଖ ଲୋକମାନଙ୍କ ହାତଧରି ସତ ଖୋଜିଯିବା ଯେ ଅବିଜ୍ଞତା—ଏ କଥା ସେ ସମ୍ଭବତଃ ବୁଝିପାରି ନାହାନ୍ତି । ତେଣୁ ସେ ମଧ୍ୟ ଭ୍ରମର ଶିକାର ହୋଇଛନ୍ତି ।

ବାଜି ରାଉତର ପରିବାର ସମ୍ପର୍କରେ ସଂକ୍ଷେପରେ ଏତିକି ମାତ୍ର କୁହାଯାଇପାରେ, ନୀଳକଣ୍ଠପୁରରେ ବାଜି ରାଉତର ଘର, ବ୍ରାହ୍ମଣୀ ନଈର ଅତଡ଼ା ଉପରେ । ଜାତିରେ ସେ ଚଷା, କେଉଟ କି ଖଣ୍ଡାୟତ ନୁହେଁ । ବାପା ତା'ର ହରି ରାଉତ ଓ ବୋଉ ରାଣୀ ରାଉତ । ସେମାନେ ଥିଲେ ଚାରି ଭାଇ ଓ ଦୁଇ ଭଉଣୀ । ତା'ର ଦୁଇ ଭାଇ ପିଲା ବେଳୁ ମରି ଯାଇଥିଲେ । ସେ ଥିଲା ସବା ସାନ । ଏବଂ, ତାହାର ହେତୁ ନ ହେଉଣୁ ବାପା ମଧ୍ୟ ଚାଲିଯାଇଥିଲେ । ତେଣୁ ପରିବାରରେ ସେମାନେ ଥିଲେ ବୋଉ, ଦୁଇ ଭଉଣୀ, ସେ ଓ ବଡ଼ଭାଇ ନଟ ରାଉତ । ବୋଉ ଓ ଭାଇ କାମ ଦାମ କରୁଥିଲେ । ସେ ଗାଈ ଜଗୁଥିଲା । ବ୍ରାହ୍ମଣୀର ଅତଡ଼ା ଉପରେ ଥିଲା ବୁଦୁବୁଦିଆ ଜଙ୍ଗଲ । କୂଳରେ ପାଳଧୁଆ ଗଛ ଓ ଘାଟ ପାଖରେ ବଡ଼ ବଡ଼ କଇଁଆ ଗଛ । ଗଛ ପାଖରେ ଚଉଦ ବା ପନ୍ଦର ପରିବାରର ଘର । ସେ ନଈ, ପାଣି, ଗଛ, ଡ଼ଙ୍ଗା, ଗାଈ ଓ ସାଙ୍ଗମାନଙ୍କ ସହ ଖେଳୁଥିଲା । ସେ ଯେଉଁ ଦିନ ପୋଲିସ ଗୁଳିର ଶିକାର ହେଲା, ତା' ପୂର୍ବଦିନ ରାତିରେ ଥିଲା ସେମାନଙ୍କ ଘାଟ ଜଗା ପାଳି । ଘାଟରେ କେହି ଜଣେ ଜଗୁ ନଥିଲା । ଦଳଟିଏ ଜଗୁଥିଲା । ପାହାନ୍ତାରେ ରଙ୍ଗିଆନାଳୀ ଘାଟ ପାଖରେ ପାଟିତୁଣ୍ଡ ଶୁଣି ଅନ୍ୟମାନଙ୍କ ସହିତ ସାମିଲ୍ ହେବାକୁ ତା' ଭାଇ ନଟ ପ୍ରମୁଖ ସେଠାକୁ ଚାଲିଯାଇଥିଲେ । ରଙ୍ଗିଆନାଳୀ କୂଳରୁ ସମସ୍ତେ ଗାଁ ଘାଟ—ପ୍ରଚଣ୍ଡପୁର ଘାଟ ପାଖକୁ ଫେରିଥିଲେ । ଘାଟରେ ପୋଲିସ୍ ଓ ବିପ୍ଳବୀମାନଙ୍କ ମଧ୍ୟରେ ବଚସା ଓ ଗୁଳିଚାଳନା । ସେଇ ଘାଟ ପାଖରେ ଗୁଳିଚୋଟରେ ବାଜି ସବୁଦିନପାଇଁ ଶୋଇପଡ଼ିଥିଲା । ସେତେବେଳକୁ ତା' ବଡ଼ଭାଇର ବୟସ ହୋଇଥିଲା ଏକୋଇଶ୍ ବା ବାଇଶ । ସେ ଜମାରୁ କଣା କି ବସନ୍ତ ମୁହାଁ ନ ଥିଲା । କାଳିଆ ଓ ଡେଙ୍ଗା ମଣିଷ । ବକଟେ ଭାଇକୁ ଘାଟ ଜଗାଇଦେଇ ଘରେ ଶୋଇ ନଥିଲା । ଘାଟ ଜଗିଥିଲା ।

ସେଦିନ ରାତିର ଆକାଶ ବି ଥିଲା ସଫା । ନା ଥିଲା ଝଡ଼, ନା ଥିଲା ବତାସ । ବାଜିରାଉତର ଘର ଏବେ ଆଉ ନୀଳକଣ୍ଠପୁରରେ ନାହିଁ । ବ୍ରାହ୍ମଣୀର ଅତଡ଼ା ତାଙ୍କ ଘରକୁ ଖାଇଗଲା । ଏହା ପ୍ରାୟ ପଇଁତିରିଶ ଚାଳିଶ ବର୍ଷ ତଳର କଥା । ଅତଡ଼ାଖିଆ ଘରର ମଣିଷମାନେ ଉଠିଗଲେ ଚାରିପାଞ୍ଚ କିଲୋମିଟର ଭିତରକୁ । ସେଠି ଗାଁ ବସେଇଲେ–ନାଁ ଦେଲେ 'ନୟା ନୀଳକଣ୍ଠପୁର' । ତାର ମା' ୧୯୬୦ ମସିହାରୁ ଏବଂ ବଡ଼ଭାଇ ଏଇ ୧୯୯୬ ମସିହା ଅଗଷ୍ଟ ମାସ ଛ' ତାରିଖରୁ ଚାଲିଗଲେଣି ।

## ସାତ

ବାଜି ରାଉତ ଚାଲିଗଲେଣି ୧୯୩୮ ମସିହା ଅକ୍ଟୋବର ମାସ ଏଗାର ତାରିଖର ସକାଳୁ ସକାଳୁ । ଆମେ ଆଜି ତାକୁ ମନେ ରଖିଛେ । ସେ ଚାଲିଯାଇଛି ବୋଲି କହିପାରୁନେ । ଅଛି ବୋଲି କହୁଛେ । ତା' ଗାଁରେ, ଢେଙ୍କାନାଳ ସହରର ମଝିରେ, ଆଉ କେଉଁଠି କେଉଁଠି ତା ପବିତ୍ର ଆତ୍ମା ଉଦ୍ଦେଶ୍ୟରେ ସ୍ମୃତିସ୍ତମ୍ଭ ତିଆରି କରିଛେ । ତା' ଅଳ୍ପକାଳର ଜୀବନକୁ ସାହିତ୍ୟ, ରାଜନୀତି ଓ ସମାଜ ବ୍ୟବସ୍ଥା ଭିତରକୁ ଆଣିଛେ । ତା' ନାଁରେ ମିଛ କହୁଛେ, ସତ ବି କହୁଛେ । କ୍ଷମତା ରାଜନୀତିରେ ତାକୁ ଗୋଟିକରି ଆମ ଇଚ୍ଛା ମତେ ଚଳାଉଛେ । ତା'ପରି ସଂଗ୍ରାମୀମାନଙ୍କ ଉପରକୁ ଗୁଳି କରିଥିବା ସିପାହୀମାନଙ୍କର ମଥାରେ ସ୍ୱାଧୀନତା ସଂଗ୍ରାମୀର ଶିରପା ବାନ୍ଧି ସରକାରୀ ଭତ୍ତା ବି ଦେଉଛେ । ତା'ପାଇଁ ସଭା ସମିତିରେ କେତେ ରୀତିରେ ଚିତ୍କାର କରୁଛେ । ଏ ସକଳର ମୂଳରେ ଏକ ଭୋଗବାଦୀ ସଭ୍ୟତାର କର୍ତ୍ତୃତ୍ୱ ଯେ ସକ୍ରିୟ, ଏହା ସୁସ୍ପଷ୍ଟ । ତେବେ ପ୍ରଶ୍ନ ଉଠେ, ବାଜିରାଉତ ଏତେ ଲୋକଙ୍କ ରଚନାରେ ବିଚିତ୍ର ବିଚିତ୍ର ରୂପରେ ଜନ୍ମ ନେଲା କାହିଁକି ?

ଆମେ ଜାଣୁ, ସମଗ୍ର ପୃଥିବୀ ସଂଘଟିତ କୌଣସି କୌଣସି ବିଶେଷ ଘଟଣା ଅଥବା ଲୋକପ୍ରିୟ ଗ୍ରନ୍ଥ (ମାଷ୍ଟର୍ ଟେକ୍ସଟ) ବହୁ ପରିବର୍ତ୍ତନର ଶିକାର ହୋଇଛି । ଏହାର କାରଣ, (କ) ପ୍ରଶାସକ, କବି, ଧର୍ମପ୍ରବର୍ତ୍ତକ/ପ୍ରଚାରକ, ଦାର୍ଶନିକ, ସଂସ୍କାରକଙ୍କ ଭାବାଦର୍ଶର ବିଜ୍ଞାପନ; (ଖ) ପ୍ରତିଭାବାନ କବିଙ୍କ ସର୍ଜନଶୀଳତାର ପ୍ରତିଷ୍ଠା, ଏବଂ, (ଗ) ଅତ୍ୟୁତ୍ସାହୀ ଲିପିକାରଙ୍କ କଳାବୋଧର ପ୍ରଜ୍ଞାପନଜନିତ ମାନସିକତା । ପୁନଶ୍ଚ ଘଟଣା/ଗ୍ରନ୍ଥ ପରିବର୍ତ୍ତନ ପ୍ରକ୍ରିୟା ଏହାର ସ୍ଥାନାନ୍ତର, ଭାଷାନ୍ତର ଓ କାଳାନ୍ତର କ୍ଷେତ୍ରରେ ଅଧିକ ଅହଂ/ସ୍ୱାର୍ଥ ସଂକ୍ରମିତ । ସୁଦୂର ଅତୀତରେ, ମୁଦ୍ରଣଯନ୍ତ୍ରର ଆବିଷ୍କାର ପୂର୍ବରୁ, ଲିପିକାରମାନଙ୍କ ଅଜ୍ଞତା ଅଥବା ପାଣ୍ଡିତ୍ୟ ଦ୍ୱାର ମୂଳଗ୍ରନ୍ଥ ଅଧିକତର ବିକୃତାୟିତ ହୋଇଛି । ଏବଂ ପରବର୍ତ୍ତୀ କାଳରେ ବିକୃତାୟିତ ଗ୍ରନ୍ଥଗୁଡ଼ିକ ମାଧ୍ୟମରେ ଏହାର ମୂଳରୂପ ଆବିଷ୍କରଣ/ ଶୁଦ୍ଧପାଠ ନିର୍ଣ୍ଣୟପାଇଁ ବିଦ୍ୱାନମାନେ ନିଜ ନିଜ ପ୍ରଜ୍ଞାକୁ ଖଟଣି କରିଛନ୍ତି । ମାତ୍ର ଗୁରୁତ୍ୱପୂର୍ଣ୍ଣ ପ୍ରସଙ୍ଗ, ମୂଳଗ୍ରନ୍ଥ ମଧ୍ୟ ସେମାନଙ୍କର ଅହଂଜ୍ୱାଳା ଦ୍ୱାରା କିଛି କମ୍ ଆହତ ହୋଇନାହିଁ । କୌଣସି ଏକ ଗ୍ରନ୍ଥର ଭିନ୍ନ ଭିନ୍ନ ବିଶେଷଜ୍ଞକୃତ ଶୁଦ୍ଧ ପାଠଗୁଡ଼ିକୁ ପଢ଼ିଲେ, ତାହା ସ୍ପଷ୍ଟ ହୋଇଯାଏ । ଆଧୁନିକ କାଳରେ ଲେଖକମାନେ ଆପଣା ଗ୍ରନ୍ଥର ବିଭିନ୍ନ ସଂସ୍କରଣରେ ମୂଳପ୍ରକାଶିତ ପାଠର ପରିବର୍ତ୍ତନ କରୁଥିବାର ବହୁ ଉଦାହରଣ ରହିଛି । ପୃଥିବୀର ତିନିଖଣ୍ଡ ଆଧୁନିକ କ୍ଲାସିକ୍ ଟି. ଏସ୍. ଏଲିଅଟଙ୍କ ଦି ଓଏଷ୍ଟ ଲ୍ୟାଣ୍ଡ, ଶ୍ରୀଅରବିନ୍ଦଙ୍କ ସାବିତ୍ରୀ ଏବଂ ହ୍ୱିଟ୍‌ମ୍ୟାନ୍‌ଙ୍କ ଲିଭସ୍ ଅବ୍ ଦି ଗ୍ରାସ୍ ଏହି ବିଚାରାଦର୍ଶର ଜ୍ୱଳନ୍ତ ଉଦାହରଣ । ସଚ୍ଚି ରାଉତରାୟଙ୍କର ପଚସ୍ତରୀ ଧାଡ଼ି ବିଶିଷ୍ଟ କବିତା ପ୍ରାୟ ଏକହଜାର ଧାଡ଼ିର

ପରିଣତ ହେବା ଏହି ଦୃଷ୍ଟିରୁ ଅପ୍ରୀତିକର ଅଥବା ଅସ୍ୱାଭାବିକ ନୁହେଁ । ମାତ୍ର ଏକ ସତ୍ୟ ଘଟଣାର ପଲ୍ଲବନା/କଳ୍ପନାୟନ କେତେ ମାତ୍ରାରେ ପ୍ରୀତିପ୍ରଦ, ତାହା ବିଚାର୍ଯ୍ୟ ।

ଏହି ପ୍ରସଙ୍ଗରେ ଏତିକି କୁହାଯାଇପାରେ ଯେ, ବାଜି ରାଉତର ଜୀବନର ପରିଣତିକୁ ଆମେ ସ୍ୱୀକାର କରିବା । ତା'ର ଜାତି, ବୟସ, କାର୍ଯ୍ୟକୁ ଆଳକରି କୋଳାହଳ କରିବା ନାହିଁ । ସେ ସେଇ ବୟସରେ ଏକ ପ୍ରତିବାଦକାରୀ ସମୂହଭିତରେ ସାମିଲ୍ ହୋଇଥିଲା । ତେଣୁ ରାଜକୀୟ ଅହଂକାରର ଶିକାର ହେଲା । ସେ ଏକ ଆହ୍ୱାନ, ଏକ ପ୍ରତୀକ, ଏକ ଚେତନା; ତେଣୁ ସତ୍ୟ, ଅମୃତ ଓ ଅମୂର୍ତ୍ତ । ମାତ୍ର, ତା ଜୀବନ ଓ ଜାତିର ଇତିହାସକୁ ବିକୃତ କରିବା ନାହିଁ । ନୂଆ ଇତିହାସ ଲେଖିବା । ଏବଂ, ତାହା ଏପରି ଏକ ଇତିହାସ, ଯାହା କଳ୍ପିତ ଇତିହାସଠାରୁ ଅଧିକ ଜୀବନ୍ତ ଲାଗିବ, ଆମକୁ ଆତ୍ମସମୀକ୍ଷା ପାଇଁ ସୁଯୋଗ ଦେବ । ବାଜିକୁ ଅ-ବୀର ବୋଲି କହିବ ନାହିଁ । ଅବିର କହିବ ।



## ନୋଟ୍ ଓ ଆକର ସୂଚୀ


୧. ଧଳ, ବ୍ରଜକିଶୋର (୧୯୯୧) : ଭୁଲିବୁ ନାହିଁ, ଭୁବନେଶ୍ୱର, ବୁକ୍‌ଲ୍ୟାଣ୍ଡ ଇଣ୍ଟରନ୍ୟାସନାଲ, ପୃ.୨୦-୩୦, ୪୦-୫୨ ।

୨. ତଥ୍ୟଦାତା : ହରମୋହନ ପଟ୍ଟନାୟକ ଓ ବୈଷ୍ଣବ ଚରଣ ପଟ୍ଟନାୟକ, ଢେଙ୍କାନାଳ, ସାକ୍ଷାତକାର ।

୩. ନମ୍ବୁଦ୍ରୀପଦ, ଇ.ଏମ୍.ଏସ୍ (୧୯୯୩): ଏ ହିଷ୍ଟ୍ରି ଅଫ୍ ଇଣ୍ଡିଆନ୍ ଫ୍ରିଡ଼ମ୍ ଷ୍ଟ୍ରଗଲ୍, ତ୍ରିବେନ୍ଦ୍ରମ୍, ସୋସିଆଲ୍ ସାଇନ୍‌ଟିଷ୍ଟସ୍ ପ୍ରେସ୍, ପୃ.୧୭୭-୧୮୪ ।

୪. କପିଲ୍ କୁମାର (୧୯୮୪): ପିଜାଣ୍ଟ ଇନ୍ ରିଭୋଲ୍ଟ, ନୂଆଦିଲ୍ଲୀ, ମନୋହର, ପୃ. ୧୨୩-୬୦

ରାଓ, ଏମ୍.ଏସ୍.ଏ. (୧୯୮୪): ସୋସିଆଲ୍ ମୁଭ୍‌ମେଣ୍ଟ ଇନ୍ ଇଣ୍ଡିଆ, ନୂଆଦିଲ୍ଲୀ, ମନୋହର ।

ରାମସେ, ଏଲ୍.ଇ.ବି. (୧୯୮୨): ଫିଉଡ଼େଟୋରି ଷ୍ଟେଟ୍‌ସ୍ ଅଫ୍ ଓରିସା, କାଲକାଟା, ଫିରମା, କେ.ଏଲ୍.ଏମ୍. ପ୍ରା. ଲିଃ ।

ସହସ୍ରବୁଧେ, ସୁନିଲ୍ (୧୯୮୮): ଦି ପିଜାଣ୍ଟ ମୁଭ୍‌ମେଣ୍ଟ ଟୁଡ଼େ, ନୂଆଦିଲ୍ଲୀ, ଆଶିଷ ପବ୍ଲିଶିଂ ହାଉସ୍ ।

୫. ନେହରୁ, ଜବାହରଲାଲ : ଆନ୍ ଅଟୋବାୟୋଗ୍ରାଫି, ନୂଆଦିଲ୍ଲୀ: ଅକ୍ସଫୋର୍ଡ୍, ପୃ୫୬-୬୨ ।

୬. ମହାନ୍ତି, ଗୋବିନ୍ଦ ଚନ୍ଦ୍ର (୧୯୯୭): ଢେଙ୍କାନାଳ ଗଣ ବିଦ୍ରୋହ, କଟକ, ନବଯୁଗ ଗ୍ରନ୍ଥାଳୟ, ପୃ. ୫୦-୫୯ ।

୭. ରଥ, ବିଜୟ କୁମାର (୧୯୮୯): ପ୍ରଜାମଣ୍ଡଳ ମୁଭ୍‌ମେଣ୍ଟ ଇନ୍ ଓଡ଼ିଶା, ଉତ୍କଳ ପ୍ରସଙ୍ଗ, ଅଗଷ୍ଟ, ପୃ.୧୨୩ ।

କୃଷକ/୧.୧୦.୧୯୩୮

୮. କୃଷକ/୩୦ ଜୁଲାଇ, ୧ ସେପ୍ଟେମ୍ବର, ୧୦ ସେପ୍ଟେମ୍ବର, ୨୪ ସେପ୍ଟେମ୍ବର ୧୯୩୮ ସଂଖ୍ୟା ବିଶେଷ ଦ୍ରଷ୍ଟବ୍ୟ ।

୯. କୃଷକ ତା ୧୭.୮.୩୮

ଏଥିରେ ପ୍ରକାଶିତ ସମ୍ବାଦ ଏହିପରି–"ଚିରସ୍ଥାୟୀ ମାହାଲ ଧ୍ୱଂସ ହେଉ" "ଏକଲକ୍ଷ ପାଇକ ତିଆରି ହେବେ । ଗଡ଼ଜାତ ଓ ମୋଗଲବନ୍ଦୀର ପ୍ରଜା ଏକାଠି ହୋଇଛନ୍ତି ।" ସମ୍ପାଦକୀୟରେ ଲେଖାଯାଇଛି–"ଢେଙ୍କାନାଳ ଜାଗରଣ", "ଜଣେ ଲୋକର ଖାସ୍ ଖେୟାଲ୍ ଦ୍ୱାରା ଗୋଟିଏ ରାଜ୍ୟର ଶାସନ" । ଏଥିରେ କଣ୍ଡୁ ପୃଷ୍ଟି (ସୋଗରପଶି), ମୋହନ ସାହୁ (ମାଣ୍ଡବାସାହି), ଲୋଳେଇ ସାହୁ (ତେଙ୍ଗବଗେଇ) ଆଦି ଆଠଜଣଙ୍କ ଫଟୋ ଏବଂ 'ମାରୁ ସେ ଯେତେ ଗୁଳି' ଶୀର୍ଷକ ଚଉଦ ପଦ ବିଶିଷ୍ଟ କବିତା ମଧ୍ୟ ପ୍ରକାଶ ପାଇଛି । କବିତାର ପ୍ରଥମ ଓ ଶେଷ ପଦ ଏହିପରି–

ମାର୍ ତୁ ଯେତେ ଗୁଳି
ମରିବୁ ପଛେ ଡରିବୁ ନାହିଁ, ଯାଆନା ଏହା ଭୁଲି
ମାରୁ ସେ ଯେତେ ଗୁଳି
ହୁଙ୍କାପିଟା ଶାସନ ଆମେ, ଗୋଡ଼ରେ ଦେବୁ ଚୂରି ।

ଏବଂ ଅହିଂସା ସେମାନଙ୍କୁ ରକ୍ଷା କରିବ ନାହିଁ ।

କୃଷକ, ୧୫ ଅକ୍ଟୋବର, ୧୯୩୮ ।

୧୦. ବିଶେଷ ଦ୍ରଷ୍ଟବ୍ୟ: ପବିତ୍ର ମୋହନ ପ୍ରଧାନଙ୍କ ଆତ୍ମଜୀବନୀ: ମୁକ୍ତିପଥେ ସୈନିକ ଏବଂ କୃଷକ, ୨୪ ସେପ୍ଟେମ୍ବର ୧୯୩୮ ।

୧୧. ସହକାର, ୧୯ଶ ଭାଗ, ନବମ ସଂଖ୍ୟା, ୧୩୩୬ ସାଲ ପୃଷ୍ଠା ୮୪୦-୪୧ ।

୧୨. ରାଉତରାୟ, ସଚ୍ଚି : ଦି ବୋଟ୍‌ମ୍ୟାନ୍ ବୟ ଆଣ୍ଡ ଅଦର ପୋଏମସ୍ (ପ୍ରଥମ ଓ ପରିବର୍ଦ୍ଧିତ ସଂ), ସମବାୟ ପବ୍ଲିଶର୍ସ, ନଂ୩୩/୨ଶଶିଭୂଷଣ ଦେ ଷ୍ଟ୍ରୀଟ୍, ପ୍ରବାସୀ ପ୍ରେସ୍, କଲିକତା-୯ ।

୧୩. ଚକ୍ରବର୍ତ୍ତୀ, ବସୁଧା (୧୯୯୫): ସଚ୍ଚି ରାଉତରାୟ: ଏ ପଏଟ୍ ଅଫ୍ ଦି ପିପଲ୍ ।

୧୪. (କ) କୃଷକ, ୧୫ ଅକ୍ଟୋବର, ୧୯୩୮ ସଂଖ୍ୟାର ମୁଖପୃଷ୍ଠାରେ ଏକ ଯୁଦ୍ଧର ଫଟୋ ରହିଛି । ତା' ତଳେ ଲେଖାଯାଇଛି, ଲକ୍ଷ୍ମଣ ମଳିକ, ନଟ ମଳିକ, ରଘୁ ନାଏକ, ଗୁରି ନାଏକ ଓ ହୁରୁଷୀ ପ୍ରଧାନ ।

ବାଜି ରାଉତ ୧୨ ବର୍ଷର ପିଲା । କିନ୍ତୁ ତା' ମନରେ ଅସୀମ ଦମ୍ଭ ଓ ଛାତିରେ ସାହାସ ପୂରି ରହିଥିଲା । ସେ ରାତିରେ ଡଙ୍ଗା ଜଗି ଶୋଇଥିଲା । ପୁଲିସ ତାକୁ ସଙ୍ଗିନ ମୂନ ଦେଖାଇ ଡଙ୍ଗା ଦେବାକୁ କହିଲା । ସେ ସେଥିରେ ମଙ୍ଗିଲା ନାହିଁ । ଏତିକି ବେଳେ ବୀର ହୁରୁଷୀ ପଧାନ ଆସି ଡଙ୍ଗାର ଦଉଡ଼ି ବନ୍ଧା ହୋଇଥିବା କୀଳା ଧରି କହିଲା, "ଏ ଆମ ଡଙ୍ଗା, ଆପଣଙ୍କୁ ନେହୁରା ହୋଇ କହୁଛୁ, ଏ ଡଙ୍ଗା ଦେବାକୁ ଆମ ଭାଇମାନଙ୍କର ଆଦେଶ ନାହିଁ । ଘାଟଡଙ୍ଗା ଅଛି, ଆପଣ ସେଥିରେ ଯାଆନ୍ତୁ । ଏତିକିରେ ନୃଶଂସ ପୁଲିସ ତା' ଡାହାଣ ହାତରେ ସଙ୍ଗିନ ଭୁଷି ଦେଲା । ସେ ବାଁ ହାତରେ କୀଳା ଧରିପକାଇ କହିଲା, ମାରିପକା ପଛେ ମୁଁ ଛାଡିବି ନାହିଁ । ପୁଲିସମାନେ ଡଙ୍ଗା ଉପରକୁ ଉଠିଯାଇ ଦଉଡ଼ିଟାକୁ କାଟି ଦେଇ ଡଙ୍ଗାରୁ ଗୁଳିକରି ହୁରୁଷୀ ପଧାନ ଓ ବାଜିରାଉତକୁ ମାରିଦେଲେ । ହୁରୁଷୀ ପଧାନ ପ୍ରଜାମଣ୍ଡଳର ଜଣେ ନିର୍ଭୀକ ସାହସୀ କର୍ମୀ ଥିଲେ ।"

ସେହି ସଂଖ୍ୟାର ସମ୍ପାଦକୀୟରେ ଢ଼େଙ୍କାନାଳ ଲଢ଼େଇର ନୂଆ ପର୍ବ ଏବଂ ଅନ୍ୟ ଏକ ସମ୍ବାଦରେ ଲେଖା ଅଛି, "xx ନାଉରୀ ଦୁଇ ଜଣ ସେମାନଙ୍କ ନାଆ ଦଉଡ଼ି ଟାଣି ଧରି ନାହା ଦେବାକୁ ମନା କଲେ । xx ଲୋକଙ୍କୁ ସାହାଯ୍ୟ କରିବାକୁ ଅନୁରୋଧ କଲେ । ମାତ୍ର ଲୋକେ କିଛି ନକରି କେବଳ କାବା ହୋଇ ଠିଆ ହୋଇଥାଆନ୍ତି । ଉପରେ ପୁଲିସବାଲା ଛୁରୀରେ ଦଉଡ଼ିକୁ କାଟିଦେଇ ନାହା ଛାଡ଼ିଦେଲେ । ନାହା କୂଳରୁ ୧୦/୧୨ ହାତ ପାଣି ଭିତରକୁ ଚାଲିଯିବା ପରେ, ପୁଲିସବାଲାମାନେ ଅନ୍ଧାରରେ ଗୁଳି ଫାଏର କଲେ । ଲୋକଙ୍କୁ ପଳେଇ ଯିବାକୁ ମଧ୍ୟ କୌଣସି ପ୍ରକାରେ ସୁବିଧା ଦିଆଯାଇ ନଥିଲା ।

(ଖ) ତା ୧୬.୧୦.୩୮, ଅମୃତ ବଜାର ପତ୍ରିକା ମଧ୍ୟ ଏହି ସମ୍ବାଦ ପରିବେଷଣ କରିଥିଲା ।

(ଗ) ନବୀନର ସମ୍ପାଦକ କୃପାସିନ୍ଧୁ ଜଗଦେବ ସମ୍ପାଦକୀୟ ମନ୍ତବ୍ୟ ଏହି ପ୍ରସଙ୍ଗର ତାତ୍ପର୍ଯ୍ୟପୂର୍ଣ୍ଣ– "ଗଡ଼ଜାତ ଆନ୍ଦୋଳନ କଂଗ୍ରେସ ଚଳାଉ ନାହିଁ । କଂଗ୍ରେସର ଆନ୍ଦୋଳନ ଦେଖି ଗଡ଼ଜାତବାସୀ ଆନ୍ଦୋଳନ କରିଥାଇ ପାରନ୍ତି । xxx ତେବେ ଉତ୍ପୀଡ଼ନରୁ ମୁକ୍ତି ପାଇଁ ଗଡ଼ଜାତବାସୀଙ୍କର ସତ୍ୟ ଓ ଅହିଂସା ଆନ୍ଦୋଳନରେ କଂଗ୍ରେସର ପୂର୍ଣ୍ଣ ସହାନୁଭୂତି ଅଛି । xxx ଆବଶ୍ୟକ ହେଲେ କଂଗ୍ରେସ ତା'ର ନୀତି ବଦଳାଇପାରେ । xxx ପ୍ରଜାମାନଙ୍କ ପାଇଁ ରାଜା, ଏକଥା ରାଜାମାନେ ବୁଝିବା ଆବଶ୍ୟକ ।" "ଢେଙ୍କାନାଳର ଲୋମହର୍ଷଣକାରୀ ତାଣ୍ଡବଲୀଳା xxx ସ୍ୱୈରୀରାଜ ବା ଯଥେଚ୍ଛାଚାରୀ ଶାସନ ରାଜ୍ୟର ବିଶେଷ ଅନ୍ୟାୟ କଳା । xxx ଭାରତବର୍ଷରେ କେବେହେଲେ ଯଥେଚ୍ଛାଚାରୀ ଶାସନ ତିଷ୍ଠି ନାହିଁ" ନବୀନ ୧ ନଭେମ୍ବର, ୧୯୩୮ ।

୧୫. (କ) ଗଡ଼ନାୟକ ରାଧାମୋହନ (୧୯୬୫): ଉତ୍କଳିକା, ଗଡ଼ନାୟକ ଗ୍ରନ୍ଥାବଳୀ, କଟକ: ଗ୍ରନ୍ଥମନ୍ଦିର ।

(ଖ) ନାୟକ ନଟବର (୧୯୮୨): ଶହୀଦ ବାଜିରାଉତ, ଭୁବନ, ନୂଆବଜାର ।

୧୬. କୃଷକ, ୨୨ ଅକ୍ଟୋବର, ୧୯୩୮

ଏହି କବିତାର ଶୀର୍ଷକ ଥିଲା 'ଦୁଇଟି କବିତା'

ପ୍ରଥମ 'ଅମର ଶହୀଦ' ଓ ଦ୍ୱିତୀୟ 'ବ୍ରଜବାଦାଲ'

'ବ୍ରଜବାଦଲ'ର ପ୍ରଥମ ଦୁଇଟି ଧାଡ଼ି:

ଏକ ଗୁଳି ଚୋଟେ ମହାତରୁ ପରି ଶେଇଗଲେ ସାତଲୋକ
ପୋଛ ତୋର ଅଶ୍ରୁ, ପୋଛ ତୋର ଲୁହ, କର ନାହିଁ ଭାଇ ଶୋକ ।

୧୭. ପାଣିଗ୍ରାହୀ, କାଳିନ୍ଦୀଚରଣ (୧୯୭୩): ଅଙ୍ଗେ ଯାହା ନିଭେଇଛି, କଟକ, ଷ୍ଟୁଡ଼େଣ୍ଟସ୍ ଷ୍ଟୋର, ପୃ.୪୫୦-୪୮୦ ।

୧୮. (କ) ପଟ୍ଟନାୟକ ଅନନ୍ତ (୧୯୮୩): ସୂତ୍ରଟିଏ ସୁକୃତିର, କଟକ, ନବଯୁଗ ଗ୍ରନ୍ଥାଳୟ, ପୃ.୧୦୦-୧୨ ।

(ଖ) ବାଜି ରାଉତ : ଢେଙ୍କାନାଳ ପ୍ରଜା ଆନ୍ଦୋଳନ ପ୍ରଖର ହୋଇଥାଏ । ବହୁ ନିରୀହ, ବୁଭୁକ୍ଷୁ, ନିଷ୍ପେଷିତ ବ୍ୟକ୍ତି ଗୁଳି ଚୋଟରେ ହତ ଓ ଆହତ ହୋଇଥାନ୍ତି । ୧୯୩୮ ସାଲ ଡିସେମ୍ବର ତା ୨ ରିଖ ମୋଗଲ ବନ୍ଦୀରୁ ପ୍ରଥମ ସତ୍ୟାଗ୍ରହୀ ସେନା ଚାଲିଲେ । ଢେଙ୍କାନାଳ ସୀମାରେ ଥିବା ଗୋଟିଏ କ୍ଷୁଦ୍ର ଗ୍ରାମରେ ଦଳେ ସତ୍ୟାଗ୍ରହୀ ବାହିନୀକୁ ବିଦାୟ ଦେବାଲାଗି ଗୋଟିଏ ସଭା ହୋଇଥିଲା । ସେଠାକୁ ଢ଼େଙ୍କାନାଳର ମୃତ ଶହୀଦମାନଙ୍କ ମା', ଭଉଣୀ ଓ ବନ୍ଧୁବାନ୍ଧବମାନେ ଆସିଥାଆନ୍ତି । ସେମାନନଙ୍କ ଭିତରେ ନବଯୁଗର ଅଭିମନ୍ୟୁ ବୀର ଶିଶୁ ବାଜିରାଉତର ମା' ବି ଥାଆନ୍ତି । ତାଙ୍କ ସହିତ ଲେଖକର ଆଳାପ ହୋଇଥିଲା । ସେ ରାତିର ଘଟଣା–ସେହି ବିପୁଳ ଉତ୍ସାହ ଉନ୍ମାଦନା ତଳେ କରୁଣତାର ଗଭୀର ଛାୟା ଲେଖକର ମନକୁ ଆଚ୍ଛନ୍ନ କରିଥାଏ । ତାହାର କିଛି ଦିନ ପରେ ଗିରଫ ହୋଇ ଢ଼େଙ୍କାନାଳର ମଡ଼ି ଜେଲ୍‌ରେ ବନ୍ଦୀ ଅବସ୍ଥାରେ ଥିବାବେଳେ ଲେଖକ ସେହି ପୁରୁଣା ସ୍ମୃତିର ଅବଲମ୍ବନରେ ଏହି କବିତାଟି ଲେଖିଥିଲା ।)

ମଉଳିଲା ଖରା, ଫେରିଲେଣି ସବୁ ଲୋକେ
କାହିଁ ଅବା କିଏ ରାୟ କରନ୍ତି ଥୋକେ ।
ପଉଷ ହିମାଳ କଲିଜା ଥରାଇ ବହେ
ପାଷାଣର ଶିରେ ବରଫର ସମ ଇଏ ।
ତୋରା ଜହ୍ନଟିଏ ଖେଳାଇ କିରଣ ଜାଳ
ବିଷାଦବିନାଶେ ମେଲିଛି ସ୍ୱପନମାଳ ।

ରାତ୍ରୀ ପାହିଲେ ବାଜିବ ସମର ଭେରୀ
ସୈନିକ ଚାହେଁ ପଛାତେ ଟିକେ ଫେରି
ଛିନ୍ନ ବସନ ମଳିନ ଆନନ ତୋଳି
ଅସୀମ କାଳର ଆକୁଳ ଆକୁତି ଗୋଳି
ଅତି ସକରୁଣ ସ୍ୱରେ

କହିଲା କେ ନାରୀ ଥରାଇ ନୟନ ଜଳେ ।

ତମେ ତ ଚାଲିବ ଗଲା କାଲି ଯେଉଁ ବାଟେ
ଭିଡ଼ିବ ତରୀଟି ଭିଡ଼ିଲା ସେ କେଉଁ ଘାଟେ
ଶୁଣିବତ କଥା ପାଗଳ ହୋଇଛ ପରା
କାହିଁକି ମରୁଛ, କାହିଁକି ସେ ଅବା ମଲା ?
କୋଳ ପୁଅ ମୋର କୋଳରେ ଥାଆନ୍ତା ଶୋଇ
ତମଲାଗି ସିନା ବସିଲି ତାହାକୁ ଖୋଇ
ରାଜ୍ୟଯାକର ପରଜା ହୋଇବେ ସୁଖୀ
ସେଥିଲାଗି ସିନା ହେଲି ମୁଁ ଲୋତକମୁଖୀ ।

ସେଥିଲାଗି ସିନା ଚଳିଲା ଟୋକାଟା ଢ଼ଳି
ଅକାଳେ ଲୋଟିଲା ଦରଫୁଟା ଫୁଲ କଳି
ଦୁଃଖ ନାହିଁ ମୋର, ଦୁଃଖ ଖାଲି ଲାଗେ ମନେ
ସତେ କି ସକଳେ ସୁଖୀ ହେବେ କେଉଁ କ୍ଷଣେ ।
ଚମକିଲା ଆଖି ରକ୍ତ ଉଠିଲା ଥରି
ବାଷ୍ପ ଆକୁଳ କଣ୍ଠ ଧରିଲା ଜଡ଼ି
ପାରିଲୁନି କିଛି କହି
ବୁଝିଲୁ କିଏରେ କଥା କହେ ପାଶେ ଯାଇଁ

ପରଜାଙ୍କ ପାଇଁ ଗଲା ଯାଉ ସିଏ ଦୂରେ
ଭିଡୁ ପଛେ ନାଆ ମରଣ ସାଗର କୂଳେ
ପରାଣ ଯାଉନି ଭୋକ ଆତୁରତା ନେଇ
ତେସନେ ଆଜି ତ ଯନ୍ତ୍ରଣା ଯାଏ ଦେଇ
ସତେ କି ଫେରିବ ଦୁଃଖ
ସତେ କି ଫୁଟିବ ଉଆଁସ କଟାଇ
କଅଁଳ ସୂରୁଜ ମୁଖ ।

ସାନ୍ତ୍ୱନା ଦେବୁ ସାନ୍ତ୍ୱନା ଦେବୁ କା'ରେ,
ଯେ ଆଜି, ଓଲଟି ମୁକ୍ତିର ଦୀପ ଜାଳେ
ଯେ ନାରୀ ରଚିଲା ବୁକୁର ରୁଧିର ଢ଼ାଳି
ଶିଶୁ ସେନାପତି ଶିରେ ଜୟଟିକା ମାରି
ସାନ୍ତ୍ୱନା ଦେବ କା'ରେ ?
ଅନ୍ତରେ ଆମ ଭରିଲା ନିମିଷେ
ମୁକ୍ତିର ଉପଚାରେ
ନୁଆଁଇଁ ଆକୁଳେ ମଥା

ନିରବ ରହିଲୁ ସୈନିକ ସବୁ
ମୁଖରିଲା ନିରବତା ।

ସେନାପତି ପଦେ ବରଣ କଲା କି କେହି
ପୁଷ୍ପ ମାଳିକା ଗଳ ଦେଶେ ତା'ର ଦେଇ
ଶଙ୍ଖ ଶବଦ ନ ଶୁଭିଲା ତା'ର ପଥେ
ଜୟଧ୍ୱନିରୋଳ ନ ଶୁଭିଲା ଅବିରତେ ।
ବାଳୁତ ବୀର ସେ ହସି
ଝଡ଼ର ଆବେଗେ ରଣାଙ୍ଗନେ ଗଲା ପଶି ।

ଭଗ୍ନ ପାଇକ ପରାଣେ ଆସିଲା ବଳ
ଡାକିଲା ଉଚ୍ଚେ ଡୋଳରେ ନିଷାଣ ଡୋଳ
ମରିବାକୁ କିବା ଭୟ ?
ମରି ପରା ତୋତେ ଶତ୍ରୁବାହିନୀ କରିବାକୁ ହେବ ଜୟ ।
ସେହି ଡାକ ଆଜି ବାଜିଲା ଶ୍ରବଣ ଦେଶେ
ସଜଳ ନୟନେ ଭାସିଲା ଜନନୀ ଶେଷେ
"ଯାଅରେ ପାଇକ ଯାଅ,
ସେନାପତି ତୁମ ସମ୍ମୁଖେ ଏଇ କୀରତିଟି ତାର ଗାଅ ।"

ଶେଯପାତି କାହିଁ ଦୂର କାଠଯୋଡ଼ି କୂଳେ
ଶୋଇଛି ପୁଲକେ ବାଲୁକା ଧୂଳିର ତୁଳେ
ବହୁ ଦୂରେ ଆମ ନୟନେ ଝଳିଲା ଛବି
ତିମିର କଟାଇ ଜଳିଲା ଜୀବନ ରବି
ନାଚିଲା ଶୋଣିତ ଧାରା
ମରି ଆଜି ଆମେ ସମାଇ ଦେବୁରେ
ମହୀରୁ ମରଣ ଜ୍ୱାଳା ।*

* କଟକ କାଠଯୋଡ଼ି କୂଳରେ ଖାନନଗର ଶ୍ମଶାନରେ ୧୨ ବର୍ଷର ବାଳକ ବାଜି ରାଉତ ଓ ଅନ୍ୟାନ୍ୟ ମୃତ ସହୀଦଙ୍କର ଶବ ସଂସ୍କାର ହୋଇଥିଲା ।

ସହକାର, ଏକବିଂଶ ଭାଗ, ଦ୍ୱିତୀୟ ସଂଖ୍ୟା, ପୃ. ୨୪୫-୨୪୭

୧୯. କୃଷକ: ୨୯ ଅକ୍ଟୋବର ୧୯୩୮ ।

୨୦. ମହାନ୍ତି, ଅଦ୍ୱୈତ ଚନ୍ଦ୍ର (୧୯୮୭) : ଶହୀଦ ବାଜି ରାଉତ, ଭୁବନ, ବାଜି ରାଉତ ସ୍ମୃତି ପରିଷଦ ।

୨୧. ମହାନ୍ତି ସୁରେନ୍ଦ୍ର (୧୯୮୬) : ପଥ ଓ ପୃଥିବୀ, ଭୁବନେଶ୍ୱର, ଇଷ୍ଟର୍ଣ୍ଣ ମିଡ଼ିଆ, ପୃ. ୨୪୪ ।





ଗୌରାଙ୍ଗ ଚରଣ ଦାଶ ଆମ ସମୟର ଜଣେ କୃତବିଦ୍ୟ ସମାଲୋଚକ ଓ ମୌଳିକ ଚିନ୍ତକ । ଶ୍ରୀଯୁକ୍ତ ଦାଶ ନିଜର ବିଚକ୍ଷଣ ବିଶ୍ଳେଷଣାତ୍ମକ ଦୃଷ୍ଟିଭଙ୍ଗୀ , ବଳିଷ୍ଠ ଯୁକ୍ତିପ୍ରବଣତା ଓ ସତ୍ୟ ସଂଧାନର ଆନ୍ତରିକତା ପାଇଁ ପରିଚିତ ।

ସାହିତ୍ୟ ଆଲୋଚନା ବ୍ୟତୀତ ସଂପାଦନା,ଗଳ୍ପ,କବିତା ଓ ରମ୍ୟରଚନା ଲେଖାଲେଖି କରିବା ସହ ଜଣେ ଦକ୍ଷ ନାଟ୍ୟକର୍ମୀ ଭାବରେ ଖୁବ୍ ନାମଜଦା ।

ଇତିହାସ,ଭାଷା ଓ ସାହିତ୍ୟକୁ ନେଇ ଏଥିରେ ସନ୍ନିବେଶିତ ଚାରିଗୋଟି ପ୍ରବଂଧ ଓଡ଼ିଆ ଆଲୋଚନା ସାହିତ୍ୟର ଇତିହାସରେ ନିଶ୍ଚୟ ଅଲଗା ଉଦାହରଣ ତିଆରି କରିବେ ।



ISBN 13 978-81-89593-82-7